


ନଭେମ୍ବର–୨୦୧୮

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ଲକ୍ଷ୍ମଣ ନାଏକ



ବିର୍ସା ମୁଣ୍ଡା





ଜୟୀ ରାଜଗୁରୁ



# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ହରେକୃଷ୍ଣ ମହତାବ







ନବକୃଷ୍ଣ ଚୌଧୁରୀ




ଭୁବନେଶ୍ୱରରେ ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍ : ପୁଞ୍ଜିନିବେଶର ମହାପର୍ବ




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ କରକମଳରେ
ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍ ଉଦ୍‌ଘାଟିତ ।




ଉଦ୍ୟୋଗପତିମାନଙ୍କ ଗହଣରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ।
ରାଜ୍ୟରେ ପୁଞ୍ଜିନିବେଶ ନିମନ୍ତେ ଆଗ୍ରହ ଅବ୍ୟାହତ ।




କ୍ରୀଡାର ବିକାଶ କ୍ଷେତ୍ରରେ ହାଇପର୍‌ଫମେନ୍ସ ସେଣ୍ଟର ପ୍ରତିଷ୍ଠା ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଉପସ୍ଥିତିରେ ବୁଝାମଣାପତ୍ର ସ୍ୱାକ୍ଷରିତ । କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀଯୁକ୍ତ ଚନ୍ଦ୍ରସାରଥୀ ବେହେରା ମଧ୍ୟ ଉପସ୍ଥିତ ଅଛନ୍ତି ।





ପୁଞ୍ଜିନିବେଶ ସମ୍ପର୍କିତ ଏକକ ଆଲୋଚନାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଓ ଉଦ୍ୟୋଗପତି ଶ୍ରୀଯୁକ୍ତ କୁମାର ମଙ୍ଗଳମ୍ ବିର୍ଲା ।

ବେଦାନ୍ତ ଶିଳ୍ପଗୋଷ୍ଠୀର ମୁଖ୍ୟ ଶ୍ରୀଯୁକ୍ତ ଅନୀଲ୍ ଅଗ୍ରୱାଲ୍ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ସହ ଆଲୋଚନାରତ ।



ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍ -୨୦୧୮ରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ସହ ଶିଳ୍ପପତି ଶ୍ରୀଯୁକ୍ତ ମୁକେଶ ଅମ୍ବାନୀ ।




ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍‌ର ଏକ ଗୁରୁତ୍ୱପୂର୍ଣ୍ଣ ଅଧିବେଶନରେ
ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ସହିତ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ
ଫେସନ୍ ଡିଜାଇନର୍ ଶ୍ରୀଯୁକ୍ତ ବିଭୁ ମହାପାତ୍ରଙ୍କ ସୌଜନ୍ୟମୂଳକ ସାକ୍ଷାତ । ଓଡ଼ିଶା ଦକ୍ଷତା
ବିକାଶ କର୍ତ୍ତୃପକ୍ଷର ଅଧ୍ୟକ୍ଷ ଡ. ସୁବ୍ରତୋ ବାଗ୍‌ଚି ନିକଟରେ ଉପସ୍ଥିତ ଅଛନ୍ତି ।

# ସମ୍ପାଦକୀୟ




ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍‌ର ୨ୟ ସଂସ୍କରଣରୁ ୪ଲକ୍ଷ ୧୯ ହଜାର ୫୭୪ କୋଟି ଟଙ୍କାର ପୁଞ୍ଜିନିବେଶର ପ୍ରତିଶ୍ରୁତି ମିଳିଛି ।

ଏହାଦ୍ୱାରା ୫ଲକ୍ଷ ୯୧ ହଜାର ନିଯୁକ୍ତି ସୁଯୋଗ ସୃଷ୍ଟି ହେବ ।

୨୫୩ ଜଣ ବକ୍ତା ୧୯ଟି ଅଧିବେଶନରେ ମତ ବିନିମୟ ପୂର୍ବକ ଓଡ଼ିଶାରେ ପୁଞ୍ଜିନିବେଶ ପାଇଁ ଥିବା ସୁବିଧା ସୁଯୋଗ ସମ୍ପର୍କରେ ଆଲୋଚନା କରିଛନ୍ତି ଓ ନିଜସ୍ୱ ବକ୍ତବ୍ୟ ରଖିଛନ୍ତି ।

ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍‌ରେ ୩ଦିନ ମଧ୍ୟରେ ୫୦୭୪ ଜଣ ଶିଳ୍ପ ପ୍ରତିନିଧି ଯୋଗଦେଇ ଓଡ଼ିଶାରେ ପୁଞ୍ଜିନିବେଶ କ୍ଷେତ୍ରରେ ଥିବା ସୁବିଧା ସୁଯୋଗକୁ ବୁଝିଛନ୍ତି ।

୧୫ଟି ବିଭିନ୍ନ କ୍ଷେତ୍ରରେ ୧୮୩ଟି ପ୍ରକଳ୍ପ ପାଇଁ ୪ଲକ୍ଷ ୧୯ ହଜାର ୫୭୪ କୋଟି ଟଙ୍କା ପୁଞ୍ଜିନିବେଶ ହେବ ।

# ସମ୍ପାଦକୀୟ






ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍‌ର ପ୍ରଭାବୀ ସଫଳତା ରାଜ୍ୟରେ ପୁଞ୍ଜିନିବେଶ, ଶିଳ୍ପାୟନ ଓ ନିଯୁକ୍ତି ସୁଯୋଗର ପଥ ପ୍ରଶସ୍ତ କରିଛି । ଏହା ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦୂରଦୃଷ୍ଟି, ନେତୃତ୍ୱ ଓ ଅନନ୍ୟ ଆନ୍ତରିକତା ଯୋଗୁଁ ସମ୍ଭବ ହୋଇଛି । ଏହି ଅନବଦ୍ୟ ସଫଳତା ନିମନ୍ତେ ରାଜ୍ୟବାସୀଙ୍କ ପକ୍ଷରୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କୁ ଆମର କୃତଜ୍ଞତା ଓ ଅଭିନନ୍ଦନ ଜଣାଉଛୁ ।

ଲେନିନ୍ ମହାନ୍ତି

ସମ୍ପାଦକ

# 'ଏକ ସ୍ୱଚ୍ଛ ଏବଂ ସ୍ମାର୍ଟ ପ୍ରଶାସନିକ ବ୍ୟବସ୍ଥା ସହ ବିକାଶ ଓ ଜନମଙ୍ଗଳକର ଯୋଜନାଗୁଡ଼ିକର ସଫଳତା ହିଁ ଓଡ଼ିଶାର ଚିତ୍ର ବଦଳାଇ ଦେଇପାରିଛି ।'



**– ନବୀନ ପଟ୍ଟନାୟକ**
**ମୁଖ୍ୟମନ୍ତ୍ରୀ, ଓଡ଼ିଶା**

ଆଜି ନ୍ୟୁଜ୍-18 ଟି.ଭି. ଚାନେଲ୍‌ର ରାଇଜିଂ ଓଡ଼ିଶା କାର୍ଯ୍ୟକ୍ରମରେ ଯୋଗଦେଇ ମୁଁ ବହୁତ ଖୁସି । ଏହା ଏକ ସୁନ୍ଦର କାର୍ଯ୍ୟକ୍ରମ । ନ୍ୟୁଜ୍-18 ପକ୍ଷରୁ ରାଇଜିଂ ଓଡ଼ିଶା ନାମରେ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ମଧ୍ୟ ପ୍ରସାର କରାଯାଉଛି । ଏଥିରେ ବିଭିନ୍ନ କ୍ଷେତ୍ରରେ ଓଡ଼ିଶାର ପ୍ରଗତି ଓ ଲକ୍ଷ୍ୟ ସଂପର୍କରେ ସୂଚନା ଦିଆଯାଉଛି । ନ୍ୟୁଜ୍-18ର ଏହି ଗଠନମୂଳକ ଭୂମିକା ପାଇଁ ମୁଁ ଏହାର ପରିଚାଳନାମଣ୍ଡଳିଙ୍କୁ ଧନ୍ୟବାଦ ଦେଉଛି ।

ଆସନ୍ତୁ, ବର୍ତ୍ତମାନ ବିଷୟବସ୍ତୁକୁ ଯିବା । ଆମେ ଯେତେବେଳେ ଚାରିପାଖର ଆଲୋଚନାରେ ପରିବର୍ତ୍ତନ ହେଉଥିବାର ଲକ୍ଷ୍ୟ କରୁ, ସେତେବେଳେ କହିଥାଉଁ, ଜଣେ ବା କିଛି ଉତ୍‌ଥାନ ଦିଗରେ ଅଗ୍ରସର ହେଉଛି । ଯେତେବେଳେ ଏ ସଂକ୍ରାନ୍ତୀୟ ସାଧାରଣରେ ଥିବା ଧାରଣା ଆହୁରି ଅଧିକ ଭଲ ନିମନ୍ତେ ପରିବର୍ତ୍ତିତ ହେଉଥାଏ, ସେତେବେଳେ ଆମେ ଏହା ଅନୁଭବ କରୁ ।

ଏଇ ଦୁଇ ଦଶନ୍ଧି ତଳେ, ଓଡ଼ିଶା ପ୍ରାୟତଃ ବିଭିନ୍ନ ନକାରାତ୍ମକ କାରଣ ନିମନ୍ତେ ଜାତୀୟ ଦୃଶ୍ୟପଟ୍ଟରେ ରହିଆସୁଥିଲା । ଏହାକୁ ବର୍ଣ୍ଣନା କରିବାର ଆବଶ୍ୟକତା ମୁଁ ଅନୁଭବ କରୁନି ଏବଂ ଆଜି, ଆପଣ ଦେଖନ୍ତୁ, ଏକଦା ଚାଉଳ ଉତ୍ପାଦନରେ

ନଗଣ୍ୟ ଥିବା ଓଡ଼ିଶା ଅଧୁନା ଚାଉଳ ଯୋଗାଣକାରୀ ହେବା ସହ ଜାତୀୟ ସାଧାରଣ ବଣ୍ଟନ ବ୍ୟବସ୍ଥାରେ ସର୍ବାଧିକ ଚାଉଳ ଯୋଗାଉଥିବା ରାଜ୍ୟମାନଙ୍କ ମଧ୍ୟରୁ ଅନ୍ୟତମ ସାବ୍ୟସ୍ତ ହୋଇପାରିଛି ।

ଆଜି, ଓଡ଼ିଶା ବାସ୍ତବରେ ଭାରତର ଇସ୍ପାତ ରାଜଧାନୀ, ଏକ ପ୍ରମୁଖ ଉଚ୍ଚଶିକ୍ଷା କେନ୍ଦ୍ର ଏବଂ ଦେଶର କ୍ରୀଡା ରାଜଧାନୀ ରୂପେ ବିବେଚିତ ହୋଇପାରିଛି । ୧୯୯୯ ମସିହା ବେଳକୁ ଅବସନ୍ନ ଜଣାପଡୁଥିବା ଭୁବନେଶ୍ୱର ନଗରୀ ଅଧୁନା ଏକ ନମ୍ବର ସ୍ମାର୍ଟ ସିଟି ହୋଇପାରିଛି ଏବଂ ଖୁବ୍ ଶୀଘ୍ର ପୁରୁଷ ବିଶ୍ୱ କପ୍ ହକି ପରି ଏକ ସର୍ବବୃହତ୍ କ୍ରୀଡା ମହାକୁମ୍ଭର ଆୟୋଜନ କରିବାକୁ ଯାଉଛି ।

ମୋ' କହିବା ଅର୍ଥ ହେଲା ଯେ, ଓଡ଼ିଶା ସଂପର୍କରେ ଥିବା ଧାରଣା ଏବେ ବଦଳିଯାଇଛି । ଏହା ହେଉଛି ଉତ୍‌ଥିତ ଓଡ଼ିଶା, ଯିଏ ଭାରତର ଅଗ୍ରଣୀ ରାଜ୍ୟମାନଙ୍କ ସହ ପ୍ରତିଯୋଗିତା କରିବା ସହିତ ସ୍ଥଳବିଶେଷରେ ଅନ୍ୟମାନଙ୍କ ନିମନ୍ତେ ଆଦର୍ଶସ୍ଥାନୀୟ ତଥା ଅନୁକରଣୀୟ ହୋଇପାରିଛି ।

ଏକ ସ୍ୱଚ୍ଛ ଏବଂ ସ୍ମାର୍ଟ ପ୍ରଶାସନିକ ବ୍ୟବସ୍ଥା ସହ ବିକାଶ ଓ ଜନମଙ୍ଗଳକର ଯୋଜନାଗୁଡିକର ସଫଳତା ହିଁ ଓଡ଼ିଶାର ଚିତ୍ର ବଦଳାଇ ଦେଇପାରିଛି । ଖାଦ୍ୟ, ଆଶ୍ରୟ ଏବଂ ସ୍ୱାସ୍ଥ୍ୟ ନିରାପତ୍ତା କାର୍ଯ୍ୟକ୍ରମ ସମେତ ମହିଳା, କୃଷକ ଏବଂ ଶ୍ରମିକବର୍ଗଙ୍କ ନିମନ୍ତେ ବିକାଶମୂଳକ ଯୋଜନା ଜନସାଧାରଣଙ୍କ ମଧ୍ୟରେ ସୁରକ୍ଷିତ ମନୋଭାବ ସୃଷ୍ଟି କରିଛି । ରାଜ୍ୟରେ ପ୍ରତ୍ୟେକ ଘରକୁ ବିଦ୍ୟୁତ୍ ଯୋଗାଇଦେବା ଲକ୍ଷ୍ୟରେ ଆମେ ଅଗ୍ରସର ହେଉଛୁ ।

ବିଗତ କେତେ ବର୍ଷ ଧରି ବିକାଶ କ୍ଷେତ୍ରରେ ଆମ ରାଜ୍ୟ ଜାତୀୟ ଅଭିବୃଦ୍ଧି ହାରଠାରୁ ଅଧିକ ହାରରେ ନିରବଚ୍ଛିନ୍ନ ଭାବେ ଅଭିବୃଦ୍ଧି ହାସଲ କରୁଛି । ବିଗତ ୪ ବର୍ଷ ମଧ୍ୟରେ ରାଜ୍ୟରେ ରପ୍ତାନି ୨.୫ ଗୁଣ ବୃଦ୍ଧି ପାଇଛି, ଯାହା ରପ୍ତାନି କ୍ଷେତ୍ରରେ ଓଡ଼ିଶାକୁ ଏକ ଚମ୍ପିଆନ୍ ରାଜ୍ୟ ରୂପେ ପରିଗଣିତ କରିପାରିଛି । ୧.୮ ଲକ୍ଷ କୋଟି ଟଙ୍କାର ନିବେଶ ପ୍ରସ୍ତାବ ଓ ୧.୩୨ ଲକ୍ଷ ନିଯୁକ୍ତି ସୃଷ୍ଟି ସହ ପରବର୍ତ୍ତୀ ମେକ୍-ଇନ୍-ଓଡ଼ିଶା ସମ୍ମିଳନୀ ଓଡ଼ିଶାକୁ ଦେଶର ଏକ ପ୍ରମୁଖ ମାନୁଫାକ୍‌ଚରିଂ କେନ୍ଦ୍ରରେ ପରିଣତ କରିବାର ଅବକାଶ ସୃଷ୍ଟି କରିବ ।

ବର୍ତ୍ତମାନ ପର୍ଯ୍ୟନ୍ତ ୯ ଲକ୍ଷ ଯୁବକଯୁବତୀଙ୍କୁ କୁଶଳୀ ରୂପେ ଗଢିତୋଳିଥିବା ଦକ୍ଷତା ବିକାଶ କାର୍ଯ୍ୟକ୍ରମ ସହ ଅଧିକ ନିଯୁକ୍ତି ସାମର୍ଥ୍ୟ ରଖୁଥିବା ବିବିଧ କ୍ଷେତ୍ରରେ ନିବେଶ ନିମନ୍ତେ ଆମର ଉଦ୍ୟମ ଆଗାମୀ ବର୍ଷଗୁଡିକରେ ନିଶ୍ଚିତ ଫଳପ୍ରଦ ହେବ । ସ୍କିଲ୍ଡ୍-ଇନ୍-ଓଡ଼ିଶା ବ୍ରାଣ୍ଡକୁ ବିଶ୍ୱର ଅତ୍ୟୁତ୍ତମ ସ୍କିଲ୍ ବ୍ରାଣ୍ଡ୍ ରୂପେ ବିକଶିତ କରିବାକୁ ଆମେ ପ୍ରଯତ୍ନଶୀଳ ।

ରାଇଜିଂ ଓଡ଼ିଶା ଏହାର ଜନସାଧାରଣଙ୍କୁ ସେମାନଙ୍କ ପୂର୍ଣ୍ଣ ସାମର୍ଥ୍ୟର ପରିପ୍ରକାଶ ନିମନ୍ତେ ସର୍ବୋତ୍ତମ ସମ୍ଭାବନାମୟ ସୁଯୋଗ ପ୍ରଦାନ କରିବାକୁ ଉଦ୍ୟମ ଜାରି ରଖିବ । ବିକାଶର ଉଦାହରଣରେ ଏହାର ସଠିକ୍ ସ୍ଥାନ ସନ୍ଧାନରେ ରାଇଜିଂ ଓଡ଼ିଶା ନିଜସ୍ୱ ପଥରେ ଆଗେଇ ଚାଲିଛି ।

ଧନ୍ୟବାଦ ।

ବନ୍ଦେ ଉତ୍କଳ ଜନନୀ ।

(ନ୍ୟୁଜ୍–18 ଟି.ଭି. ଚାନେଲ୍‌ର ରାଇଜିଂ ଓଡ଼ିଶା କାର୍ଯ୍ୟକ୍ରମ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା)

# ଦକ୍ଷତା ବିକାଶ ପ୍ରଶିକ୍ଷଣ, ସୁଦକ୍ଷା, ମୁଖ୍ୟମନ୍ତ୍ରୀଙ୍କ ନିଯୁକ୍ତି ସୁଯୋଗ କାର୍ଯ୍ୟକ୍ରମ




## ଦକ୍ଷତା ବିକାଶ ପ୍ରଶିକ୍ଷଣ

ଯୁବଗୋଷ୍ଠୀମାନଙ୍କୁ ବିଶ୍ୱଶ୍ରେଣୀୟ ଦକ୍ଷତା ତାଲିମ ପ୍ରଦାନ କରି ରାଜ୍ୟ ପାଇଁ ଦକ୍ଷ ମାନବ ସଂବଳ ସୃଷ୍ଟି କରିବା ଓ ସ୍କିଲ୍ଡ ଇନ୍ ଓଡ଼ିଶାକୁ ବିଶ୍ୱସ୍ତରୀୟ ବ୍ରାଣ୍ଡ ଭାବେ ପରିଚିତ କରାଇବା ଲକ୍ଷ୍ୟ ନେଇ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ୨୦୧୬ ମସିହାରେ ଗଠନ କରିଥିଲେ ଓଡ଼ିଶା ଦକ୍ଷତା ବିକାଶ ପ୍ରାଧିକରଣ । ଏଥିରେ କ୍ୟାବିନେଟ୍ ମନ୍ତ୍ରୀ ପାହ୍ୟା ସ୍ତରର ଜଣେ ଦକ୍ଷତାସମ୍ପନ୍ନ ବ୍ୟକ୍ତି ଶ୍ରୀ ସୁବ୍ରତୋ ବାଗ୍ଚୀଙ୍କୁ ପ୍ରାଧିକରଣର ଅଧ୍ୟକ୍ଷ ଭାବେ ରାଜ୍ୟ ସରକାର ମନୋନୀତ କରିଛନ୍ତି । ଏହି ପ୍ରାଧିକରଣ ସମସ୍ତ ପ୍ରକାର ଦକ୍ଷତା ବିକାଶ କାର୍ଯ୍ୟକ୍ରମକୁ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଦେଇ ଦକ୍ଷତା ବିକାଶରେ ନୂତନ ସମ୍ଭାବନା ସୃଷ୍ଟି କରାଯିବାର ଲକ୍ଷ୍ୟ ରଖିଛନ୍ତି ।

ଭୁବନେଶ୍ୱରଠାରେ ଥିବା ଏହି ପ୍ରାଧିକରଣ ଅଧୀନରେ ରାଜ୍ୟର ପ୍ରତି ଜିଲ୍ଲାରେ ଗୋଟିଏ ଲେଖାଏଁ ସହିତ ଖୋର୍ଦ୍ଧାର ବେଗୁନିଆ ଏବଂ ଅନୁଗୋଳ ଜିଲ୍ଲାର ପାଲ୍‌ଲହଡାଠାରେ ଅତିରିକ୍ତ ୨ଟି ଏହିପରି ମୋଟ୍ ୩୨ଟି ଦକ୍ଷତା ବିକାଶ କେନ୍ଦ୍ର ପ୍ରତିଷ୍ଠା

କରାଯାଇଛି । ଦକ୍ଷତା ପ୍ରଶିକ୍ଷଣ ପ୍ରଦାନ ନିମନ୍ତେ ପ୍ରତ୍ୟେକ ସରକାରୀ ଆଇ.ଟି.ଆଇ ଏବଂ ପଲିଟେକ୍‌ନିକ୍ ଶିକ୍ଷାନୁଷ୍ଠାନରେ ୩୮ଟି ଦକ୍ଷତା ବିକାଶ ସଂପ୍ରସାରଣ କେନ୍ଦ୍ର ପ୍ରତିଷ୍ଠା ହୋଇଛି ।

ଭାରତରେ ପ୍ରଥମ ଥର ପାଇଁ ଓଡ଼ିଶାର ପ୍ରତ୍ୟେକ ଶିଳ୍ପ ତାଲିମ କେନ୍ଦ୍ରରେ ଅଧ୍ୟୟନରତ ଛାତ୍ରଛାତ୍ରୀଙ୍କ ଦକ୍ଷତା ବିକାଶ ନିମନ୍ତେ ଭିତ୍ତିଭୂମିର ଉନ୍ନତିକରଣ ସହ ଛାତ୍ରଛାତ୍ରୀଙ୍କ ପାଇଁ ସ୍ମାର୍ଟ କ୍ଲାସ୍‌ରୁମ୍,ସ୍ୱତନ୍ତ୍ର ୟୁନିଫର୍ମ ଏବଂ ଇ-ଲାଇବ୍ରେରୀ ବ୍ୟବସ୍ଥା କରାଯାଇଛି । ଖୋର୍ଦ୍ଧା ଜିଲ୍ଲା ଜଟଣୀଠାରେ ରାଜ୍ୟର ଭିନ୍ନକ୍ଷମମାନଙ୍କ କଲ୍ୟାଣ ନିମନ୍ତେ ପ୍ରଥମ ସ୍ୱତନ୍ତ୍ର ଶିଳ୍ପ ତାଲିମ ଅନୁଷ୍ଠାନ କାର୍ଯ୍ୟକ୍ଷମ ହୋଇଛି । ଭାରତରେ ପ୍ରଥମ ଥର ପାଇଁ ସିଙ୍ଗାପୁରର ବିଶ୍ୱ ବିଖ୍ୟାତ ଆଇ.ଟି.ଇ ସଂସ୍ଥାରେ ସରକାରୀ ଆଇ.ଟି.ଆଇର ୧୦୦ ଜଣ ପ୍ରଶିକ୍ଷକଙ୍କୁ ନେଇ ଦୁଇ ସପ୍ତାହର ନେତୃତ୍ୱ ବିକାଶ ପ୍ରଶିକ୍ଷଣ କାର୍ଯ୍ୟକ୍ରମ କରାଯାଇଛି । ଦେଶରେ ପ୍ରଥମ ଥର ପାଇଁ ଆଇ.ଟି.ଆଇ ଫେଷ୍ଟ-୨୦୧୮ ଭୁବନେଶ୍ୱରଠାରେ ଅନୁଷ୍ଠିତ କରାଯାଇ ଦକ୍ଷତା ବିକାଶ ଦିଗରେ ରାଜ୍ୟର ସମସ୍ତ ସରକାର ଆଇ.ଟି.ଆଇର ପ୍ରଶିକ୍ଷକ ଏବଂ ପ୍ରଶିକ୍ଷାର୍ଥୀଙ୍କ ମଧ୍ୟରେ ମନୋବଳ ବୃଦ୍ଧି କରାଯାଇଛି ।




ଅନ୍ତର୍ଜାତୀୟ ଯୁବ ଦକ୍ଷତା ଦିବସରେ ଖୋର୍ଦ୍ଧାସ୍ଥିତ ସ୍ୱତନ୍ତ୍ର ଆଇ.ଟି.ଆଇଠାରେ ଦୁଇଟି ରାଜ୍ୟ ସ୍କିଲ କାରାଭାନ୍ ଉଦ୍‌ଘାଟିତ ହେବା ସହ ଜିଲ୍ଲାସ୍ତରରେ ରୋଲ୍ ମଡେଲଙ୍କୁ ଏହା ଜରିଆରେ ସମ୍ମାନିତ କରାଯାଇଥିଲା । ଏହି ସ୍କିଲ କାରାଭାନ୍ ରାଜ୍ୟର ୪୬୯୧ କି.ମି. ପଥ ଅତିକ୍ରମ କରି ୩୪,୧୩୨ ଜଣ ଲୋକଙ୍କ ନିକଟରେ ପହଞ୍ଚି ଥିଲା ଏବଂ ସେହିପରି ଜିଲ୍ଲାସ୍ତରୀୟ ସ୍କିଲ୍ କାରାଭାନ୍ ପ୍ରତ୍ୟେକ ବ୍ଲକ ଓ ଗ୍ରାମପଂଚାୟତମାନଙ୍କରେ ସଚେତନତା ବାର୍ତ୍ତା ପହଞ୍ଚାଇଥିଲା ।

ରାଜ୍ୟରେ ଯୁବଗୋଷ୍ଠୀଙ୍କ ଗୁଣାତ୍ମକ ଦକ୍ଷତା ହାସଲ ଏବଂ ବିଶ୍ୱ ଦକ୍ଷତା ପ୍ରତିଯୋଗିତାରେ ଅଂଶ ଗ୍ରହଣ ପାଇଁ ପ୍ରସ୍ତୁତ କରାଇବା ଉଦ୍ଦେଶ୍ୟରେ ସ୍କିଲ୍‌ଡ ଇନ୍ ଓଡ଼ିଶା କାର୍ଯ୍ୟକ୍ରମ ଦକ୍ଷତା ବିକାଶ କର୍ତ୍ତୃପକ୍ଷଙ୍କ ଜରିଆରେ ଆୟୋଜନ କରାଯାଉଛି । ଆସନ୍ତା ବର୍ଷ ୨୦୧୯ରେ ଋଷିଆର କାଜାନ୍ ସହରଠାରେ ହେବାକୁ ଥିବା ବିଶ୍ୱ ଦକ୍ଷତା ପ୍ରତିଯୋଗିତାରେ ଅଂଶଗ୍ରହଣ କରି ସେଠାରେ ସବୁଠାରୁ ଭଲ ପ୍ରଦର୍ଶନ କରି ପୁରସ୍କୃତ ହେବା ଲକ୍ଷ୍ୟ ନେଇ ଓଡ଼ିଶା ଦକ୍ଷତା ବିକାଶ ପ୍ରାଧିକରଣ ପକ୍ଷରୁ ପ୍ରତିଭା ଅନ୍ୱେଷଣ କାର୍ଯ୍ୟକ୍ରମ କରାଯାଇଥିଲା । ଚଳିତ ବର୍ଷ ଓଡ଼ିଶା ପ୍ରଥମ ଥର ପାଇଁ ଦକ୍ଷତା ପ୍ରତିଯୋଗିତାର ଆୟୋଜନ କରିଥିଲା, ଯେଉଁଥିରେ କି ରାଜ୍ୟର ୭୦୦୦ କୁଶଳୀ ଯୁବକ ଓ ଯୁବତୀ ଭାଗ ନେଇଥିଲେ । ସେଥିମଧ୍ୟରୁ ଓଡ଼ିଶାରୁ ଆଂଚଳିକ ସ୍ତରରେ ବିଜେତା ହୋଇଥିବା ୨୮ ଜଣଙ୍କୁ ଜାତୀୟ ସ୍ତରକୁ ଚୟନ କରାଯାଇଥିଲା ।

ରାଜ୍ୟର ପ୍ରଥମ ସ୍କିଲ୍ ମ୍ୟୁଜିୟମ୍ ( ଦକ୍ଷତା ସଂଗ୍ରହାଳୟ) କଟକ ସହରର ଖପୁରିଆସ୍ଥିତ ସରକାରୀ ଆଇ.ଟି.ଆଇକୁ ଉଦ୍‌ଘାଟିତ କରାଯାଇଛି । ୨୬୦୦ ବର୍ଗଫୁଟ ପରିମିତ ଏହି ସଂଗ୍ରହାଳୟରେ ବିଶ୍ୱସ୍ତରୀୟ ପ୍ରଦର୍ଶନ କ୍ଷେତ୍ର ଏବଂ ପ୍ରେକ୍ଷାଳୟ ରହିଛି ।

## ସୁଦକ୍ଷା ଯୋଜନା

ରାଜ୍ୟ ସରକାର ଛାତ୍ରୀମାନଙ୍କୁ ବୈଷୟିକ ଶିକ୍ଷା ପ୍ରତି ଆକୃଷ୍ଟ କରିବା ନିମନ୍ତେ ସୁଦକ୍ଷା ଯୋଜନା ପ୍ରଣୟନ କରିଛନ୍ତି । ଏହି ଯୋଜନାର ଉଦ୍ଦେଶ୍ୟ ରହିଛି ଅଧୁନା ଆଇ.ଟି.ଆଇରେ ଯୋଗଦାନ କରିବାକୁ ଛାତ୍ରୀଙ୍କ ସଂଖ୍ୟା ୭ ପ୍ରତିଶତରୁ ୩୦ ପ୍ରତିଶତ ବା ତାହାଠାରୁ ଅଧିକ ବୃଦ୍ଧି କରିବା । ଏହି ଯୋଜନାରେ ୨୦୧୭-୧୮ ବର୍ଷ ସୁଦ୍ଧା ରାଜ୍ୟର ୪୮ଟି ଶିଳ୍ପ ତାଲିମ କେନ୍ଦ୍ର(ଆଇ.ଟି.ଆଇ)ରେ ୫୦୦୦ ଛାତ୍ରୀଙ୍କୁ ପ୍ରଶିକ୍ଷଣ ପ୍ରଦାନ କରି ସେମାନଙ୍କୁ ନିଯୁକ୍ତି କ୍ଷେତ୍ରରେ ଦକ୍ଷତାସଂପନ୍ନ କରାଇବା ଲକ୍ଷ୍ୟ ରହିଛି । ବାଳିକାମାନେ ଏହି ଯୋଜନାରେ ସାମିଲ ହେବା ପାଇଁ ଖୁବ୍ ଶୀଘ୍ର ସୁଦକ୍ଷା ସ୍କିମ୍ ପୋର୍ଟାଲ୍ ରାଜ୍ୟ ସରକାର ଆରମ୍ଭ କରିବାକୁ ଯାଉଛନ୍ତି । ୧୦ମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରୀ ଏହି ଯୋଜନାରେ ଆଇ.ଟି.ଆଇରେ ନାମ ଲେଖାଇ ପାରିବେ । ତତ୍‌ସହିତ ଅଷ୍ଟମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଛାତ୍ରୀମାନଙ୍କୁ କେତେକ ନିର୍ଦ୍ଦିଷ୍ଟ ବିଷୟରେ ନାମ ଲେଖାଇ ପାରିବାର ବ୍ୟବସ୍ଥା ରହିଛି । ସେହିପରି ବିବାହିତା ମହିଳାମାନଙ୍କ ନିମନ୍ତେ ମଧ୍ୟ ସେମାନଙ୍କର ଯୋଗ୍ୟତାନୁସାରେ ଶିଳ୍ପ ତାଲିମ କେନ୍ଦ୍ରରେ ପ୍ରଶିକ୍ଷଣ ପୂର୍ବକ ନିଯୁକ୍ତି ସୁଯୋଗ ପାଇବାର ବନ୍ଦୋବସ୍ତ କରାଯାଇଛି । ଏହା ରାଜ୍ୟରେ ସ୍କିଲ୍‌ଡ ଲେବରର ଆବଶ୍ୟକତା ପୂରଣ କ୍ଷେତ୍ରରେ ସହାୟକ ହେବ ଏବଂ କାର୍ଯ୍ୟକ୍ଷେତ୍ରରେ ନାରୀ-ପୁରୁଷ ସମାନତା ହାର ବଜାୟ ରଖିବାରେ ସହାୟକ ହୋଇପାରିବ ।

ନାନୋ ୟୁନିକର୍ଣ୍ଣ ଯୋଜନା ଜରିଆରେ ଅଦ୍ୟାବଧି ୯୨ ଜଣ ଉଦ୍ୟୋଗୀ ଉପକୃତ ହୋଇଛନ୍ତି । ବ୍ୟବସାୟିକ ମନୋବୃତ୍ତି ବିଶିଷ୍ଟ କୁଶଳୀ ଯୁବପିଢିଙ୍କୁ ପରିଚାଳିତ କରି ସଫଳ କ୍ଷୁଦ୍ର ଶିଳ୍ପୋଦ୍ୟୋଗୀରେ ପରିଣତ କରିବା ସହ ତୃଣମୂଳସ୍ତରରେ ସେମାନଙ୍କ ଦ୍ୱାରା ନିଯୁକ୍ତି ସୃଷ୍ଟି କରାଇପାରିବା ନାନୋ ୟୁନିକର୍ଣ୍ଣର ଲକ୍ଷ୍ୟ । ଏହି ଯୋଜନା ମାଧ୍ୟମରେ ୨୦୧୯-୨୦ ବର୍ଷରେ ୧୦୦୦ ଜଣ ଉଦ୍ୟୋଗୀଙ୍କୁ ସହାୟତା କରିବାକୁ ଲକ୍ଷ୍ୟଧାର୍ଯ୍ୟ ହୋଇଛି ।

ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ରାଜ୍ୟ ସରକାରଙ୍କ ଦକ୍ଷତା କାର୍ଯ୍ୟକ୍ରମ ଅଭିଯାନର ବ୍ରାଣ୍ଡ ସ୍ୱରୂପ 'ସ୍କିଲ୍ଡ ଇନ୍ ଓଡ଼ିଶା'ଲୋଗୋ ଏବଂ ଭୁବନେଶ୍ୱର ସ୍କିଲ୍ସ ସିଟି ମାନଚିତ୍ର ଉଦ୍‌ଘାଟିତ ହୋଇଛି । ଅନ୍ତର୍ଜାତୀୟ ସ୍ତରରେ ଓଡ଼ିଶାକୁ ଦକ୍ଷ ମାନବ ସମ୍ବଳର ପୀଠସ୍ଥଳୀ ଭାବେ ପ୍ରତିଷ୍ଠା କରାଇବା ଲକ୍ଷ୍ୟ ନେଇ ଭୁବନେଶ୍ୱରର ମଂଚେଶ୍ୱର ଶିଳ୍ପାଂଚଳଠାରେ ବିଶ୍ୱ ଦକ୍ଷତା କେନ୍ଦ୍ର( ୱାର୍ଲ୍ଡ ସ୍କିଲ୍ ସେଣ୍ଟର) ୨୦୧୯ ସୁଦ୍ଧା କାର୍ଯ୍ୟକ୍ଷମ ହେବାକୁ ଯାଉଛି । ଇଡ୍‌କୋ ଦ୍ୱାରା ନିର୍ମିତ ୧୮ ମହଲା ବିଶିଷ୍ଟ ଅତ୍ୟାଧୁନିକ ଅଟ୍ଟାଳିକା ପ୍ରାୟତଃ ୫ ଲକ୍ଷ ବର୍ଗଫୁଟ ପରିବ୍ୟାପ୍ତ ଅଂଚଳରେ କରାଯାଇଛି, ଯେଉଁଠାରେ କି ବିଶ୍ୱସ୍ତରୀୟ ବୈଷୟିକ ଜ୍ଞାନକୌଶଳ ସୁବିଧା ଉପଲବ୍ଧ ହେବ ।

## ମୁଖ୍ୟମନ୍ତ୍ରୀ ନିଯୁକ୍ତି ସୃଷ୍ଟି ଯୋଜନା

ରାଜ୍ୟରେ ନିଯୁକ୍ତି ସୁଯୋଗ ବୃଦ୍ଧି ଉଦ୍ଦେଶ୍ୟରେ ମୁଖ୍ୟମନ୍ତ୍ରୀ ନିଯୁକ୍ତି ସୃଷ୍ଟି ଯୋଜନା କାର୍ଯ୍ୟକାରୀ କରାଯାଉଛି । ଏହି ଯୋଜନାରେ ପ୍ରତ୍ୟେକ ଗ୍ରାମରୁ ଅନ୍ୟୂନ ୧୫୦ ଜଣ ଯୁବକଯୁବତୀଙ୍କୁ ନିଯୁକ୍ତିଭିତ୍ତିକ ଦକ୍ଷତା ବୃଦ୍ଧି ତାଲିମ ପ୍ରଦାନର ବ୍ୟବସ୍ଥା ରହିଛି । ୧୧ ଲକ୍ଷ ଯୁବକଯୁବତୀଙ୍କୁ ତାଲିମ ପ୍ରଦାନ ପାଇଁ ଲକ୍ଷ୍ୟଧାର୍ଯ୍ୟ ଥିବା ବେଳେ ୪ ବର୍ଷ ମଧ୍ୟରେ ୮ଲକ୍ଷ ୪୯ ହଜାର ୦୨ ଜଣ ଯୁବକ ଯୁବତୀଙ୍କୁ ତାଲିମ ପ୍ରଦାନ କରାଯାଇଛି ଏବଂ ଅବଶିଷ୍ଟ ୨ ଲକ୍ଷ ୫୦ ହଜାର ୯୯୮ ଜଣଙ୍କୁ ୨୦୧୮-୧୯ ବର୍ଷରେ ତାଲିମ ପ୍ରଦାନ କରାଯିବାର ବ୍ୟବସ୍ଥା କରାଯାଉଛି । ୧୨୦ଟି ନିଯୁକ୍ତି ମେଳା ଆୟୋଜନ କରାଯାଇ ୪୫ହଜାର ୫୮୯ ଜଣ ଯୁବକଯୁବତୀଙ୍କୁ ବେସରକାରୀ କ୍ଷେତ୍ରରେ ନିଯୁକ୍ତି ପ୍ରଦାନ କରାଯାଇଛି । ଏତଦ୍‌ବ୍ୟତୀତ ୧୪,୮୮୦ ଆଇ.ଟି.ଆଇ ଓ ଡିପ୍ଲୋମା ପାସ୍, ୪୭,୩୪୬ ବି.ପି.ୟୁ.ଟି ଏବଂ ଭି.ଏସ୍.ଏସ୍.ୟୁ.ଟି ଛାତ୍ରଛାତ୍ରୀଙ୍କୁ କ୍ୟାମ୍ପସ ଜରିଆରେ ନିଯୁକ୍ତି ପ୍ରଦାନ କରାଯାଉଛି ।

❖ ❖ ❖



# ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗ

ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ ହୋଇଥିଲେ ହେଁ, କୃଷି ସହିତ ଆମ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ରାଜ୍ୟ ସରକାରଙ୍କ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗ ସର୍ବାଧିକ ନିଯୁକ୍ତି ସୃଷ୍ଟିକରି ରାଜ୍ୟର ଅର୍ଥନୈତିକ ପ୍ରଗତି କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଆସିଛି ।

'ଇଂଜିନିୟରିଂ ଛାତ୍ରଛାତ୍ରୀଙ୍କୁ ପାଠପଢ଼ା ଶେଷ ପରେ ସେମାନଙ୍କ ଦ୍ୱାରା ଉଦ୍ୟୋଗ ପ୍ରତିଷ୍ଠାର ଲକ୍ଷ୍ୟ ରଖି ସହାୟତା ଯୋଗାଇ ଦେବା ଉଦ୍ଦେଶ୍ୟରେ ୨୦୧୭ ମେ ମାସରେ ଆମ ରାଜ୍ୟର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଆରମ୍ଭ କରିଥିଲେ 'ଷ୍ଟାର୍ଟ ଅପ୍ ପୋର୍ଟାଲ୍' । ଏହାମଧ୍ୟରେ ଷ୍ଟାର୍ଟ ଅପ୍ ପ୍ରତିଷ୍ଠା ପାଇଁ ଯୁବ ପିଢ଼ିଙ୍କ ମଧ୍ୟରେ ଆଗ୍ରହ ବୃଦ୍ଧି ପାଇବାରେ ଲାଗିଛି । ଏବେ ସୁଦ୍ଧା ୨୭୯ ଜଣ ଯୁବକ ଯୁବତୀ ଏହି ପୋର୍ଟାଲରେ ଷ୍ଟାର୍ଟ ଅପ୍ ପାଇଁ ନାମ ପଂଜୀକରଣ କରିଥିବା ବେଳେ ୪୬ ଜଣଙ୍କୁ ଆର୍ଥିକ ସହାୟତା ପ୍ରଦାନ କରାଯାଇଛି । ଏହାକୁ ଦୃଷ୍ଟିରେ ରଖି ଆଗକୁ ପ୍ରତି ମାସରେ ୨୦ଟି ନୂଆ ଷ୍ଟାର୍ଟ ଅପ୍ ପ୍ରତିଷ୍ଠା କରିବାକୁ ଲକ୍ଷ୍ୟ ରଖାଯାଇଛି । ଏହାଦ୍ୱାରା ନିଯୁକ୍ତି ସୁଯୋଗ ବୃଦ୍ଧି ପାଇଛି ।

**ରାଜ୍ୟରେ ମହିଳା ଉଦ୍ୟୋଗୀଙ୍କୁ ପ୍ରୋତ୍ସାହନ:** ମହିଳାମାନଙ୍କୁ ଶିଳ୍ପ ପ୍ରତିଷ୍ଠା ପାଇଁ ଉତ୍ସାହିତ କରିବା ନିମନ୍ତେ ରାଜ୍ୟ ସରକାର ବିଭିନ୍ନ ପ୍ରୋତ୍ସାହନ ବ୍ୟବସ୍ଥା କରିଛନ୍ତି । ରାଜ୍ୟରେ ୪୫ ୪୫,୭୩୦ଟି ସୂକ୍ଷ୍ମ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ମହିଳାମାନଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଛି । ୧୯୯୦-୯୧ ମସିହାରୁ ୨୦୧୭-୧୮ ବର୍ଷ ମଧ୍ୟରେ ଏଗୁଡିକ ପ୍ରତିଷ୍ଠା ହୋଇଥିବାସ୍ଥଳେ ଏଥିରେ ୨ ଲକ୍ଷରୁ ଅଧିକ ନିଯୁକ୍ତି ସୁଯୋଗ ସୃଷ୍ଟି ହୋଇଛି । ୨୦୧୫-୧୬ ମସିହାରେ ମହିଳାଙ୍କ ଦ୍ୱାରା ସର୍ବାଧିକ ୧୨,୫୮୦ଟି ଉଦ୍ୟୋଗ ସୃଷ୍ଟି ହୋଇଛି । ରାଜ୍ୟ ସରକାରଙ୍କ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗ ଜରିଆରେ ଏ ସମସ୍ତ ପଦକ୍ଷେପ ଆଶାୟୀ ଯୁବକଯୁବତୀ, ସ୍ୱୟଂ ସହାୟିକା ଗୋଷ୍ଠୀ ସଦସ୍ୟାଙ୍କ ମନରେ ଉଦ୍ୟୋଗ ପ୍ରତିଷ୍ଠା ଓ ସ୍ୱାବଲମ୍ବୀ ହେବା କ୍ଷେତ୍ରରେ ଉତ୍ସାହ ବୃଦ୍ଧି କରିଛି ।

- ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗୀମାନେ ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକର ସମାଧାନ କରାଯିବା ପାଇଁ 'ଉଦ୍ୟୋଗ ସମାଧାନ ଶିବିର' ରାଜ୍ୟ ସରକାର ଆରମ୍ଭ କରିଛନ୍ତି ।
- ନ୍ୟାସନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନୋଲୋଜି-ରାଉରକେଲା, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନୋଲୋଜି-ଭୁବନେଶ୍ୱର ଏବଂ ବୀର ସୁରେନ୍ଦ୍ର ସାଏ ବିଶ୍ୱବିଦ୍ୟାଳୟ ସହିତ ରାଜ୍ୟରେ ଇନୋଭେସନ-କମ୍-ଇନ୍‌କ୍ୟୁବେସନ ସେଣ୍ଟର ସ୍ଥାପନ ପାଇଁ ସରକାର ସହଭାଗିତା କରିଛନ୍ତି ।
- ରାଜ୍ୟର ରପ୍ତାନି କାରବାର ବୃଦ୍ଧି ଯୋଗୁଁ ୧୧୪ ପ୍ରତିଶତ ସର୍ବୋଚ୍ଚ ଅଭିବୃଦ୍ଧି ହାର ହାସଲ କରିଛି । ୨୦୧୬-୧୭ ବର୍ଷରେ ରପ୍ତାନି ଅଭିବୃଦ୍ଧି ହାସଲ କରିଥିବାରୁ ଭାରତ ସରକାର ଓଡ଼ିଶାକୁ 'ଚମ୍ପିଆନ୍ ଷ୍ଟେଟ୍' ଭାବେ ସ୍ୱୀକୃତି ପ୍ରଦାନ କରିଛନ୍ତି ।
- ଫେସ୍‌ବୁକ୍ ସହ ସହଯୋଗିତାରେ ୩,୩୦୦ ଅଣୁ ଉଦ୍ୟୋଗୀ ଓ ସ୍ୱୟଂ ସହାୟିକା ଗୋଷ୍ଠୀର ସଭ୍ୟାମାନଙ୍କୁ ଦ୍ଧ She Means Business#Boost Your Business ମାଧ୍ୟମରେ ଡିଜିଟାଲ୍ ବାଣିଜ୍ୟ ତାଲିମ ପ୍ରଦାନ କରାଯାଉଛି ।

❖ ❖ ❖



# ଓଡ଼ିଶା ସରକାରଙ୍କ ନିଜସ୍ୱ ସମ୍ବଳରେ ପରିଚାଳିତ ଖାଦ୍ୟ ସୁରକ୍ଷା ଯୋଜନା




ଜାତୀୟ ଖାଦ୍ୟ ସୁରକ୍ଷା ଯୋଜନା ଆଇନ୍ ବଳରେ ୨୦୧୧ ମସିହା ସାମାଜିକ-ଅର୍ଥନୈତିକ ଜନଗଣନା ଅନୁସାରେ ଚିହ୍ନଟ କରାଯାଇଥିବା ଗରିବ ଲୋକମାନଙ୍କୁ ଖାଦ୍ୟ ସୁରକ୍ଷାରେ ଅନ୍ତର୍ଭୁକ୍ତ କରାଯାଇଥିଲା । ସେହି ଅନୁସାରେ ରେସନ କାର୍ଡ ପ୍ରଦାନ କରାଯାଇଥିଲା । କିନ୍ତୁ ଏହି ଯୋଜନାରେ ବହୁ ଯୋଗ୍ୟ ହିତାଧିକାରୀ ଖାଦ୍ୟ ସୁରକ୍ଷାରୁ ବଂଚିତ ହୋଇଥିବା ଦେଖା ଦେଇଥିଲା । ପୁନଶ୍ଚ ୨୦୧୧ରୁ ୨୦୧୮ ମସିହା ମଧ୍ୟରେ ଆମ ରାଜ୍ୟରେ ଜନସଂଖ୍ୟା ବଢ଼ିଛି । ଜଣେ ବି ଗରିବ ଲୋକ ଖାଦ୍ୟ ସୁରକ୍ଷାରୁ ବଂଚିତ ହେବେ ନାହିଁ, ଏହାକୁ ଦୃଷ୍ଟିରେ ରଖି ଆମ ମୁଖ୍ୟମନ୍ତ୍ରୀ ରାଜ୍ୟ ସରକାରଙ୍କ ନିଜସ୍ୱ ସମ୍ବଳରୁ ଚଳିତ ବର୍ଷ ଅକ୍ଟୋବର ୨ ତାରିଖ ଗାନ୍ଧୀ ଜୟନ୍ତୀରୁ ଆରମ୍ଭ କରିଛନ୍ତି ଖାଦ୍ୟ ସୁରକ୍ଷା ଯୋଜନା । ଜାତୀୟ ଖାଦ୍ୟ ସୁରକ୍ଷାରୁ ବାଦ୍ ପଡିଥିବା ୨୫ ଲକ୍ଷ ଯୋଗ୍ୟ ହିତାଧିକାରୀଙ୍କୁ ଏହି ଯୋଜନାରେ ନୂତନ ରେସନ କାର୍ଡ ଯୋଗାଇ ଦିଆଯିବ । ଏଥିପାଇଁ ରାଜ୍ୟ ସରକାର ବର୍ଷକୁ ୪୪୨ କୋଟି ଟଙ୍କା ବ୍ୟୟ ବରାଦ କରିଛନ୍ତି । ପର୍ଯ୍ୟାୟକ୍ରମେ ସମସ୍ତ ହିତାଧିକାରୀଙ୍କୁ ନୂତନ ରେସନ କାର୍ଡ ଯୋଗାଇ ଦିଆଯାଉଛି । ରାଜ୍ୟ ସରକାରଙ୍କ ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନାରେ ରେସନ କାର୍ଡ ପାଇଥିବା ପରିବାରକୁ ମୁଣ୍ଡ ପିଛା ୫ କି.ଗ୍ରା ଚାଉଳ ୫ ଟଙ୍କାରେ ମିଳିବାର ବ୍ୟବସ୍ଥା କରାଯାଇଛି । ଚିହ୍ନଟ ହୋଇଥିବା ସୁଲଭ ଖାଉଟି ଦୋକାନରେ ଇ-ପଏଣ୍ଟ ଅଫ୍ ସେଲ୍

ବ୍ୟବସ୍ଥାରେ ଏହି ସୁବିଧା ମିଳିବାର ବ୍ୟବସ୍ଥା କରାଯାଇଛି । ସମଗ୍ର ୩୧୪ ଗୋଟି ବ୍ଲକ କାର୍ଯ୍ୟାଳୟ ଏବଂ ୬୦ ଗୋଟି ପୌରାଞ୍ଚଳଗୁଡିକରେ ରେସନ କାର୍ଡ ପରିଚାଳନା କେନ୍ଦ୍ର ଖୋଲାଯାଇ ସମସ୍ତ ରେସନ କାର୍ଡ ସମ୍ବନ୍ଧୀୟ ସେବା ଯୋଗାଇ ଦିଆଯାଉଛି ।

କିନ୍ନରମାନଙ୍କୁ ରାଜ୍ୟ ସରକାର ଗୁରୁତ୍ୱ ଦେବା ସହିତ ସେମାନଙ୍କୁ ନିଜସ୍ୱ ପାଣ୍ଠିରୁ କାର୍ଯ୍ୟକାରୀ ହୋଇଥିବା ଖାଦ୍ୟ ନିରାପତ୍ତା କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରିଛନ୍ତି ।

କୁଷ୍ଠ ରୋଗୀ, ଏଡ୍ସ ଆକ୍ରାନ୍ତ ଅନ୍ୟାନ୍ୟ ଗୁରୁତର ରୋଗରେ ପୀଡିତ ନିରାଶ୍ରୟ ବ୍ୟକ୍ତିମାନଙ୍କୁ ମଧ୍ୟ ଏହି ଖାଦ୍ୟ ସୁରକ୍ଷା ଯୋଜନାରେ ସାମିଲ କରାଯାଇଛି ।



ଭାତ ହେଲା ଆମର ମୁଖ୍ୟ ଖାଦ୍ୟ । ତେବେ ଅଭାବୀ ପରିବାରରେ ବଜାରରୁ ଚାଉଳ କିଣିବା ମୋ ପାଇଁ ଭାରି କଷ୍ଟ ହେଉଥିଲା । ପୂର୍ବରୁ ମୁଁ ଜାତୀୟ ଖାଦ୍ୟ ନିରାପତ୍ତା ଯୋଜନାରେ ସାମିଲ ହୋଇପାରି ନ ଥିବାରୁ ଭାରି ଦୁଃଖିତ ଥିଲି । ସରକାର ଆମ କଥା ଶୁଣିଲେ । ଏବେ ରାଜ୍ୟ ସରକାରଙ୍କ ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନାରେ ୫ ଟଙ୍କାରେ ୫ କେଜି ଚାଉଳ ପାଇ ମୁଁ ଚଳିପାରୁଛି । ଏହି ଯୋଜନା କରିଥିବାରୁ ଆମ ମୁଖ୍ୟମନ୍ତ୍ରୀଙ୍କୁ ଧନ୍ୟବାଦ ଦେଉଛି ।

ତିଳୋତମା ମହଲା
ସ୍ୱାମୀ- ଅର୍ଜୁନ ମହଲା, ଚଷାଖଣ୍ଡ
ଦଶରଥପୁର ବ୍ଲକ, ଯାଜପୁର



# ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା




ନାଗରିକମାନେ ସୁସ୍ଥ ରହିଲେ ସମାଜ ଓ ଦେଶର ପ୍ରଗତିରେ ସେମାନଙ୍କର ସକ୍ରିୟ ଯୋଗଦାନ ରହିବ । ଏହାକୁ ହୃଦୟଙ୍ଗମ କରି ଆମ ମୁଖ୍ୟମନ୍ତ୍ରୀ ରାଜ୍ୟବାସୀଙ୍କ ପାଇଁ ସ୍ୱାସ୍ଥ୍ୟ ସେବା ବ୍ୟବସ୍ଥାକୁ ବ୍ୟାପକ କରିଛନ୍ତି ଏବଂ ଏହି ପରିପ୍ରେକ୍ଷୀରେ ଓଡ଼ିଶା ସରକାରଙ୍କ ନିଜସ୍ୱ ସମ୍ବଳରେ ପରିଚାଳିତ ଏକ ସାର୍ବଜନୀନ ସ୍ୱାସ୍ଥ୍ୟ ସେବା କାର୍ଯ୍ୟକ୍ରମ ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା ଚଳିତ ବର୍ଷ ସ୍ୱାଧୀନତା ଦିବସରୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶୁଭାରମ୍ଭ କରି ଏହାକୁ କାର୍ଯ୍ୟକାରୀ କରୁଛନ୍ତି ।

ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନାର ପ୍ରମୁଖ ୨ ଗୋଟି ଉପାଦାନ ରହିଛି । ପ୍ରଥମଟି ହେଲା ଆମ ରାଜ୍ୟର ୭୦ଲକ୍ଷ ଆର୍ଥିକ ଅନଗ୍ରସର ପରିବାରଙ୍କୁ ବାର୍ଷିକ ୫ ଲକ୍ଷ ଟଙ୍କା ଏବଂ ପରିବାରରେ ମହିଳା ସଦସ୍ୟା ଥିଲେ ଅଧିକ ୨ ଲକ୍ଷ ବାର୍ଷିକ ୭ ଲକ୍ଷ ଟଙ୍କାର ସ୍ୱାସ୍ଥ୍ୟ ସୁରକ୍ଷା ସୁବିଧା ଯୋଗାଇ ଦିଆଯିବାର ବ୍ୟବସ୍ଥା ।

ଯୋଜନାର ଦ୍ୱିତୀୟ ଉପାଦାନଟି ହେଲା ରାଜ୍ୟରେ ଥିବା ସ୍ୱାସ୍ଥ୍ୟ ଉପକେନ୍ଦ୍ରଗୁଡିକଠାରୁ ଆରମ୍ଭ କରି ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ପର୍ଯ୍ୟନ୍ତ ସବୁ ସ୍ୱାସ୍ଥ୍ୟାନୁଷ୍ଠାନରେ ସମସ୍ତଙ୍କ ପାଇଁ ମାଗଣା ସ୍ୱାସ୍ଥ୍ୟସେବା ସୁବିଧା ଉପଲବ୍ଧ ହେବ । ଏଥିରେ କୌଣସି ବ୍ୟକ୍ତିଙ୍କ ଆୟ, ସ୍ଥିତି କିମ୍ବା ବାସସ୍ଥାନ ବାଧକ ହେବ ନାହିଁ । ଏହି ଯୋଜନାକୁ ଏବେ ରାଜ୍ୟ ସରକାର ରାଜ୍ୟ ବାହାରକୁ ମଧ୍ୟ ସଂପ୍ରସାରଣ କରିଛନ୍ତି । ଓଡ଼ିଶା ସମେତ ରାଜ୍ୟ ବାହାରେ ଅନ୍ୟ ରାଜ୍ୟଗୁଡ଼ିକରେ ଥିବା କେତେକ ଚିକିତ୍ସାଳୟରେ ମଧ୍ୟ ଏହି ସୁବିଧା ଉପଲବ୍ଧ ହେଉଛି । ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନାରେ ଚଳିତ ଆର୍ଥିକ ବର୍ଷରେ ମୋଟ୍ ୧୦୦୩.୫୨ କୋଟି ଟଙ୍କା ବ୍ୟୟ ହେବା ନିମନ୍ତେ ବ୍ୟବସ୍ଥା କରାଯାଇଛି ।

# ପଞ୍ଚାୟତିରାଜ ବିଭାଗ

## ''ଆମ ଗାଁ, ଆମ ବିକାଶ'' କାର୍ଯ୍ୟକ୍ରମ



ପଞ୍ଚାୟତକୁ ଶକ୍ତିଶାଳୀ କରିବା ଓ ଗାଁର ବିକାଶ ବିଜୁ ବାବୁଙ୍କ ସ୍ୱପ୍ନ ଥିଲା । ସେହି ମହାନ ନେତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ସିଧା ସଳଖ ଗାଁର ବିକାଶ ସହିତ ଯୋଡି ହେବା ପାଇଁ ମାର୍ଚ୍ଚ ୫ ତାରିଖ,୨୦୧୮ରେ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ଜୟନ୍ତୀ ଅବସରରେ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଆରମ୍ଭ କରିଥିଲେ 'ଆମ ଗାଁ, ଆମ ବିକାଶ' କାର୍ଯ୍ୟକ୍ରମ । ସ୍ଥାନୀୟ ଅଂଚଳର ବିକାଶ କ୍ଷେତ୍ରରେ ଥିବା ପ୍ରତିବନ୍ଧକଗୁଡିକ ଦୂର କରି ମରାମତି, ନବୀକରଣ ଏବଂ ସଂପ୍ରସାରଣ ଇତ୍ୟାଦି ନିମନ୍ତେ ଆବଶ୍ୟକ ହେଉଥିବା ନୂତନ ପ୍ରକଳ୍ପଗୁଡିକ ଏହି ଯୋଜନାରେ କାର୍ଯ୍ୟକାରୀ ହେବ, ଯାହା ଗୋଷ୍ଠୀର ସାମଗ୍ରିକ ବିକାଶ ତଥା ସର୍ବସାଧାରଣଙ୍କ କଲ୍ୟାଣ ନିମନ୍ତେ ସହାୟକ ହେଉଥିବ ଏବଂ ଯେଉଁଥିପାଇଁ ଅନ୍ୟ କୌଣସି ସୂତ୍ରରୁ ଅର୍ଥ ଉପଲବ୍ଧ ହେଉନଥିବ । ଏହି ଯୋଜନାରେ ପ୍ରକଳ୍ପଗୁଡିକ ଅନ୍ୟ ଯୋଜନା ସହିତ ସମନ୍ୱୟ ରଖି କାର୍ଯ୍ୟକାରୀ କରାଯିବ । ଏଥିନିମନ୍ତେ ୨୦୧୮-୧୯ ଆର୍ଥିକ ବର୍ଷରେ ୧୨୫୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି । ଚଳିତ ସେପ୍ଟେମ୍ବର, ୨୦୧୮ ସୁଦ୍ଧା ରାଜ୍ୟର ୪୩୭୩ ଗ୍ରାମପଞ୍ଚାୟତରେ ୩୯,୯୭୫ଟି ପ୍ରକଳ୍ପ କାର୍ଯ୍ୟ ପାଇଁ ୯୮୭.୮୫ କୋଟି ଟଙ୍କା ଖର୍ଚ୍ଚ କରାଯିବାର ବ୍ୟବସ୍ଥା ହୋଇଛି ।

'ଆମ ଗାଁ, ଆମ ବିକାଶ' କାର୍ଯ୍ୟକ୍ରମର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଦିଗଟି ହେଉଛି, ଗ୍ରାମବାସୀମାନେ ସେମାନଙ୍କ ଗ୍ରାମ ପାଇଁ ଯେଉଁ ପ୍ରକଳ୍ପର ଆବଶ୍ୟକତା ଅନୁଭବ କରି ପ୍ରସ୍ତାବ ରଖୁଛନ୍ତି, ସେହି ପ୍ରସ୍ତାବ ମୁତାବକ ପ୍ରକଳ୍ପ ମଞ୍ଜୁର କରାଯାଉଛି । ଏହି କାର୍ଯ୍ୟକ୍ରମ ସାମୂହିକ କାର୍ଯ୍ୟାନ୍ୱୟନରେ ପ୍ରଯୁକ୍ତିବିଦ୍ୟାର ପ୍ରୟୋଗ ଓ ସ୍ୱଚ୍ଛ ପ୍ରଶାସନର ଶ୍ରେଷ୍ଠ ଉଦାହରଣ ହୋଇପାରିଛି । ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର, ମିଶନ ଶକ୍ତି ଗୃହ, ଜୀବ ବିକାଶ କେନ୍ଦ୍ର, ବିଶ୍ରାମ ଗୃହ ଓ ପୋଖରୀର ପୁନରୁଦ୍ଧାର ଆଦି ପ୍ରକଳ୍ପଗୁଡିକ ଏହି କାର୍ଯ୍ୟକ୍ରମ ଜରିଆରେ ରୂପାୟନ କରାଯାଉଛି । ଏହାଦ୍ୱାରା ଗାଁଗୁଡିକରେ ଜରୁରୀ ଭିତ୍ତିଭୂମିଗୁଡିକର ଉଲ୍ଲେଖନୀୟ ବିକାଶ ହୋଇପାରୁଛି ।

# ବିଜୁ ଯୁବ ବାହିନୀ



ଓଡ଼ିଶା ବୀର ମାଟି । ଏ ମାଟିର ସନ୍ତାନମାନେ ଓଡ଼ିଆ ସ୍ୱାଭିମାନ ଓ ଗୌରବ ପାଇଁ ସବୁବେଳେ ସଂଗ୍ରାମ କରିଆସିଛନ୍ତି । ଆମର ପ୍ରତି ଗାଁ, ପ୍ରତି ସହର ଓ ପ୍ରତି ଘରେ ଘରେ ଗୋପବନ୍ଧୁ ଅଛନ୍ତି । ମଧୁବାବୁ ଅଛନ୍ତି । ବିଜୁବାବୁ ଅଛନ୍ତି । ଧର୍ମପଦ ଅଛନ୍ତି । 'ବିଜୁ ଯୁବ ବାହିନୀ' କାର୍ଯ୍ୟକ୍ରମର ମୁଖ୍ୟ ଲକ୍ଷ୍ୟ ହେଲା– ପ୍ରତି ଲୋକଙ୍କ ମଧ୍ୟରେ ଥିବା ପ୍ରତିଭାକୁ ଚିହ୍ନଟ କରିବା ଓ ସ୍ୱୀକୃତି ଦେବା । ଯୁବବର୍ଗଙ୍କ ମଧ୍ୟରେ ଥିବା ଲୁକ୍କାୟିତ ପ୍ରତିଭାକୁ ଅନ୍ୱେଷଣ କରିବା । ସେ ଡାକ୍ତର ହୁଅନ୍ତୁ ବା ଇଂଜିନିୟର ବା ଶିକ୍ଷକ ବା ଜଣେ ଚାଷୀ ବା ଜଣେ ସାଧାରଣ ମହିଳା । ସମାଜ ପ୍ରତି ଏମାନଙ୍କର ଅବଦାନକୁ ସ୍ୱୀକୃତି ଦେବା ଏହାର ଲକ୍ଷ୍ୟ । ସାଧାରଣ ଲୋକଟିଏ ମଧ୍ୟ ବହୁତ ବଡ କାମ କରିଥାଏ । ସେମାନେ ନିରବ କର୍ମୀ । ପ୍ରକୃତ ହିରୋ । ସମାଜର ପ୍ରବର୍ତ୍ତକ । ରାଜ୍ୟର ଯୁବବର୍ଗଙ୍କ ମଧ୍ୟରେ ବହୁ ପ୍ରତିଭା ରହିଛି, ଯାହାକୁ ସେମାନେ କାର୍ଯ୍ୟରେ ଲଗାଇବା ଆବଶ୍ୟକ । ସମସ୍ତଙ୍କର ମିଳିତ ଉଦ୍ୟମରେ ଓଡ଼ିଶାର ପ୍ରଗତିର ରଥକୁ ଆଗେଇ ନେବା ପାଇଁ ଅଗଷ୍ଟ ୨୭ ତାରିଖରେ କଟକର ଜବାହରଲାଲ ନେହେରୁ ଇନ୍‌ଡୋର ଷ୍ଟାଡିୟମ୍‌ଠାରେ ଆୟୋଜିତ ରାଜ୍ୟସ୍ତରୀୟ ଶୁଭାରମ୍ଭ କାର୍ଯ୍ୟକ୍ରମରେ ବିଜୁ ଯୁବ ବାହିନୀଙ୍କୁ ଉଦ୍‌ବୋଧନ ଦେଇ ପ୍ରକାଶ କରିଥିଲେ ଆମ ମୁଖ୍ୟମନ୍ତ୍ରୀ ।

- ରାଜ୍ୟରେ ଯୁବ ସେବା ସଂପର୍କିତ କାର୍ଯ୍ୟମାନ ଓଡ଼ିଶା ରାଜ୍ୟ ଯୁବ ନୀତି–୨୦୧୩ରେ ପରିକଳ୍ପନା କରାଯାଇଥିଲା । ଏଥିରେ ଥିବା ଉଦ୍ଦେଶ୍ୟ ପୂରଣ ନିମନ୍ତେ ଯଥା– ବିଜୁ ଯୁବ ସଶକ୍ତିକରଣ ଯୋଜନା, ଦକ୍ଷତା ବିକାଶ, ଉଚ୍ଚ ଶିକ୍ଷା ନିମନ୍ତେ ଛାତ୍ରବୃତ୍ତି, ଯୁବତୀମାନଙ୍କୁ ଆତ୍ମରକ୍ଷା କୌଶଳ ପ୍ରଶିକ୍ଷଣ ଇତ୍ୟାଦି, ଯଦ୍ଦ୍ୱାରା କି ଆମ ରାଜ୍ୟର ଯୁବବର୍ଗଙ୍କ ସାମର୍ଥ୍ୟ ତଥା ଯୋଗ୍ୟତାର ବିକାଶ ହୋଇପାରିବ । 'ବିଜୁ ଯୁବ ବାହିନୀ' ଯୁବ ସଂଯୋଗର ମୁଖ୍ୟ ଲକ୍ଷ୍ୟ ହେଉଛି, ଯୁବବର୍ଗଙ୍କ ମଧ୍ୟରେ ସ୍ୱେଚ୍ଛାସେବୀ ପଣ, ଖେଳୁଆଡ ମନୋବୃତ୍ତି ଏବଂ ଜାତୀୟତାବାଦର ବିକାଶ କରିବା ତଥା ଯୁବବର୍ଗଙ୍କୁ ସମାଜ ତଥା ରାଜ୍ୟର ଉନ୍ନତି ଦିଗରେ କାର୍ଯ୍ୟ କରିବା ନିମନ୍ତେ ପ୍ରେରିତ କରିବା ।

ଯେତେବେଳେ ବି ସ୍ୱପ୍ନ ଦେଖିବ, ବଡ଼ ବଡ଼ ସ୍ୱପ୍ନ ଦେଖ ।
ବଡ଼ ସ୍ୱପ୍ନ ଦେଖିଲେ ହିଁ ବଡ଼ ବଡ଼ କାମ ସାର୍ଥକ ହେବ ।

...ବିଜୁ ପଟ୍ଟନାୟକ

- ବିଜୁ ଯୁବ ବାହିନୀ ଅନ୍ତର୍ଗତ 'ମୁଁ ହିରୋ.....ମୁଁ ଓଡ଼ିଶା' ହେଉଛି ଓଡ଼ିଶା ସରକାରଙ୍କର ' ବିଜୁ ଯୁବ ବାହିନୀ' ଅନ୍ତର୍ଗତ ଏକ କାର୍ଯ୍ୟକ୍ରମ ।
- ଏକ ଅଭିଯାନ, ଯାହାର ଉଦ୍ଦେଶ୍ୟ ହେଉଛି ୧୫ରୁ ୩୫ ବର୍ଷ ମଧ୍ୟରେ ଥିବା ସ୍ଥାନୀୟ ହିରୋ/ପରିବର୍ତ୍ତନର ବାହକ ବା ପ୍ରତିଭାସମ୍ପନ୍ନ ତଥା ନେତୃତ୍ୱ ନେବାର ଦକ୍ଷତାଯୁକ୍ତ ବିଶେଷ ଯୁବକ–ଯୁବତୀ, ଯେଉଁମାନେ ଶିକ୍ଷା, ସ୍ୱାସ୍ଥ୍ୟ, ପରିମଳ, ପରିବେଶ ସୁରକ୍ଷା, ବୃକ୍ଷରୋପଣ, ରକ୍ତଦାନ, ନାରୀ ସଶକ୍ତିକରଣ, ନାଗରିକ ବିଷୟବସ୍ତୁ, ପ୍ରାକୃତିକ ବିପର୍ଯ୍ୟୟ, ଖେଳକୁଦ, କଳା ଓ ସଂସ୍କୃତି, ସାହିତ୍ୟ ତଥା ଅନ୍ୟାନ୍ୟ ସମାଜ ସଂସ୍କାରକ କାର୍ଯ୍ୟରେ ଗୁରୁତ୍ୱପୂର୍ଣ୍ଣ ଯୋଗଦାନ ଦେଇ ରାଜ୍ୟ ତଥା ରାଜ୍ୟ ବାହାରେ ଗୌରବର ଅଧିକାରୀ ହୋଇପାରିଛନ୍ତି, ସେମାନଙ୍କୁ ଚିହ୍ନଟ କରି ପୁରସ୍କୃତ କରିବା ।
- 'ମୁଁ ହିରୋ..ମୁଁ ଓଡ଼ିଶା' ଅଭିଯାନରେ ସାମିଲ ହେବା ପାଇଁ www.bijuyubvavahini.com, ଅନ୍‌ଲାଇନ୍‌ରେ ଆବେଦନ କରିବାର ବ୍ୟବସ୍ଥା କରାଯାଇଛି । ଜିଲ୍ଲାସ୍ତରୀୟ କମିଟି ଦ୍ୱାରା ଦରଖାସ୍ତଗୁଡ଼ିକର ଯାଞ୍ଚ ଏବଂ ଚୟନ କରାଯାଇ ଜିଲ୍ଲାସ୍ତରୀୟ ଓ ରାଜ୍ୟସ୍ତରୀୟ ଯୁବ ସମାବେଶରେ ହିରୋମାନଙ୍କୁ ପୁରସ୍କୃତ କରାଯାଉଛି ।
- ୬ଗୋଟି ଭ୍ରାମ୍ୟମାଣ ରଥ ୬ ମାସ ପର୍ଯ୍ୟନ୍ତ ରାଜ୍ୟର ସମସ୍ତ ବ୍ଲକ୍, ପୌରାଂଚଳ ଅତିକ୍ରମ କରି ଏହି ଲୁକ୍କାୟିତ ପ୍ରତିଭାମାନଙ୍କୁ ଚିହ୍ନଟ କରିବାରେ ପ୍ରୟାସ ଜାରି ରଖିଛି ।



# ‘କଳାହାଣ୍ଡି ଡାଇଲଗ୍’ର ବୈଶିଷ୍ଟ୍ୟ




କଳାହାଣ୍ଡି ତଥା ଓଡ଼ିଶାକୁ ବିକାଶ ଉପରେ ବିଶ୍ୱ ଆଲୋଚନା ଟେବୁଲ୍‌କୁ ନେଇପାରିଲା, ସେହି କଳାହାଣ୍ଡି ଡାଇଲଗ୍ ସଂପର୍କରେ ଏହି ବୈଶିଷ୍ଟ୍ୟ ଗାଥା ଉପସ୍ଥାପନ କରୁଛି ।

ବିକାଶର କଥା ହେବା ଯେଉଁଠି ତା’ର ପ୍ରକୃତ ମହତ୍ୱ ଅଛି ।

ବିକାଶ ଯେଉଁଠି ସର୍ବାଧିକ ଗୁରୁତ୍ୱ ରଖେ ସେପରି ଏକ ସ୍ଥାନରେ ବିକାଶ ସଂପର୍କରେ ବିଶ୍ୱ ସମ୍ମିଳନୀ ଆୟୋଜନ ବାସ୍ତବିକ ଅଭିନବ ଓ ପ୍ରଶଂସନୀୟ ।

ନିକଟ ଅତୀତରେ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କଳାହାଣ୍ଡି ଜିଲ୍ଲାର ଭବାନୀପାଟଣାଠାରେ ଏକ ବିଶ୍ୱ (ଗ୍ଲୋବାଲ୍) ଏବଂ ଆଂଚଳିକ (ଲୋକାଲ୍) ସମିଶ୍ରିତ ‘ଗ୍ଲୋକାଲ୍’ ବିକାଶ ସମ୍ମିଳନୀ ‘କଳାହାଣ୍ଡି ଡାଇଲଗ୍’ର ଉଦ୍‌ଘାଟନ କରିଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କଳାହାଣ୍ଡିକୁ ଆଶା ଓ ଆଶ୍ୱସ୍ତିର ଏକ ଘଟଣା ପ୍ରବାହ ଭାବେ ଅଭିହିତ କରି ଏହାକୁ ସାମଗ୍ରିକ ବିକାଶ ଢାଂଚା ଉପରେ ତାଙ୍କ ସରକାରଙ୍କ କେନ୍ଦ୍ରୀଭୂତ ଧ୍ୟାନର ଗୋଟିଏ ପ୍ରକୃଷ୍ଟ ଉଦାହରଣ ରୂପେ ଦର୍ଶାଇଥିଲେ ।

‘ଉତ୍କଳ ପ୍ରସଙ୍ଗ’ ପତ୍ରିକା କଳାହାଣ୍ଡିର ଏପରି ଅଦମ୍ୟ ଉତ୍ସାହକୁ ଉଚ୍ଚ ପ୍ରଶଂସା କରିବା ସହ ଏହା ଯେପରି ଭାବେ

କଳାହାଣ୍ଡି ଡାଇଲଗ୍‌ରେ ବିକାଶର ଆଲୋଚନା ପ୍ରମୁଖ ବିଷୟବସ୍ତୁ ଥିଲା ।

‘କଳାହାଣ୍ଡି ଡାଇଲଗ୍’ ହେଉଛି ଏକ ଅନନ୍ୟ ମଂଚ ଯେଉଁଠି କଳାହାଣ୍ଡିର ସାମଗ୍ରିକ ବିକାଶ ସମେତ ବିଶ୍ୱ ବିକାଶ ସଂପର୍କିତ ଆଲୋଚନାରେ ନେତା, ନୀତି ପ୍ରଣେତା, ବିକାଶ ଅଧିକାରୀ, ଉଦ୍ୟୋକ୍ତା, ବୁଦ୍ଧିଜୀବୀ, ତଳସ୍ତରରେ କାର୍ଯ୍ୟକରୁଥିବା କର୍ମୀ, ନାଗରିକ ସମାଜ, ପଂଚାୟତିରାଜ ସଦସ୍ୟ, କୃଷକ, ଯୁବକଯୁବତୀ ଏବଂ ବିଶେଷକରି କଳାହାଣ୍ଡିର ଜନସାଧାରଣ ଅଂଶଗ୍ରହଣ କରିପାରିଛନ୍ତି । ବିକାଶ କାର୍ଯ୍ୟକ୍ରମ ଏବଂ ସରକାରୀ ନୀତି, ଔଦ୍ୟୋଗିକ ଓ ସାମାଜିକ ବିକାଶର ବ୍ୟକ୍ତିଗତ ଅବା ସମ୍ମିଳିତ କ୍ଷେତ୍ରରୁ ଗ୍ରହଣ କରାଯାଇଥିବା ସମାଧାନ ସଂପର୍କରେ, ଅନୁଭବଜନିତ ସାରଗର୍ଭକ ଆଲୋଚନା କରିବା, ଏପରି ଆୟୋଜନର ଲକ୍ଷ୍ୟ । ଗୋଷ୍ଠୀ ଏବଂ ବ୍ୟକ୍ତିବିଶେଷଙ୍କ ବର୍ଦ୍ଧିତ ସାମର୍ଥ୍ୟ, ପରିବର୍ଦ୍ଧିତ ସାମାଜିକ–

ଅର୍ଥନୈତିକ ତଥା ରାଜନୈତିକ ଭାଗିଦାରୀ, ଲୋପ ପାଇଯାଇଥିବା ସାମାଜିକ ଓ ଅର୍ଥନୈତିକ ବହିଷ୍କରଣ ଏବଂ ଅଗ୍ରଗାମୀ ସାର୍ବଜନୀନ ସାମାଜିକ ନ୍ୟାୟକୁ ଏହା ପ୍ରଶସ୍ତ କରିଛି କି ନାହିଁ, ଏ ସଂପର୍କରେ ଫୋରମ୍ ସବିଶେଷ ଅନୁଧ୍ୟାନ କରିବ ।

''ବିକାଶ ସଂପର୍କିତ ଆଲୋଚନା ଏବଂ କାର୍ଯ୍ୟକ୍ରମରେ ସମସ୍ତ ଅଂଶୀଦାରଙ୍କୁ ନିୟୋଜିତ କରିବା ନିମନ୍ତେ ଏକ ମିଳିତ ମଂଚ ସୃଷ୍ଟି କଳାହାଣ୍ଡି ଡାଇଲଗ୍ ଆୟୋଜନର ଅସଲ ଉଦ୍ଦେଶ୍ୟ । ବିକାଶ ଉପରେ ଆଲୋଚନାକୁ ବିକେନ୍ଦ୍ରୀକରଣ କରିବା ଏବଂ ବିକାଶ ସଂପର୍କିତ ଆଲୋଚନାକୁ ପ୍ରମୁଖ ନଗରୀରେ ସୀମିତ ନକରି ଏହାକୁ ଆଂଚଳିକ ସ୍ତର ପର୍ଯ୍ୟନ୍ତ ନେଇଯିବା 'କଳାହାଣ୍ଡି ଡାଇଲଗ୍'ର ଲକ୍ଷ୍ୟ ।

ବିଗତ ଦୁଇ ଦଶନ୍ଧି ମଧ୍ୟରେ, ଉତ୍କଟ ଦାରିଦ୍ର୍ୟ ଓ କ୍ଷୁଧାରୁ ଏକ ଉଲ୍ଲେଖନୀୟ ବିକାଶଭିତ୍ତିକ ସଫଳତା ଲାଭ ପର୍ଯ୍ୟନ୍ତ ପ୍ରତ୍ୟକ୍ଷ କରିଛି କଳାହାଣ୍ଡି । ଏହି ସମ୍ମିଳନୀ କଳାହାଣ୍ଡିର ଅଭିବୃଦ୍ଧିକୁ ସ୍ୱୀକୃତି ଦେବାକୁ ଅଭିପ୍ରେତ । କଳାହାଣ୍ଡିର ଏହି ପରିବର୍ତ୍ତନ ପଛରେ ମୁଖ୍ୟ ସ୍ଥପତିର ଭୂମିକା ନିର୍ବାହ କରିଥିବା ଆମର ପ୍ରିୟ ମୁଖ୍ୟମନ୍ତ୍ରୀଙ୍କୁ ଅଜସ୍ର ଧନ୍ୟବାଦ ।''

– ଶ୍ରୀ ସୁଜିତ୍ କୁମାର୍,
ଅଧ୍ୟକ୍ଷ, କଳାହାଣ୍ଡି ଡାଇଲଗ୍
ଓଏସ୍‌ଡି ତଥା ସ୍ୱତନ୍ତ୍ର ସଚିବ, ଓଡ଼ିଶା ଯୋଜନା ବୋର୍ଡ ।

### କଳାହାଣ୍ଡି କାହିଁକି ?

ବିକାଶର ବିବିଧ ଦିଗକୁ ଆଲୋଚନା କରିବା ତଥା ଏହାକୁ ବୁଝିବାକୁ ହେଲେ ଦୂରରୁ ଅବଲୋକନ ନକରି କଷ୍ଟ ସ୍ୱୀକାର ପୂର୍ବକ ବିଭିନ୍ନ ସ୍ଥାନକୁ ଯାତ୍ରା କରିବାକୁ ପଡିଥାଏ, ଯେଉଁଠି ବିକାଶର ବାସ୍ତବତା ପ୍ରକୃତରେ ଦୃଶ୍ୟମାନ ହୋଇଥାଏ ।

ସକାରାତ୍ମକ ସାମାଜିକ ପରିବର୍ତ୍ତନ ଏବଂ ବିଶ୍ୱ ସମ୍ମୁଖରେ ଥିବା ପ୍ରମୁଖ ଆହ୍ୱାନଗୁଡିକର ପୋଷଣୀୟ ପରିବର୍ତ୍ତନଧର୍ମୀ ସମାଧାନ ବାହାର କରିବା ଦିଗରେ ଏପରି ଏକ ଉତ୍ସର୍ଗୀକୃତ ସମ୍ମିଳନୀର ଆୟୋଜନ ନିମନ୍ତେ କଳାହାଣ୍ଡି ବ୍ୟତୀତ ଅନ୍ୟ କୌଣସି ସ୍ଥାନ ପ୍ରକୃଷ୍ଟ ହୋଇନପାରେ । କେତେ ବର୍ଷ ପୂର୍ବେ କଳାହାଣ୍ଡି ଅବହେଳାର ନିଦର୍ଶନ ଥିଲା ଏବଂ ପ୍ରଶାସନଠାରୁ ଏହାର ଦୂରତା, ଲଗାତର ଦୁର୍ଭିକ୍ଷ, ଉତ୍କଟ ଦାରିଦ୍ର୍ୟ, କୁପୋଷଣ, କ୍ଷୁଧା ଏବଂ ଅନାହାର ନିମନ୍ତେ ଏହା ଦେଶର ଦୃଷ୍ଟି ଆକର୍ଷଣ କରିଥିଲା । ଆଜି, ସଠିକ୍ ନୀତି, ଉନ୍ନୟନ ଯୋଜନାଗୁଡିକର ଉପଯୁକ୍ତ ରୂପାୟନ, ରାଜନୈତିକ ଇଚ୍ଛାଶକ୍ତି ଏବଂ ତଳ ସ୍ତରରେ ଅଭିନବ କାର୍ଯ୍ୟକ୍ରମ ଯୋଗୁଁ ପ୍ରକୃତରେ କଳାହାଣ୍ଡିରେ ଉଲ୍ଲେଖନୀୟ ବିକାଶ ସମ୍ଭବ ହୋଇପାରିଛି । ଏଣୁ, କଳାହାଣ୍ଡିର ନାମଟି ଅଧୁନା ଆଶା ଓ ଆଶ୍ୱସ୍ତିର ପ୍ରତୀକ ହୋଇଯାଇଛି ।

### କିଏ ଯୋଗ ଦେଇଥିଲେ ?

ଉକ୍ତ ଜିଲ୍ଲା, କେବିକେ ଅଂଚଳ ଏବଂ ଓଡ଼ିଶା ରାଜ୍ୟର ବିକାଶ ପ୍ରତି ଧ୍ୟାନ କେନ୍ଦ୍ରୀଭୂତ ସହ ତିନି ଦିନିଆ ଏହି ସମ୍ମିଳନୀର ଅଧିବେଶନଗୁଡ଼ିକରେ ଅନେକ ସହଭାଗୀ ଯଥା ନୀତି ପ୍ରଣେତା, ରାଜନୈତିକ ନେତୃବୃନ୍ଦ, ମନ୍ତ୍ରୀ, ବରିଷ୍ଠ ଅମଲାତନ୍ତ୍ରୀ, ବିକାଶ ଯୋଜନାକାରୀ, କଳାହାଣ୍ଡିର ସ୍ଥାନୀୟ ନାଗରିକ, ପଂଚାୟତିରାଜ ଅନୁଷ୍ଠାନର ସଦସ୍ୟଗଣ, ବୁଦ୍ଧିଜୀବୀ, ଉଦ୍ୟୋକ୍ତା, ଅର୍ଥନୀତିଜ୍ଞ, ଅଧିବକ୍ତାଗଣ, ନୀତି ବିଶାରଦ, ସାମ୍ବାଦିକ, ଆଇନ୍ ଛାତ୍ରଛାତ୍ରୀ, ଓଡ଼ିଶାର ବୈଷୟିକବିଦ୍ ଓ ପ୍ରଶାସକଗଣଙ୍କ ସମେତ ଭାରତର ଅନ୍ୟାନ୍ୟ ରାଜ୍ୟ ଏବଂ ସାତଗୋଟି ଦେଶରୁ ଅନେକ ବିଶିଷ୍ଟ ବ୍ୟକ୍ତି ଯୋଗଦେଇ ଆଲୋଚନାକୁ ଋଦ୍ଧିମନ୍ତ କରିଥିଲେ ।

### ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ପ୍ରଦତ୍ତ ଉଦ୍‌ଘାଟନୀ ବାର୍ତ୍ତା ।



ବାସ୍ତବିକ କଳାହାଣ୍ଡି ଡାଇଲଗ୍ ହେଉଛି ଏକ ଅନନ୍ୟ ପଦକ୍ଷେପ । ମୁଁ ସମସ୍ତଙ୍କୁ ବିଶେଷକରି ଏହି ଡାଇଲଗ୍‌ର ଆୟୋଜନକାରୀମାନଙ୍କୁ ଅଭିନନ୍ଦନ ଜଣାଉଛି । କଳାହାଣ୍ଡି

ହେଉଛି ଆଶା ଓ ଆଶ୍ୱସ୍ତିର ଏକ ଗାଥା । ବିଗତ କେତେବର୍ଷ ମଧ୍ୟରେ କଳାହାଣ୍ଡି ନୂଆ ରୂପ ଧାରଣ କରିଛି । ଏହା ହେଉଛି ଅଭିବୃଦ୍ଧି ଓ ଆଶ୍ୱସ୍ତିର ଗାଥା ଏବଂ ଏ ସଂକ୍ରାନ୍ତରେ ସମସ୍ତ ଶ୍ରେୟ କଳାହାଣ୍ଡିର ଜନସାଧାରଣ ପାଇବାକୁ ହକ୍‌ଦାର୍ । କଳାହାଣ୍ଡିର ପରିବର୍ତ୍ତନ ଆଖିଦୃଶିଆ ହୋଇପାରିଛି । ଜୀବନଧାରଣ ନିମନ୍ତେ କୃଷି କର୍ମରୁ କଳାହାଣ୍ଡି ବର୍ତ୍ତମାନ ଓଡ଼ିଶାର ସବୁଜ ଝୁଡି ରୂପେ ପରିବର୍ତ୍ତିତ ହୋଇଛି ।

ଉକ୍ତ ଜିଲ୍ଲାରେ କୃଷି ଏବଂ ଜଳସେଚନ କ୍ଷେତ୍ରରେ ୫୧ ପ୍ରତିଶତ ବୃଦ୍ଧି ଘଟିଛି । ଏହି ଜିଲ୍ଲା ଉଭୟ ଭୌତିକ ଏବଂ ସାମାଜିକ ବିକାଶ କ୍ଷେତ୍ରରେ ବିରାଟ ଭିତ୍ତିଭୂମିଜନିତ ବିକାଶକୁ ପ୍ରତ୍ୟକ୍ଷ କରିପାରିଛି । ଭବାନୀପାଟଣାଠାରେ ଏକ ନୂତନ ସରକାରୀ ମେଡିକାଲ୍ କଲେଜ୍ ଏବଂ ହସ୍‌ପିଟାଲ୍ ଖୁବ୍ ଶୀଘ୍ର ପ୍ରତିଷ୍ଠା ହେବାକୁ ଯାଉଛି । ସାମଗ୍ରିକ ବିକାଶ ଉପରେ ମୋ' ସରକାର ଧ୍ୟାନ କେନ୍ଦ୍ରୀଭୂତ କରିଛନ୍ତି ଏବଂ କଳାହାଣ୍ଡି ହେଉଛି ଆମ ବିକାଶ ଢାଂଚାର ଏକ ସର୍ବୋତ୍ତମ ଉଦାହରଣ ।

ମୁଁ କଳାହାଣ୍ଡି ଘୋଷଣାନାମା ପ୍ରତି ମୋର ସମର୍ଥନ ଜଣାଉଛି ଏବଂ ଆଶାକରୁଛି ଯେ, ଏହା କଳାହାଣ୍ଡିକୁ ଏକ ଉଜ୍ଜ୍ୱଳମୟ ଭବିଷ୍ୟତ ଦିଗରେ ଅଗ୍ରସର କରାଇବ ।

ଏହି 'କଳାହାଣ୍ଡି ଡାଇଲଗ୍'ର ମଂଚରୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଅବିଭକ୍ତ କଳାହାଣ୍ଡି ନିମନ୍ତେ ଅନେକ ପ୍ରକଳ୍ପ ସହ ଭବାନୀପାଟଣା କୃଷି ମହାବିଦ୍ୟାଳୟଠାରେ ପାଂଚଗୋଟି ପିଜି ବିଭାଗର ଘୋଷଣା କରିଥିଲେ । ସେ ୧୨ଗୋଟି ପ୍ରକଳ୍ପ ନିମନ୍ତେ ଭିତ୍ତିପ୍ରସ୍ତର ସ୍ଥାପନ କରିବା ସଂଗେସଂଗେ ଭବାନୀପାଟଣାରେ ନଅଗୋଟି ପ୍ରକଳ୍ପର ଉଦ୍‌ଘାଟନ କରିଥିଲେ । ସେ ମଧ୍ୟ ଭବାନୀପାଟଣାଠାରେ ପ୍ରତିଷ୍ଠା ହେବାକୁ ଯାଉଥିବା ମେଡିକାଲ୍ କଲେଜ୍‌ର ନିର୍ମାଣ କାର୍ଯ୍ୟ ଖୁବ୍ ଶୀଘ୍ର ସମାପନ ହେବା ଉପରେ ନିଜର ପ୍ରତିଶ୍ରୁତି ଦୋହରାଇଥିଲେ । ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ୧୫୦ତମ ଜନ୍ମବାର୍ଷିକୀ ଅବସରରେ ଦୁଇଦିନିଆ ଏହି ସମ୍ମିଳନୀ ଆୟୋଜିତ ହୋଇଥିଲା । ଏହି ପରିପ୍ରେକ୍ଷୀରେ, ଭାରତୀୟ ସମ୍ବିଧାନର ମୁଖବନ୍ଧରେ 'ଅହିଂସା'କୁ ସାମିଲ୍ କରିବା ନିମନ୍ତେ ମୁଖ୍ୟମନ୍ତ୍ରୀଙ୍କର ଏପରି ଉଦ୍ୟମକୁ ପ୍ରଶଂସା କରାଯିବା ସହ ସ୍ୱତନ୍ତ୍ର ଭାବେ ଉଲ୍ଲେଖ କରାଯାଇଥିଲା ।

**କଳାହାଣ୍ଡି ଡାଇଲଗ୍**

**ଉଦ୍‌ଘାଟନ**

ଭବାନୀପାଟଣା କୃଷି ମହାବିଦ୍ୟାଳୟଠାରେ ଆଗ୍ରୋନୋମୀ, ସଏଲ୍ ସାଇନ୍ସ୍, ଏବଂ ଏଗ୍ରିକଲ୍‌ଚର୍, କେମିଷ୍ଟ୍ରି, ଏଣ୍ଟୋମୋଲୋଜି, ପ୍ଲାଣ୍ଟ୍ ଫିଜିଓଲୋଜି, ପ୍ଲାଣ୍ଟ୍ ପାଥୋଲୋଜି ପରି ପାଂଚଗୋଟି ପିଜି ବିଭାଗ ।

**ଘୋଷଣାନାମା**

- କଟନ୍, ଟ୍ରପିକାଲ୍ ଫ୍ରୁଟ୍ କ୍ରପ୍ ଏବଂ ଏରୋମେଟିକ୍ ଚାଉଳ ଉତ୍ପାଦନ କ୍ଷେତ୍ରରେ ଆର୍‌ଆର୍‌ଟିଟିଏସ୍, ଭବାନୀପାଟଣା ଉତ୍କର୍ଷ କେନ୍ଦ୍ର ରୂପେ ଘୋଷିତ ।
- ଗୋଲମୁଣ୍ଡାଠାରେ ଏକ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର ।
- ଧର୍ମଗଡଠାରେ ଏକ ମାତୃ ଓ ଶିଶୁ ସ୍ୱାସ୍ଥ୍ୟ କେନ୍ଦ୍ର ।
- କେସିଙ୍ଗାଠାରେ ଏକ ସବ୍-ରେଜିଷ୍ଟର୍ କାର୍ଯ୍ୟାଳୟ ।

**ବିଶ୍ୱ ଚିନ୍ତାନାୟକ ଏବଂ ନୀତି ପ୍ରଣେତାଙ୍କ ଉତ୍ସାହପ୍ରଦ ବାର୍ତ୍ତା**

ବିଶିଷ୍ଟ ପ୍ରବର୍ତ୍ତକ, ଉଦ୍ୟୋକ୍ତା ଏବଂ ପ୍ରଯୁକ୍ତି ନୀତି ବିଶାରଦ ଡକ୍ଟର ସାମ୍ ପିତ୍ରୋଡା ଏକ ଭିଡିଓ ବାର୍ତ୍ତା ମାଧ୍ୟମରେ 'କଳାହାଣ୍ଡି ଡାଇଲଗ୍'କୁ ସମ୍ବୋଧିତ କରିଥିଲେ । କେବିକେରେ ତାଙ୍କର ଅତିବାହିତ ହୋଇଥିବା ବାଲ୍ୟାବସ୍ଥା, ଜୀବନ ସଂଗ୍ରାମ ଏବଂ ଅଧ୍ୟବସାୟ ସଂପର୍କରେ ସେ ନିଜର ଅନୁଭୂତି ବଖାଣିଥିଲେ । ସେ ଜନସାଧାରଣଙ୍କୁ ଉଚ୍ଚମନା ହେବାକୁ ଅନୁପ୍ରେରିତ କରିବା ସହ ବିଶ୍ୱ ବିକାଶ ଆଲୋଚନାରେ କଳାହାଣ୍ଡିର ଯୁବକଯୁବତୀଙ୍କୁ ସାମିଲ୍ କରିବାରେ ଏପରି ଐତିହାସିକ ପଦକ୍ଷେପ ନିମନ୍ତେ କଳାହାଣ୍ଡି ଡାଇଲଗ୍‌କୁ ଅଭିନନ୍ଦନ ଜଣାଇଥିଲେ ।

ହାଇଦ୍ରାବାଦ୍‌ଠାରେ ଅବସ୍ଥାପିତ ୟୁଏସ୍ କନ୍‌ସୁଲେଟ୍ ଜେନେରାଲ୍, ମିସ୍ କାଥେରାଇନ୍ ବି.ହାଡା, କଳାହାଣ୍ଡି

ଡାଇଲଗ୍‌କୁ ଅଭିନନ୍ଦନ ଜଣାଇ ଏକ ଭିଡିଓ ବାର୍ତ୍ତା ପଠାଇଥିଲେ ଏବଂ ଓଡ଼ିଶା ଓ ଯୁକ୍ତରାଷ୍ଟ୍ର ଦ୍ୱିପାକ୍ଷିକ ସମ୍ବନ୍ଧକୁ ମଜଭୁତ୍ କରିବାକୁ ଯୁକ୍ତରାଷ୍ଟ୍ରର ପ୍ରତିଶ୍ରୁତିକୁ ଦୋହରାଇଥିଲେ ।

ଡକ୍ଟର ବବ୍ କ୍ୟୁରୀ ହେଉଛନ୍ତି ବିକାଶ ସଂପର୍କିତ ଅଧ୍ୟୟନର ଜଣେ ନେତୃସ୍ଥାନୀୟ ବିଶାରଦ । ସେ କଳାହାଣ୍ଡି ଉପରେ ଗୋଟିଏ ବହୁଳ ବିକ୍ରି ହେଉଥିବା ପୁସ୍ତକ ଭାରତରେ କ୍ଷୁଧା ରାଜନୀତି : ୨୦୦୦ ମସିହାରେ ଗଣତନ୍ତ୍ର, ପ୍ରଶାସନ ଏବଂ କଳାହାଣ୍ଡିର ଦାରିଦ୍ର୍ୟ ( ମାକ୍‌ମିଲନ୍ ପାଲ୍‌ଗ୍ରେଭ୍ ) ପ୍ରକାଶ କରିଥିଲେ । ଏକ ଅତ୍ୟନ୍ତ ଆବଶ୍ୟକ ହେଉଥିବା ମଂଚ ସୃଷ୍ଟି ନିମନ୍ତେ 'କଳାହାଣ୍ଡି ଡାଇଲଗ୍'ର ଟିମ୍‌କୁ ସେ ଅଭିନନ୍ଦନ ଜଣାଇଥିଲେ ।

ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷ ଅଧ୍ୟକ୍ଷ ଶ୍ରୀ ସୁବ୍ରତ୍ ବାଗଚୀ କଳାହାଣ୍ଡି ଜିଲ୍ଲାର ସାମାଜିକ-ଅର୍ଥନୈତିକ ପରିବର୍ତ୍ତନ ଦିଗରେ ଅବଦାନ ରଖିଥିବା ଜିଲ୍ଲାର ଉଦ୍ୟୋକ୍ତାମାନଙ୍କ ସଂପର୍କରେ ଅନେକ ଉଦାହରଣ ଦେଇଥିଲେ ।

ଭାରତରେ ଅବସ୍ଥାପିତ ରୁଆଣ୍ଡା ହାଇ କମିଶନର ମିଷ୍ଟର୍ ଆର୍‌ନେଷ୍ଟ୍ ରୁଆମୁକ୍ୟୁ ଏପରି ଏକ ମଂଚର ଆବଶ୍ୟକତା ସଂପର୍କରେ ଉଲ୍ଲେଖ କରିଥିଲେ ଏବଂ ଓଡ଼ିଶା ରାଜ୍ୟ ଓ ଆଫ୍ରିକୀୟ ଦେଶ ସମୂହ ମଧ୍ୟରେ ପାରସ୍ପରିକ ଭାବ ଆଦାନ ପ୍ରଦାନ ଦିଗରେ ସହଯୋଗର ଆବଶ୍ୟକତା ଉପରେ ଗୁରୁତ୍ୱାରୋପ କରିଥିଲେ । ଗୋଟିଏ ପିଢି ମଧ୍ୟରେ କଳାହାଣ୍ଡିକୁ ବିଶ୍ୱ ସଫଳତା ଗାଥାରେ ପରିବର୍ତ୍ତିତ କରିବାରେ ଓଡ଼ିଶା ସରକାରଙ୍କ ଉଦ୍ୟମର ସେ ଉଚ୍ଚ ପ୍ରଶଂସା କରିଥିଲେ । ସେ ମଧ୍ୟ ବିଗତ ଦୁଇ ଦଶନ୍ଧି ମଧ୍ୟରେ କଳାହାଣ୍ଡି ଜିଲ୍ଲାର ଅଭିବୃଦ୍ଧି ନିମନ୍ତେ ସ୍ଥାନୀୟ ବାସିନ୍ଦା ଓ ନେତୃମଣ୍ଡଳୀଙ୍କୁ ଅଭିନନ୍ଦନ ଜଣାଇଥିଲେ ।

ସମ୍ମିଳନୀର ଉଦ୍‌ଯାପନୀ ଉତ୍ସବରେ ବକ୍ତବ୍ୟ ରଖି ରମଣ ମାଗ୍‌ସେସ୍ ପୁରସ୍କାର ବିଜେତା ତଥା ଗୁଂଜ୍‌ର ପ୍ରତିଷ୍ଠାତା ଅଂଶୁ ଗୁପ୍ତା ଅଭିବୃଦ୍ଧି ପ୍ରକ୍ରିୟାରେ ପ୍ରତ୍ୟେକ ବର୍ଗର ସଦସ୍ୟଙ୍କ ସଂପୃକ୍ତି ନିମନ୍ତେ ଆହ୍ୱାନ୍ ଜଣାଇଥିଲେ । ସେ କହିଥିଲେ ଯେ, 'ମାଲେରିଆକୁ ଟାର୍ଗେଟ୍ କରିବା ପରିବର୍ତ୍ତେ, ଆମେ ମଶା



ସମସ୍ୟାର ନିରାକରଣ କରିବା । ଏହି ପ୍ରକାରେ, ଗୋଷ୍ଠୀ ସହଭାଗିତା ସହ ଲୋକଙ୍କର ପ୍ରକୃତ ସମସ୍ୟାର ସମାଧାନ ହେବା ଉଚିତ୍ । ତେବେଯାଇ ବିକାଶ ପ୍ରକ୍ରିୟା ତ୍ୱରାନ୍ୱିତ ହୋଇପାରିବ ।'

ସମ୍ମିଳନୀର ଉଦ୍‌ଘାଟନୀ ଉତ୍ସବରେ ଓଡ଼ିଶା ସରକାରଙ୍କର ତିନି ଜଣ କ୍ୟାବିନେଟ୍ ମନ୍ତ୍ରୀ ଶ୍ରୀ ପ୍ରତାପ ଜେନା, ଶ୍ରୀ ନିରଂଜନ ପୂଜାରୀ ଏବଂ ଶ୍ରୀ ରମେଶ ମାଝି ଯୋଗଦେଇଥିଲେ ଏବଂ ସେମାନଙ୍କ ଅଭିଭାଷଣରେ କଳାହାଣ୍ଡିର ଜନସାଧାରଣଙ୍କ କଠୋର ଶ୍ରମ ଓ ଉଦ୍ୟମର ଭୁରିଭୁରି ପ୍ରଶଂସା କରିଥିଲେ । କଳାହାଣ୍ଡି ଡାଇଲଗ୍‌ର ପଦକ୍ଷେପକୁ ପ୍ରଶଂସା କରି ବର୍ତ୍ତମାନର ସରକାରଙ୍କ କାର୍ଯ୍ୟକ୍ରମ ସଂପର୍କରେ ମନ୍ତ୍ରୀଗଣ ଉଲ୍ଲେଖ କରିଥିଲେ ଏବଂ ଆଗାମୀ ବର୍ଷଗୁଡିକରେ କଳାହାଣ୍ଡିର ବିକାଶ ଉପରେ ଧ୍ୟାନ କେନ୍ଦ୍ରୀଭୂତ କରିବାକୁ ସରକାରଙ୍କ ପ୍ରତିଶ୍ରୁତିକୁ ଦୋହରାଇଥିଲେ ।

### ଆଲୋଚନା, ବିଚାର ଓ ବକ୍ତବ୍ୟ

ଏହି ତିନିଦିନିଆ ସମ୍ମିଳନୀରେ ଗୁରୁତ୍ୱପୂର୍ଣ୍ଣ ସାମାଜିକ, ଅର୍ଥନୈତିକ, ପରିବେଶ ସମ୍ବନ୍ଧୀୟ ସମସ୍ୟା ଉପରେ ଆଲୋଚନା ହେବା ସହ ବିଶ୍ୱମାନର କୌଶଳ ଆପଣେଇ ଆଂଚଳିକ ସ୍ତରରେ ଏହାର ବାସ୍ତବ ଉପଯୋଗ ଏବଂ ସମାଧାନ ଉପରେ ଧ୍ୟାନ କେନ୍ଦ୍ରୀଭୂତ ହୋଇଥିଲା । ବିକାଶଶୀଳ ବିଶ୍ୱ ନିମନ୍ତେ ଉଦାହରଣ ହୋଇପାରିବା ପରି ସାମର୍ଥ୍ୟ ଥିବା ସାଂସ୍କୃତିକ ଏବଂ କୃଷି କାର୍ଯ୍ୟକ୍ରମର ସଫଳ ଘଟଣାଗୁଡିକ ସଂପର୍କରେ କଳାହାଣ୍ଡିର ବିଶାରଦମାନେ ଉଲ୍ଲେଖ କରିଥିଲେ ।

ସମ୍ମିଳନୀର ପ୍ରଥମ ପୂର୍ଣ୍ଣାଙ୍ଗ ବୈଠକରେ ଅନେକ ଧୀଶକ୍ତିସଂପନ୍ନ ବ୍ୟକ୍ତିବିଶେଷ ସେମାନଙ୍କର ବ୍ୟକ୍ତିଗତ ଅଭିଜ୍ଞତା ବଖାଣିଥିଲେ ଏବଂ ଏହି ତିନିଦିନିଆ କଳାହାଣ୍ଡି ଡାଇଲଗ୍ ନିମନ୍ତେ ସକାରାତ୍ମକ ଆଶା ପୋଷଣ କରିଥିଲେ । ଓୟୁଏଟିର କୁଳପତି ପ୍ରଫେସର୍ ସୁରେନ୍ଦ୍ରନାଥ ପଶୁପାଳକ କଳାହାଣ୍ଡିର ଗୌରବମୟ ଇତିହାସ ସଂପର୍କରେ ଉଲ୍ଲେଖ କରି, ଏହି ଭୂଖଣ୍ଡ ଏହାର ବିଶେଷ କିସମର ଚାଉଳ ନିମନ୍ତେ ବେଶ୍ ଜଣାଶୁଣା ଥିଲା ବୋଲି ପ୍ରକାଶ କରିଥିଲେ ଏବଂ ଅଭାବୀ କଳାହାଣ୍ଡିର କାହାଣୀକୁ ସମୃଦ୍ଧ ଗାଥାରେ ପରିବର୍ତ୍ତନ କରିବା ଦିଗରେ ସରକାର ଓ କୃଷକମାନଙ୍କର ସମୂହ ଉଦ୍ୟମର ଉଚ୍ଚ ପ୍ରଶଂସା କରିଥିଲେ । ଓୟୁଏଟି ଦ୍ୱାରା ଗ୍ରହଣ କରାଯାଉଥିବା ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ସଂପର୍କରେ ସେ ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ କଳାହାଣ୍ଡିର ଭବିଷ୍ୟତ ବିକାଶରେ ତାଙ୍କ ଅନୁଷ୍ଠାନ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲାଇବାକୁ ଯାଉଥିବା ବିଷୟରେ ଉଲ୍ଲେଖ କରିଥିଲେ ।

୧୯୮୦ ସମୟ ବେଳକୁ କଳାହାଣ୍ଡି ପଛୁଆ ଏବଂ ଅନାହାର ସହ ଜଡିତ ଥିଲା, ଯାହାକି 'କଳାହାଣ୍ଡି ସିଣ୍ଡ୍ରୋମ୍' ରୂପେ ଜଣାଶୁଣା ଥିଲା । କଳାହାଣ୍ଡି ଦାରିଦ୍ର୍ୟର ପ୍ରତିଶବ୍ଦ ଥିଲା । ସମ୍ମିଳନୀରେ ନୀତି ପ୍ରଣେତା, ବିକାଶ ଅନୁଧ୍ୟାୟୀ ଏବଂ ପ୍ରତିନିଧିଗଣ ଏହି 'କଳାହାଣ୍ଡି ସିଣ୍ଡ୍ରୋମ୍'କୁ ଦୂରେଇଦେବା ଦିଗରେ ପରିସଂଖ୍ୟାନ ଏବଂ ବିଶ୍ଳେଷଣ ଉପସ୍ଥାପନ କରିଥିଲେ । ଉପସ୍ଥିତ ଥିବା ସମସ୍ତ ବକ୍ତାଗଣ କଳାହାଣ୍ଡି କିପରି ଅଭିବୃଦ୍ଧି ହାସଲ କରିପାରିଛି ଏବଂ ବର୍ତ୍ତମାନ ଏହା ରାଜ୍ୟର ସବୁଜ ଝୁଡିରେ ପରିବର୍ତ୍ତିତ ହୋଇପାରିଛି, ସେ ସଂପର୍କରେ ମତବ୍ୟକ୍ତ କରିଥିଲେ । ଅନେକ ପ୍ରତିନିଧି କଳାହାଣ୍ଡିର ସଫଳତା ସଂପର୍କରେ କିପରି ବିଶ୍ୱ ଗଣମାଧ୍ୟମରେ ପ୍ରଚାର ହୋଇପାରିଛି ତାହାର ଉଦାହରଣ ଦେବା ସହ କଳାହାଣ୍ଡି କିପରି ବିକାଶ ଅଧ୍ୟୟନରେ ବିଶ୍ୱ ସମୁଦାୟର ବାରମ୍ବାର ଦୃଷ୍ଟି ଆକର୍ଷଣ କରିପାରିଛି, ତାହାର ଉଲ୍ଲେଖ କରିଥିଲେ । ଦେଶୀୟ ପରମ୍ପରାକୁ ସମ୍ମାନ ଜଣାଇ ବିଶ୍ୱତାପନ ଏବଂ ଜଳବାୟୁ ପରିବର୍ତ୍ତନ ପରି ପାରିବେଶିକ ଆହ୍ୱାନଗୁଡିକର ସମ୍ମୁଖୀନ ହେବା ସହଜ ହେବ ବୋଲି ଅନେକ ଯୁକ୍ତି ବାଢିଥିଲେ ।

ଉକ୍ତ ସମ୍ମିଳନୀ ଅବସରରେ 'ପୋଷଣୀୟ ବିକାଶ ଲକ୍ଷ୍ୟ ହାସଲ କରିବାରେ ପ୍ରମୁଖ ନୀତିଗୁଡିକ ପ୍ରତି ଅଗ୍ରାଧିକାର ଏବଂ ରୂପାୟନରେ ଥିବା ସମସ୍ୟା', ଜଳବାୟୁ ପରିବର୍ତ୍ତନର ସମ୍ମୁଖୀନ କରୁଥିବା ବେଳେ ବିକାଶ ପ୍ରକ୍ରିୟା, ସାମାଜିକ ଔଦ୍ୟୋଗିକତା ଓ ସିଏସ୍ଆର୍ ଉପରେ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା । କଳା, ସଂସ୍କୃତି ଓ ଇତିହାସ, ସମସ୍ୟାମୂଳକ ସାମାଜିକ ଅଭିନବତା, ନ୍ୟାୟ ପ୍ରଦାନ, ଉନ୍ନୟନ ନୀତି ପର୍ଯ୍ୟବସିତ ଯୁବ ମାନସର ସ୍ୱର, କୃଷକମାନଙ୍କ ଆବଶ୍ୟକତାଗୁଡିକ ପ୍ରତି ଦୃଷ୍ଟି ଦେଇ ଖାଦ୍ୟ ନିରାପତ୍ତା ନିମନ୍ତେ କୃଷିରେ ଅଭିନବ କାର୍ଯ୍ୟକ୍ରମ ଓ ପ୍ରଯୁକ୍ତିବିଦ୍ୟା ପ୍ରୟୋଗ ଜରିଆରେ 'ଦାରିଦ୍ର୍ୟରୁ ସମୃଦ୍ଧି' ଶୀର୍ଷକ ବିଶଦ୍ ଆଲୋଚନା ହୋଇଥିଲା ।

ଏହି ଡାଇଲଗ୍ ଆୟୋଜନ ନିମନ୍ତେ କଳାହାଣ୍ଡିରେ ବିଭିନ୍ନ କ୍ଷେତ୍ରରେ ପାରଦର୍ଶିତା ହାସଲ କରିଥିବା ବହୁ ବିଶିଷ୍ଟ ବ୍ୟକ୍ତିଗଣ ଯୋଗ ଦେଇଥିଲେ । ଉକ୍ତ ସମ୍ମିଳନୀରେ ଅଂଶ ଗ୍ରହଣ କରିଥିବା ସାମାଜିକ କର୍ମୀ ତୁଳସୀ ମୁଣ୍ଡା, ପ୍ରାକ୍ତନ ରାଜ୍ୟସଭା ସଦସ୍ୟ ଏ.ଭି.ସ୍ୱାମୀ, ବିଶିଷ୍ଟ ଅଭିନେତା/ନିର୍ଦ୍ଦେଶକ ଏବଂ ରାଜ୍ୟସଭା ସଦସ୍ୟ ପ୍ରଶାନ୍ତ ନନ୍ଦ, ରାଜନୈତିକ ନେତୃବୃନ୍ଦଙ୍କ ମଧ୍ୟରେ ପୂର୍ବତନ ମନ୍ତ୍ରୀ ରାହାସ ବିହାରି ବେହେରା, ଧର୍ମଗଡର ବିଧାୟକ ପୁଷ୍ପେନ୍ଦ୍ର ସିଂହଦେଓ, ଜୁନାଗଡର ବିଧାୟକ କ୍ୟାପ୍‌ଟେନ୍ ଡି.ଏସ୍.ମିଶ୍ର, ଭବାନୀପାଟଣା ବିଧାୟକ ଅନାମ ନାୟକ, ଭବାନୀ ଶଙ୍କର ମିଶ୍ର ଏବଂ ଭବେନ୍ଦ୍ର ପଣ୍ଡା, ବିକାଶ ଧ୍ୟାୟୀ ଆରାଧନା ନନ୍ଦ, ରଜନିଶ ଜୈନ, ମନମୋହନ ସିଂହ, ଉମି ଡାନିଲ୍, ରାହୁଲ୍ ନୈନୱାଲ୍, ପାର୍ଥ

ଶାହ, ଡି.ଧନୁରାଜ୍, କୀର୍ତ୍ତି ଭୂଷଣ ପ୍ରଧାନ, ଅବନି ମୋହନ ପାଣିଗ୍ରାହୀ, ଶଶାଙ୍କ ପାଢ଼ି, ରାଜ କିଶୋର ମିଶ୍ର, ବରୁଣ ମିତ୍ର, ଡକ୍ଟର୍ ଅନିଶ୍ ଅନ୍ଧେରିଆ, ଶ୍ରୀନିବାସ ଆଲାଭିଲି, ଡକ୍ଟର ପ୍ରଭାସ ରଂଜନ ମିଶ୍ର, ଓସାମା ମନ୍‌ଜର୍, ଲକ୍ଷ୍ମୀ ନନ୍ଦ ଓ ସୌରଭ ବାନାର୍ଜୀ, ବରିଷ୍ଠ ସାମ୍ବାଦିକ ଅଦ୍ଧେନ୍ଦୁ ଦାସ, ଭକ୍ତ ତ୍ରିପାଠୀ, ଉମା ଶଙ୍କର କର, ଦୀଲ୍ଲିପ ଶତପଥୀ, ସତ୍ୟ ମହାପାତ୍ର ଓ ନୀଳାମ୍ବର ରଥ, ଶିକ୍ଷାବିତ୍ ରେକ୍ଟର୍, ଜେଏନ୍‌ୟୁ ଡକ୍ଟର ଚିନ୍ତାମଣି ମହାପାତ୍ର, ପ୍ରଫେସର୍ ଗୋପବନ୍ଧୁ ବେହେରା, ଶ୍ରୀକାନ୍ତ ଚାଟାର୍ଜୀ, ଡାଇରେକ୍ଟର ଆଇଇଜି ମନୋଜ ପଣ୍ଡା, ଭିସି ଏନ୍ଏଲ୍‌ୟୁଓ ଡକ୍ଟର୍ ରାଓ, ଏନ୍ଆଇଏଏସ୍ ପ୍ରଫେସର୍ ଡକ୍ଟର୍ ହିମ୍ମୁ ନାଥନ୍, ପ୍ରଫେସର୍ ଟିଆଇଏସ୍ଏସ୍ ମହମ୍ମଦ ତାରିକ୍, ବିଶିଷ୍ଟ ନ୍ୟାୟିକ ବ୍ୟକ୍ତିବିଶେଷ ସାଇ ଦୀପକ୍, ଦଇତାରୀ ପ୍ରଧାନ ଓ ବିଭୁ ତ୍ରିପାଠୀ ପ୍ରମୁଖ ବିଭିନ୍ନ ପ୍ରସଙ୍ଗ ଯଥା କୃଷି, ଖାଦ୍ୟ ନିରାପତ୍ତା, ନାଗରିକ ସଂପୃକ୍ତି, ନ୍ୟାୟ ପ୍ରଦାନ, ରାଜନୈତିକ ଇଚ୍ଛାଶକ୍ତି ସହ କିପରି କଳାହାଣ୍ଡି ଜିଲ୍ଲାର ସାମଗ୍ରିକ ବିକାଶ କ୍ଷେତ୍ରରେ ଉକ୍ତ ଜିଲ୍ଲାରେ ଥିବା ସମ୍ଭାବନାଗୁଡିକୁ ସାକାର ରୂପ ଦିଆଯାଇପାରିବ, ସେ ସଂକ୍ରାନ୍ତରେ ନିଜ ନିଜର ବକ୍ତବ୍ୟ ରଖିଥିଲେ ।

**ସ୍ଥାନୀୟ ଅଧିବାସୀଙ୍କ ସ୍ୱରକୁ ଅଗ୍ରାଧିକାର**

(କ) କଳାହାଣ୍ଡିର ଜନସାଧାରଣ

(ଖ) କଳାହାଣ୍ଡିରେ ମହିଳା ସଶକ୍ତିକରଣ

କଳାହାଣ୍ଡିର ଜନସାଧାରଣଙ୍କ ଉପରେ ପର୍ଯ୍ୟବସିତ ଏହି ଅଧିବେଶନ କାଳରେ ଥୁଆମୂଳ ରାମପୁର ଅଂଚଳର ସାତ ଜଣ ମହିଳା ସେମାନଙ୍କର ଜୀବନ ସଂଗ୍ରାମ, ଆଶା ଓ ଆଶ୍ୱସ୍ତିର କଥା ବଖାଣିଥିଲେ । ଯୁବଶକ୍ତି, ଏସ୍‌ଡିଜି ଓ ରାଜନୈତିକ ଅଂଶଗ୍ରହଣ ଶୀର୍ଷକ ଅଧିବେଶନରେ ବିପୁଳ ସଂଖ୍ୟାରେ ସ୍ଥାନୀୟ ବାସିନ୍ଦା ଯୋଗ ଦେଇଥିଲେ । ମହିଳା ସଶକ୍ତିକରଣ ଉପରେ ଆୟୋଜିତ ଅଧିବେଶନରେ ଅବିଭକ୍ତ କଳାହାଣ୍ଡିର ବିଭିନ୍ନ ଗ୍ରାମପଂଚାୟତରୁ ପ୍ରାୟ ୩୦୦ ସ୍ୱୟଂ ସହାୟକ ଗୋଷ୍ଠୀଭୁକ୍ତ ମହିଳା ସଦସ୍ୟ ନିଜ ନିଜର ସାମାଜିକ ଏବଂ ଅର୍ଥନୈତିକ ସ୍ଥିତି ସଂପର୍କରେ ଅବଗତ କରାଇଥିଲେ । ସ୍ଥାନୀୟ ଅଧିବାସୀ ଓ ବୁଦ୍ଧିଜୀବୀଙ୍କ ସ୍ୱରକୁ ଗୁରୁତ୍ୱ ଦେବାକୁ ଯାଇ ଏହି ଅଧିବେଶନଗୁଡିକ ଓଡିଆ ତଥା କଳାହାଣ୍ଡିଆ ଭାଷାରେ ସଂଚାଳିତ ହୋଇଥିଲା ।

ଅଭିନବ କାର୍ଯ୍ୟକ୍ରମ

କଳାହାଣ୍ଡି ଡାଇଲଗ୍‌ରେ ଗ୍ରହଣ କରାଯାଇଥିବା ଉଲ୍ଲେଖଯୋଗ୍ୟ ପ୍ରମୁଖ କାର୍ଯ୍ୟକ୍ରମଗୁଡିକ ହେଲା –

* ଉକ୍ତ ସମ୍ମିଳନୀ ଅବସରରେ 'କଳାହାଣ୍ଡିର ଆଦିବାସୀ' ବିଷୟବସ୍ତୁ ଉପରେ ଆୟୋଜିତ ଚିତ୍ରାଙ୍କନ କର୍ମଶାଳାରେ ୨୧ ଜଣ ସ୍ଥାନୀୟ କଳାକାର ନିଜ ନିଜର ଦକ୍ଷତା ପ୍ରତିପାଦନ କରିଥିଲେ ।

* କଳାହାଣ୍ଡିର ସମୃଦ୍ଧ ଐତିହ୍ୟ ଓ ଜୀବନଧାରଣ ମାନ ସଂପର୍କରେ ଏକ ଆଦିବାସୀ ସଂଗ୍ରହାଳୟର ପରିକଳ୍ପନା ।

* କଳାହାଣ୍ଡି କୃଷକମାନଙ୍କର ଉପକାରିତା ପାଇଁ ଏକ ବୈଷୟିକ କୌଶଳ ତଥା ପ୍ରଯୁକ୍ତିଭିତ୍ତିକ କୃଷି ପ୍ରଦର୍ଶନୀ ଆୟୋଜନ ।

* ଜାତୀୟ ଅଭିନବତା ପ୍ରତିଷ୍ଠାନ ଦ୍ୱାରା ଅଭିନବ ପୋଷ୍ଟର ପ୍ରଦର୍ଶନୀ ।

* ବୋଡେନ୍‌ର ଧାନ ଦ୍ୱାରା ନିର୍ମିତ କଳା ପରି ସ୍ଥାନୀୟ କାରିଗରମାନଙ୍କ ଦ୍ୱାରା ଉତ୍ପାଦିତ ହସ୍ତଶିଳ୍ପର ପ୍ରଦର୍ଶନୀ ।

* କ୍ଷୁଦ୍ର ସହର ଏବଂ ଗ୍ରାମୀଣ ଭାରତରେ ଔଦ୍ୟୋଗିକ ମନୋବୃତ୍ତି ପ୍ରତି ଗୁରୁତ୍ୱାରୋପ ପୂର୍ବକ ସାମାଜିକ ଉଦ୍ୟୋକ୍ତାଗଣଙ୍କ ଦ୍ୱାରା ସାମାଜିକ କ୍ଷେତ୍ର ପ୍ରତିଷ୍ଠା ।

* ୧୫୦ରୁ ଅଧିକ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ଉଦ୍ଦେଶ୍ୟରେ 'ଯୁବ ନେତୃବୃନ୍ଦଙ୍କ ନିମନ୍ତେ ପଲିସି' କର୍ମଶାଳା ଆୟୋଜନ ।

**ସାଂସ୍କୃତିକ କାର୍ଯ୍ୟକ୍ରମ**

ଏହି ସମ୍ମିଳନୀରେ ଯୋଗ ଦେଇଥିବା ଅଂଶଗ୍ରହଣକାରୀଙ୍କ ମନୋରଂଜନ କରିବା ତଥା ସେମାନଙ୍କୁ କଳାହାଣ୍ଡିର ସମୃଦ୍ଧ କଳା, ସଂସ୍କୃତି ଏବଂ ପରମ୍ପରା ସଂପର୍କରେ ତଥ୍ୟ ବିତରଣ କରିବା ଉଦ୍ଦେଶ୍ୟରେ ସ୍ଥାନୀୟ କଳାକାରମାନଙ୍କ ଦ୍ୱାରା ଆଂଚଳିକ ନୃତ୍ୟ ଓ ସଂଗୀତ ନାଟକ ପରିବେଷିତ ହୋଇଥିଲା । ଘୁମୁରା, ସଲାବ୍ ଧାପ୍, ଓଡିଶୀ, ଘୁଡ୍‌କା, ଡାଲ୍‌ଖାଇ, ଗୋଟିପୁଅ, ଛଉ ନୃତ୍ୟ, ସିଙ୍ଗାରୀ, ବଜସାଲ୍ ପ୍ରଭୃତି

ନୃତ୍ୟ ଶୈଳୀ ପ୍ରଦର୍ଶିତ ହୋଇଥିଲା । ଗୋଟିଏ ନୃତ୍ୟ ଦଳ ତିନି ବର୍ଷ ପରେ ନିଜ ନୃତ୍ୟ ପ୍ରଦର୍ଶନର ସୁଯୋଗ ପାଇଲା । ଏହି ନୃତ୍ୟ ଶୈଳୀ ଅଧୁନା ବିଲୋପର ଦ୍ୱାର ଦେଶରେ



ଉପନୀତ । ଓଡ଼ିଶା ତଥା ଭାରତ ବାହାରୁ ଅନେକ ଅଂଶଗ୍ରହଣକାରୀ ଏହି ସମସ୍ତ ନୃତ୍ୟ ଶୈଳୀରେ ଥିବା ମହାନ୍ ସାଂସ୍କୃତିକ ମୂଲ୍ୟବୋଧକୁ ହେଜିଥିଲେ ଏବଂ ଏପରି ନୃତ୍ୟ ଶୈଳୀଗୁଡିକୁ ସୁଯୋଗ ଦେଇଥିବାରୁ କଳାହାଣ୍ଡି ଡାଇଲଗ୍‌କୁ ପ୍ରଶଂସା କରିଥିଲେ ।

### କଳାହାଣ୍ଡିର ହିରୋଙ୍କ ସଂପର୍କରେ

କଳାହାଣ୍ଡିର ହିରୋ ରୂପେ ନାମିତ ଛଅ ଜଣ ଯୁବ ପ୍ରତିଭାଙ୍କୁ ନିଜସ୍ୱ କ୍ଷେତ୍ରରେ ସେମାନଙ୍କର ପ୍ରେରଣାଦାୟୀ ସଫଳତା ନିମନ୍ତେ ସମ୍ବର୍ଦ୍ଧିତ କରାଯାଇଥିଲା । ଏହି ଅବସରରେ ଲୋକ ସଂଗୀତ କ୍ଷେତ୍ରରେ ଶ୍ରୀ ସର୍ବେଶ୍ୱର ଭୋଇ, ପର୍ବତାରୋହୀ ଶ୍ରୀ ଯୋଗବ୍ୟାସ ଭୋଇ, କବି ଶ୍ରୀ ଜଇଦ୍ରଥ ଜେନା, ଅନ୍ତର୍ଜାତୀୟ ଚେସ୍ ଖେଳାଳି ସୌନ୍ଦର୍ଯ୍ୟ ପ୍ରଧାନ, ଗିନିସ୍ ରେକର୍ଡଧାରୀ ସତ୍ୟପୀର ପ୍ରଧାନ ଏବଂ ବଲିଉଡ୍ ସଂଗୀତଜ୍ଞ ଦେବରାଜ ନାୟକ ପ୍ରମୁଖଙ୍କୁ ପୁରସ୍କୃତ କରାଯାଇଥିଲା । ପୁରସ୍କୃତ ହୋଇଥିବା ବିଶିଷ୍ଟ ବ୍ୟକ୍ତିଗଣ ସେମାନଙ୍କର ଜୀବନଯାତ୍ରା ସଂପର୍କରେ ଅବତାରଣା କରି ସେମାନେ କିପରି ନିଜ ନିଜର ଅସୁବିଧାକୁ ସୁଯୋଗରେ ପରିଣତ କରିପାରିଥିଲେ ସେ ସଂପର୍କରେ ଉଲ୍ଲେଖ କରିଥିଲେ । କଳାହାଣ୍ଡିର ଏହି ହିରୋମାନେ ହଜାର ହଜାର ଯୁବକଯୁବତୀଙ୍କ ପ୍ରେରଣାର ଉତ୍ସ ହୋଇପାରିବେ ବୋଲି ଆଶା ।

### ବିବରଣୀ ଓ ପୁସ୍ତକ ଉନ୍ମୋଚନ

କଳାହାଣ୍ଡିର କୃଷି କ୍ଷେତ୍ରରେ ସଫଳତା ଉପରେ ଓୟୁଏଟି ଦ୍ୱାରା ପ୍ରସ୍ତୁତ ଏକ ବିବରଣୀ 'Agricultural Transformation in Kalahandi: A paradigm shift from Survival to Surplus'. ଏହି ସମ୍ମିଳନୀରେ ଉନ୍ମୋଚିତ ହୋଇଥିଲା । ସେହିଭଳି ରେଭେନ୍ସା ବିଶ୍ୱବିଦ୍ୟାଳୟର ଡକ୍ଟର ସଞ୍ଜୟ ଶତପଥୀଙ୍କ ଦ୍ୱାରା କଳାହାଣ୍ଡି ଉପରେ ଲିଖିତ ଅନ୍ୟ ଏକ ପୁସ୍ତକ ' Development of Tribal Economy: A Study of LAMPS in the district of Kalahandi' ମଧ୍ୟ ଉନ୍ମୋଚିତ ହୋଇଥିଲା । କଳାହାଣ୍ଡି ଉପରେ ଲେଖାଗୁଡିକୁ ସମୃଦ୍ଧ କରିବା ଦିଗରେ କଳାହାଣ୍ଡି ବାର୍ତ୍ତା ପ୍ରତିଶ୍ରୁତିବଦ୍ଧ ।

### ଛାତ୍ରଛାତ୍ରୀମାନଙ୍କ ପାଇଁ ଲୋକନୀତି ତାଲିମ

ଦିଲ୍ଲୀର ଏକ ପ୍ରମୁଖ ବିଶ୍ୱସ୍ତରୀୟ ଚିନ୍ତାଶୀଳ ସଂସ୍ଥା ସେଣ୍ଟର ଫର୍ ସିଭିଲ ସୋସାଇଟି ଲୋକନୀତି ତାଲିମ କାର୍ଯ୍ୟକ୍ରମ 'iPolicy for Young Leaders' ସଂକଳନ କରିଛି । ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀ ଏହି ନେତୃତ୍ୱ ତାଲିମ କାର୍ଯ୍ୟକ୍ରମରେ ଯୋଗଦେଇ ଜନସାଧାରଣଙ୍କ ଲୋକନୀତି ପ୍ରସ୍ତୁତିର ମୌଳିକ ତତ୍ତ୍ୱ, ନୀତି ବିଶ୍ଳେଷଣ ଓ ସାର୍ବଜନିକ ସୂଚନା ପାଇଁ ଶିକ୍ଷାଲାଭ କରିଥିଲେ । କଳାହାଣ୍ଡି ଜିଲ୍ଲାର ଛାତ୍ରଛାତ୍ରୀମାନଙ୍କ ପାଇଁ ଏହା ଏକ ବୃହତ୍ ମଞ୍ଚ ଥିଲା, ଯାହାକି ସେମାନଙ୍କୁ ପ୍ରଥମ ଥର ପାଇଁ ଜାତୀୟସ୍ତରୀୟ ନୀତି ନିର୍ଦ୍ଧାରକମାନଙ୍କ ସହ ଭାବ ଆଦାନ ପ୍ରଦାନର ଅପୂର୍ବ ସୁଯୋଗ ପ୍ରଦାନ କରିଥିଲା ଏବଂ TISS, IIT, JNU, NIT ଏବଂ VIT

ଇତ୍ୟାଦି ଅନୁଷ୍ଠାନରୁ ଆସିଥିବା ଛାତ୍ରଛାତ୍ରୀମାନଙ୍କ ସହ ପାରସ୍ପରିକ ସମ୍ପର୍କ ବୃଦ୍ଧି କରିବାରେ ସହାୟକ ହୋଇପାରିଥିଲା ।

କଳାହାଣ୍ଡିର ବିକାଶ ନିମନ୍ତେ ସାମିଲ ହୋଇଥିବା ଅଂଶଗ୍ରହଣକାରୀ ଏକତ୍ରିତ ହୋଇ ସେମାନଙ୍କର ବହୁମୂଲ୍ୟ ସମୟ, ଶକ୍ତି ଏବଂ ସମ୍ବଳ ଉପଯୋଗ କରିବା ନିମନ୍ତେ କଳାହାଣ୍ଡି ବାର୍ତ୍ତା ପ୍ରକାଶ କରିଥିଲେ ।

**କଳାହାଣ୍ଡି ଡାଇଲଗ୍**

ବିକାଶର ବିଭିନ୍ନ ଦିଗ ଉପରେ ତିନିଦିନ ବ୍ୟାପୀ ବିଚାର ବିମର୍ଶ କରିବା ପରେ ଏହି ଘୋଷଣାନାମା ପ୍ରକାଶ ପାଇଥିଲା ।




ବର୍ତ୍ତମାନର ସ୍ଥିତି ସମ୍ବନ୍ଧରେ ଉତ୍ତମ ବୁଝାମଣା ଏବଂ ଏକ ଉଜ୍ଜ୍ୱଳ ଭବିଷ୍ୟତ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବା ଦିଗରେ ଏହି ତିନି ଦିନ ମଧ୍ୟରେ ନୀତି ଓ ମଡେଲର ସପକ୍ଷ ଓ ବିପକ୍ଷରେ ଆମ୍ଭେମାନେ ଆଲୋଚନା ବିତର୍କ ଓ ଯୁକ୍ତି ଉପସ୍ଥାପନ କଲୁ । ଏହି ସମୃଦ୍ଧ ଭବିଷ୍ୟତ କେବଳ କଳାହାଣ୍ଡିର ଜନସାଧାରଣଙ୍କ ପାଇଁ କଳ୍ପନା କରାଯାଇନାହିଁ ବରଂ ଯେଉଁମାନେ ଏହିଭଳି ଜନସଂଖ୍ୟା, ସମୃଦ୍ଧି ପଥ ଏବଂ ସାମାଜିକ ଅର୍ଥନୈତିକ ଆହ୍ୱାନର ସମ୍ମୁଖୀନ ହେଉଛନ୍ତି, ଏହା ସେମାନଙ୍କ ପାଇଁ ମଧ୍ୟ ଉଦ୍ଦିଷ୍ଟ । କଳାହାଣ୍ଡି ଭଳି ଚିତ୍ର ସମଗ୍ର ପୃଥିବୀରେ ବିଶେଷ କରି ଏସିଆ, ଆଫ୍ରିକା ମହାଦେଶ, ଲାଟିନ୍ ଆମେରିକା ଏବଂ ଦ୍ୱୀପପୁଞ୍ଜ ଥିବା ଭୌଗୋଳିକ ଅଞ୍ଚଳରେ ପରିଦୃଶ୍ୟ ହୋଇଥାଏ ଓ ଏହା ବିଶ୍ୱର ଅବଶିଷ୍ଟ ଅଞ୍ଚଳ ପାଇଁ ମଧ୍ୟ ପଥ ପ୍ରଦର୍ଶକ ହୋଇପାରିବ ।

କଳାହାଣ୍ଡି ବାର୍ତ୍ତା କହିଲେ ଆମେ କଳାହାଣ୍ଡିରେ ଗ୍ରହଣ କରାଯାଉଥିବା କାର୍ଯ୍ୟକ୍ରମକୁ ବୁଝିଥାଉ ଏବଂ ଏହି କାର୍ଯ୍ୟାନ୍ୱୟନ ସମସ୍ତଙ୍କ ସହଯୋଗରେ ହୋଇଥାଏ । ତେଣୁ ତିନି ଦିନରେ ହୋଇଥିବା ବିଚାରବିମର୍ଶ ପରେ ଏହାକୁ ନିର୍ଦ୍ଦିଷ୍ଟ ରୂପରେଖ ଦେବା ଏବଂ ଏକ ଉତ୍ତମ, ଅନ୍ତର୍ଭୁକ୍ତି, ସୁସ୍ଥ ଓ ସମୃଦ୍ଧ କଳାହାଣ୍ଡି ଗଠନ ଦିଗରେ ପ୍ରସ୍ତାବଗୁଡ଼ିକୁ ଅନ୍ୱେଷଣ କରିବା ହେଉଛି କଳାହାଣ୍ଡି ଘୋଷଣାନାମାର ଲକ୍ଷ୍ୟ । କଳାହାଣ୍ଡି ବାର୍ତ୍ତାରେ ଆମେ ଅବଗତ ଅଛୁ ଯେ ସରକାର ଏଠାରେ ଉତ୍କୃଷ୍ଟ କାର୍ଯ୍ୟ କରୁଅଛନ୍ତି, ଏଠାରେ ଥିବା ଶିଳ୍ପସମୂହ ନିଜ ନିଜ ପରିସୀମାରେ ସଶକ୍ତ କାର୍ଯ୍ୟ କରୁଛନ୍ତି, ଗଣମାଧ୍ୟମ ସଚେତନତା ସୃଷ୍ଟି କରିବା ଓ ମାନବୀୟ ସ୍ୱାର୍ଥ ସମ୍ବଳିତ କାହାଣୀ ରିପୋର୍ଟ ପ୍ରସ୍ତୁତ କରୁଛନ୍ତି, ଶିକ୍ଷକ ଆଗାମୀ ପିଢ଼ିର ସଚେତନ ନାଗରିକମାନଙ୍କୁ ପ୍ରଶିକ୍ଷଣ ଦେବା ପାଇଁ ଯଥାସାଧ୍ୟ ଉଦ୍ୟମ କରୁଛନ୍ତି, ଆଦିବାସୀ ନେତାମାନେ କଳା, ସଂସ୍କୃତି, ନୃତ୍ୟ, ଲୋକଗୀତ, ସଙ୍ଗୀତ, ସ୍ଥାନୀୟ ଭାଷା ଏବଂ ପାରମ୍ପରିକ ଉପଚାରଗୁଡ଼ିକୁ ସୁରକ୍ଷା ଦେବା ପାଇଁ ଉତ୍ତମ କାର୍ଯ୍ୟ କରୁଛନ୍ତି, ସାମାଜିକ ଓ ରାଜନୈତିକ କର୍ମକର୍ତ୍ତା ଅନଗ୍ରସର ଲୋକମାନଙ୍କ ସ୍ୱାର୍ଥରକ୍ଷା କରିବା ଓ ସେମାନଙ୍କୁ ସରକାର ତଥା ବଦାନ୍ୟ ବ୍ୟକ୍ତିମାନଙ୍କ ସହ ଯୋଡ଼ିବା ଭଳି କାର୍ଯ୍ୟ କରିଆସୁଛନ୍ତି । ଏହିସବୁ ଅଂଶୀଦାରମାନଙ୍କ ମଧ୍ୟରେ ଫଳପ୍ରଦ ସହଯୋଗ ଓ ସମନ୍ୱୟ ରକ୍ଷା କରି ଉପଯୁକ୍ତ ହସ୍ତକ୍ଷେପ ମାଧ୍ୟମରେ ଉନ୍ନତି ଆଣିବା କଳାହାଣ୍ଡି ଘୋଷଣାନାମାର ମୂଳ ଲକ୍ଷ୍ୟ ।

ସମ୍ମିଳିତ କାର୍ଯ୍ୟ ପାଇଁ ଆମ୍ଭେମାନେ ଅନେକ ପରିଯୋଜନାର ପ୍ରସ୍ତାବ ପାଇଛୁ ଏବଂ ଏହି ଘୋଷଣା ବିଶେଷଭାବେ ଏକ ନିଶ୍ଚିତ ଏବଂ ସ୍ୱଷ୍ଟ ଉଦ୍ଦେଶ୍ୟ ନେଇ ବିଭିନ୍ନ ସମସ୍ୟା ଓ ସହଯୋଗୀମାନଙ୍କର ସଂପୃକ୍ତି ବିଷୟରେ ଉଲ୍ଲେଖ କରିବ ।

ବିଭିନ୍ନ ଚିନ୍ତାଧାରା, ଉତ୍ପାଦ, ସେବା ଓ ଆର୍ଥିକ ସମ୍ବଳର ବ୍ୟବସ୍ଥା କରିବା ନିମନ୍ତେ କେତେକ ଅନୁଷ୍ଠାନ, ବିଶେଷଜ୍ଞ ଓ ସାମାଜିକ ଉଦ୍ୟୋଗୀମାନେ ନିମ୍ନୋକ୍ତ ବିଷୟ ଉପରେ ନେତୃତ୍ୱ ନେବା ପାଇଁ ଆଗେଇ ଆସିଛନ୍ତି । ଏସବୁ ବିଷୟ ଉପରେ ପ୍ରତ୍ୟେକ ବ୍ୟକ୍ତି ନେତୃତ୍ୱ ନେଇପାରିବେ ଏବଂ ସହଯୋଗ କରିପାରିବେ । ଏହି ଉଦ୍ୟମଗୁଡ଼ିକୁ ସମୟାନୁକ୍ରମେ ଉନ୍ନତ କରାଯାଇପାରିବ ଏବଂ ପ୍ରତିବର୍ଷ ଏହାର ସମୀକ୍ଷା କରାଯିବ । ଉପଯୁକ୍ତ କର୍ତ୍ତୃପକ୍ଷ ଏବଂ ଇଚ୍ଛୁକ ସହଯୋଗୀମାନଙ୍କୁ ଭାଗୀଦାରଭାବେ ଗ୍ରହଣ କରାଯିବ ।

**କାର୍ଯ୍ୟକାରୀ କ୍ଷେତ୍ର**

୧. କଳାହାଣ୍ଡିରେ ଷ୍ଟାର୍ଟ୍-ଅପ୍ କାର୍ଯ୍ୟକ୍ରମର ଉନ୍ନତିକରଣ: କଳାହାଣ୍ଡିରେ କାର୍ଯ୍ୟ କରୁଥିବା ଷ୍ଟାର୍ଟ୍-ଅପ୍ ଏବଂ ସାମାଜିକ ଉଦ୍ୟୋଗ ପାଇଁ ଏକ କୋଟି ଇକ୍ୱିଟି ଫଣ୍ଡ୍ ।

୨. ପାରମ୍ପରିକ ଶିଳ୍ପୋଦ୍ୟୋଗ ପୁନରୁତ୍‌ଥାନ ନିମନ୍ତେ ପାଣ୍ଠିଯୋଗାଣ ଯୋଜନା ଅନ୍ତର୍ଗତ ସାମର୍ଥ୍ୟ ବୃଦ୍ଧି ପାଇଁ କ୍ଲଷ୍ଟର ବିକାଶ କେନ୍ଦ୍ର, ଆର୍ଥିକ ସହାୟତା ଏବଂ କାରିଗରମାନଙ୍କୁ ବିପଣନ ସୁବିଧା:

- ଖଇରପଦରଠାରେ କାଠ ଖୋଦେଇ କାର୍ଯ୍ୟ
- ଖଣ୍ଡପଡାଠାରେ ପ୍ରସ୍ତର ଖୋଦେଇ କାର୍ଯ୍ୟ
- ସିନାପାଲି ଓ ନୂଆପଡାଠାରେ ହସ୍ତତନ୍ତ ପୁଞ୍ଜି
- ବୋଡେନ୍‌ର ପ୍ୟାଡି (ଧାନ) କ୍ରାଫ୍ଟ

୩. ଜୈବିକ ଓ ବୈଜ୍ଞାନିକ ପ୍ରଣାଳୀ କୃଷିର ପ୍ରୋତ୍ସାହନ: ଓୟୁଏଟି, ଭବାନୀପାଟଣାର ବୈଷୟିକ ସହଯୋଗରେ କଳାହାଣ୍ଡିର ଚାଷୀମାନଙ୍କ ପାଇଁ ତାଲିମ ଓ ସଚେତନତା ଶିବିର ଅନୁଷ୍ଠିତ ହେବ ।

୪. ଗ୍ରାମୀଣ ରୋଜଗାର: ଖଦୀ ଓ ଗ୍ରାମୋଦ୍ୟୋଗ ଶିଳ୍ପ ବୋର୍ଡ ସହାୟତାରେ କଳାହାଣ୍ଡିର ୩୦୦ ଗ୍ରାମୀଣ ଯୁବକଙ୍କ ଦ୍ୱାରା ମହୁମାଛି ଚାଷ ।

୫. ମହିଳାମାନଙ୍କର ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ପ୍ରତିବର୍ଷ ୧୦୦୦ ମହିଳାଙ୍କୁ ସାଥୀ ପ୍ୟାକ୍ ଯୋଜନାରେ ବିନା ମୂଲ୍ୟରେ ସାନିଟାରୀ ନାପ୍‌କିନ୍ ଯୋଗାଇ ଦିଆଯିବ ।

୬. ସ୍କିଲ୍ ଓଡ଼ିଶା ଦ୍ୱାରା ୫୦୦୦ ମହିଳା ଓ ଯୁବବର୍ଗଙ୍କୁ ଡିଜିଟାଲ ଓ ଅର୍ଥନୀତି ସମ୍ବନ୍ଧରେ ସାକ୍ଷର କରାଯିବ ।

୭. ଓଡ଼ିଶାର ଜାତୀୟ ଆଇନ୍ ବିଶ୍ୱବିଦ୍ୟାଳୟ ଦ୍ୱାରା କଳାହାଣ୍ଡି ଆଇନ୍ ମହାବିଦ୍ୟାଳୟରେ 'ନ୍ୟାୟ ସମ୍ବନ୍ଧୀୟ ଜ୍ଞାନ' ଯୋଗାଇ ଦିଆଯିବ ।

୮. କଳାର ବିକାଶ: ମଦନପୁର ରାମପୁରଠାରେ ମାଟିରେ ନିର୍ମିତ ଏକ ଡିଜାଇନ୍ ସଂସ୍ଥାନ ପ୍ରତିଷ୍ଠା ହେବ, ଯାହାକି ବିଶ୍ୱରେ ପ୍ରଥମ ଟେରାକୋଟା ଗୃହଭାବେ ପରିଗଣିତ ହେବ ।

୯. Room2Read କଳାହାଣ୍ଡି ଜିଲ୍ଲାରେ ୫ ଗୋଟି ଗ୍ରାମ୍ୟ ପାଠାଗାର କରିବା ପାଇଁ ସହମତି ପ୍ରଦାନ କରିଛି ।

୧୦. UNESCO ସହାୟତାରେ କଳାହାଣ୍ଡିର ପାରମ୍ପରିକ ନୃତ୍ୟ, ସଙ୍ଗୀତ ଓ ସ୍ଥାନୀୟ ଭାଷାର ସଂରକ୍ଷଣ ହେବ ।

୧୧. ନୂଆଦିଲ୍ଲୀଠାରେ କଳାହାଣ୍ଡି ସାଂସ୍କୃତିକ ଉତ୍ସବର ଆୟୋଜନ କରାଯିବ ।





# ଶ୍ରୀଜଗନ୍ନାଥାଷ୍ଟକମ୍

ଗୋପଅଙ୍ଗନା–ବଦନ– କମଳୁଁ ଯେ ମଧୁପାନ
କଲେକ ଆବର ଯା’ଙ୍କ ମୁରଲୀ–ନାଦ,
କାଳିନ୍ଦୀ–ତଟ–ବିପିନ କଲାକ ମୋଦେ ମଗନ
ରମା ଶମ୍ଭୁ ଆଦିରେ ଯେ ପୂଜିତ–ପଦ,
ପଥୁକି ମୋ’ ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ’ ସେ ଜଗନ୍ନାଥେ । (୧)

ବାମକରେ ମୁରଲିକା ଶିରେ ଶିଖିପୁଚ୍ଛ ଶିଖା
କଟୀତଟେ ପୀତାମ୍ବର ଯା’ଙ୍କ ଶୋଭିତ,
କଟାକ୍ଷବାଣ ପ୍ରହାରି ମୋହନ୍ତି ଯେ ଗୋପନାରୀ
ଶ୍ରୀବୃନ୍ଦାକାନନେ ନିତ୍ୟ ହୋଇଣ ସ୍ଥିତ,
ପଥୁକି ମୋ’ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ’ ସେ ଜଗନ୍ନାଥେ । (୨)

ଯେହୁ ମହୋଦଧିତୀରେ ସ୍ୱର୍ଣ୍ଣକାନ୍ତି ନୀଳାଦ୍ରିରେ
ସ୍ଥିତ ମହାମନ୍ଦିରରେ ନିତ୍ୟ ରାଜିତ,
ସାଦରେ ସଙ୍ଗତେ ଘେନି ବଳଭଦ୍ର ଭଦ୍ରା ବେନି
ଦେବଙ୍କୁ ପୟରସେବା କରିଣ ଦତ୍ତ,
ପଥୁକି ମୋ’ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ’ ସେ ଜଗନ୍ନାଥେ । (୩)

ଯେହୁ କୃପା–ପାରାବାର ନବନୀରଦ ରୁଚିର
ରମାବାଣୀ–ବିନୋଦନ କମଳାନନ,
ଲକ୍ଷକୋଟି ଦେବରାଜ ଶିରେ ଯା’ଙ୍କ ପଦରଜ
ବହନ୍ତି ବେଦାନ୍ତ ଯା’ଙ୍କୁ କରେ ବଖାଣ,
ପଥୁକି ମୋ’ ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ’ ସେ ଜଗନ୍ନାଥେ । (୪)

ଯେ ପ୍ରଭୁ କରୁଣାସିନ୍ଧୁ ଅଖିଳ ଜଗତବନ୍ଧୁ
ସିନ୍ଧୁ–ସୁତା–ଚିରି–ଇନ୍ଦୁ ଗମନ୍ତେ ରଥେ,
ବିପ୍ରଗଣ ପଥେ ମିଳି ଗାଆନ୍ତେ ସ୍ତୁତିଆବଳୀ
ଘେନା ଯେ କରନ୍ତି ସ୍ତୁତିକଥା ସୁଚିତ୍ତେ,
ପଥୁକି ମୋ’ ନୟନପଥେ,
ହୁଅନ୍ତୁ ପ୍ରାଣସ୍ୱାମୀ ମୋ’ ସେ ଜଗନ୍ନାଥେ । (୫)

ବିରଞ୍ଚି ଶିରଭୂଷଣ ପଦ୍ମପଳାଶଲୋଚନ
ନିଳାଦ୍ରି ବିହାରୀ ଯେ ଅନନ୍ତ–ମସ୍ତକେ,
ପୟର ଥାପି ଆସୀନ ସଦା ରସାନନ୍ଦ ଘନ
ମଗନ ଶ୍ରୀରାଧାଅଙ୍ଗ–ଆଶ୍ଳେଷ ସୁଖେ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୬)

ନମାଗଇଁ ରାଜ୍ୟସୁଖ ନ ମାଗେଁ ମଣି ମାଣିକ୍ୟ
ନମାଗେଁ ନୟନ ନିଧି ବର କାମିନୀ,
ଯାହାଙ୍କ ଚରିତାବଳୀ ଗାଆନ୍ତି ଚନ୍ଦ୍ର ମଉଳି
ପରାଣ ଲୋଡ଼େ ମୋ' ତାଙ୍କୁ ଦିନଯାମିନୀ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୭)

ଅସାର ସଂସାର ବନ୍ଧ ଛେଦ ମୋ' ଖରେ ମୁକୁନ୍ଦ
ଅଥଳ ପାପପୟୋଧି ଦିଅ ଶୁଖାଇ,
ହେ ନାଥ ! ଦୀନ ଅନାଥ ପାଇଁ ଶାଶ୍ୱତ ନିଶ୍ଚିତ
ପ୍ରେମପତ୍ର କ୍ଷେତ୍ରେ ଏଥି ଅଛ ରୁହାଇ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୮)

ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପ୍ରଯତଃ ଶୁଚିଃ
ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁ ଲୋକଂ ସ ଗଚ୍ଛତି,
ପ୍ରାକୃତ ପଦେ ପୟାର ରଚିଲା ବିଚ୍ଛନ୍ଦ ଛାର
ସ୍ଥିରମନେ ଶୁଚିମନ୍ତ ହୋଇ ଗାଇଲେ,
ପାତକି–ପାତକମାନ ହୁଅଇ ହେଲେ ଦହନ
ଅନ୍ତେ ବିଷ୍ଣୁ ଲୋକେ ଗତି ହୁଏ ତା' ଭଲେ,
ଜୟ ଜୟ ଶ୍ରୀଜଗନ୍ନାଥ
ନିତ୍ୟକାଳ ପଦେ ତୁମ୍ଭ ଲୋଟୁ ମୋ' ମାଥ । (୯)

**(ଓଡ଼ିଆ ରୂପାନ୍ତର : ବିଚ୍ଛନ୍ଦ ଚରଣ ପଟ୍ଟନାୟକ)**

**(ସଂସ୍କୃତରେ ଲିଖିତ 'ଜଗନ୍ନାଥାଷ୍ଟକମ୍'କୁ ଶ୍ରୀଚୈତନ୍ୟ ମହାପ୍ରଭୁ ରଚନା କରିଥାନ୍ତୁ କି ଶ୍ରୀଶଙ୍କରାଚାର୍ଯ୍ୟ ରଚନା କରିଥାନ୍ତୁ, ତାହାର ଓଡ଼ିଆ ଅନୁବାଦ କରିଥିଲେ କବି ଓ ଅନୁବାଦକ ସ୍ୱର୍ଗୀୟ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । କଟକରେ ୧୯୪୪ରେ ସେ 'କଳିଙ୍ଗ ଭାରତୀ'ର ପ୍ରତିଷ୍ଠାତା ଓ ଭଂଜ ସାହିତ୍ୟର ପ୍ରସାରକ ଭାବେ ପରିଚିତ ଥିଲେ । ୧୯୪୨ରେ ସେ ଓଡ଼ିଶା ସରକାରଙ୍କଦ୍ୱାରା ଅନୁବାଦକ ଭାବେ ନିଯୁକ୍ତି ପାଇଥିଲେ । ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକସମ୍ପର୍କ ବିଭାଗରେ 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶା ରିଭ୍ୟୁ'ର ସଂପାଦନା କାର୍ଯ୍ୟ ମଧ୍ୟ କରିଥିଲେ । ତାଙ୍କର ସୁପୁତ୍ର ଶ୍ରୀପୁରୁଷୋତ୍ତମ ପଟ୍ଟନାୟକଙ୍କ ସୌଜନ୍ୟରୁ ଏହା ପ୍ରାପ୍ତ ।)**

# ଓଡ଼ିଶାର ରୂପରେଖ

ସଂସ୍କୃତି ଓ ପ୍ରଥା, ଧର୍ମଧାରା ଓ ପରମ୍ପରା, ଭାଷା ଓ ସାହିତ୍ୟ, କଳା ଓ ସ୍ଥାପତ୍ୟ, ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ବନ୍ୟପ୍ରାଣୀଙ୍କ ଗନ୍ତାଘର ଭାବରେ ସୁବିଦିତ ଓଡ଼ିଶା ହେଉଛି ଭାରତର ଅତ୍ୟଧିକ ଆକର୍ଷଣୀୟ କ୍ଷେତ୍ର । କାରୁକାର୍ଯ୍ୟମୟ ମନ୍ଦିରମାଳା, ଐତିହାସିକ କୀର୍ତ୍ତିରାଜି, ପର୍ଯ୍ୟାପ୍ତ ସବୁଜିମା, ମନୋରମ ବେଳାଭୂମି, ସର୍ପିଳ ନଦନଦୀ, ବିଶାଳ ଜଳପ୍ରପାତ, ପୂର୍ବଘାଟର ଅରଣ୍ୟାଚ୍ଛାଦିତ ନୀଳ ପର୍ବତମାଳା ଓ ବନ୍ୟପ୍ରାଣୀ ଓଡ଼ିଶାକୁ ଏକ ଅବିସ୍ମରଣୀୟ ଗନ୍ତବ୍ୟସ୍ଥଳ ଭାବରେ ପ୍ରତିଷ୍ଠିତ କରିଛନ୍ତି ।

ପର୍ଯ୍ୟଟକ ଓ ଆଗନ୍ତୁକମାନେ ଓଡ଼ିଶାର ଏହି ପ୍ରାଚୁର୍ଯ୍ୟକୁ ଅନୁଭବ କରନ୍ତି ଓ ବାରମ୍ବାର ଆସିବାକୁ ଇଚ୍ଛା କରିଥାନ୍ତି । ପରିଚର୍ଯ୍ୟା ଓ ଆତିଥ୍ୟର ମହାନ୍ ପରମ୍ପରା ସହିତ ତାଳ ମିଳାଇ ଓଡ଼ିଶା ଅତ୍ୟାଧୁନିକ ସୁବିଧାସୁଯୋଗ ପ୍ରଦାନ କରିଥାଏ । ବିଶ୍ୱର ଅନ୍ୟତମ ପୁରାତନ ସଭ୍ୟତାକୁ ସାଂସ୍କୃତିକ ଯାତ୍ରାର ପ୍ରମାଣ ବହନକରି ଓଡ଼ିଶା ବିସ୍ମୟକର ଉପଲବ୍ଧିର ପ୍ରତିଶ୍ରୁତି ପ୍ରଦାନ କରେ ।

### ଓଡ଼ିଶାର ଲୋକେ

ଭାରତର ସମୁଦାୟ ଜନସଂଖ୍ୟାର ୩.୪୭ ପ୍ରତିଶତ ଓଡ଼ିଶାରେ ରୁହନ୍ତି । ପ୍ରତି ବର୍ଗ କିଲୋମିଟରରେ ୨୬୯ଜଣ ଲୋକ ଓଡ଼ିଶାରେ ବାସ କରୁଥିବାବେଳେ ଜାତୀୟ ହାର ପ୍ରତି ବର୍ଗ କିଲୋମିଟର ପ୍ରତି ୩୮୨ । ଭାରତରେ ପ୍ରତି ୧୦୦୦ ପୁରୁଷରେ ୯୪୦ ମହିଳା ରହୁଥିବା ବେଳେ ଏହି ଅନୁପାତ ଓଡ଼ିଶାରେ ଉତ୍ସାହଜନକ ଏବଂ ଏଠାରେ ପ୍ରତି ୧୦୦୦ ପୁରୁଷରେ ୯୭୮ଜଣ ମହିଳା ରୁହନ୍ତି । ଅବଶ୍ୟ ସହରାଞ୍ଚଳରେ ପ୍ରତି ୧୦୦୦ ପୁରୁଷରେ ମହିଳାଙ୍କ ସଂଖ୍ୟା ୯୩୪ ଓ ଗ୍ରାମାଞ୍ଚଳରେ ତାହା ୯୮୮ । ୧୦ବର୍ଷିଆ ଜନଗଣନା ଅନୁସାରେ ରାଜ୍ୟର ଜନସଂଖ୍ୟା ୨୦୦୧ରେ ୧୬.୨୫ ପ୍ରତିଶତ ଓ ୨୦୧୧ରେ ୧୩.୯୭ ପ୍ରତିଶତ ବୃଦ୍ଧି ହୋଇଛି ।

### ସାକ୍ଷରତା

ଓଡ଼ିଶାରେ ସାକ୍ଷରତା ହାର ୨୦୦୧ର ୬୩.୦୮ ପ୍ରତିଶତରୁ ୨୦୧୧ରେ ୭୩.୪୫%କୁ ବୃଦ୍ଧି ପାଇଛି । ରାଜ୍ୟରେ ମହିଳାଙ୍କ ସାକ୍ଷରତା ହାର ୬୪.୩୬% ଥିଲାବେଳେ ପୁରୁଷମାନଙ୍କ ମଧ୍ୟରେ ସାକ୍ଷରତା ହାର ୮୨.୪୦% ଅଟେ ।

### ଭାଷା

ଏହା ପ୍ରମାଣିତ ଯେ ଓଡ଼ିଆ ଭାଷା ଦୀର୍ଘ ୨୫୦୦ ବର୍ଷ ପୁରୁଣା । ଭାରତର ଅନ୍ୟତମ ପୁରୁଣା ଭାଷା ରୂପେ ଓଡ଼ିଆ ଭାଷା ସଂସ୍କୃତରୁ ଉତ୍ପତ୍ତି ହୋଇଛି। ଓଡ଼ିଶାରେ ପ୍ରାୟ ୮୪% ଲୋକ ଓଡ଼ିଆ ଭାଷାରେ କଥା ହୁଅନ୍ତି । ଓଡ଼ିଆ ଭାରତବର୍ଷର ଶାସ୍ତ୍ରୀୟ ଭାଷା ରୂପେ ମାନ୍ୟତା ଲାଭ କରିଛି। ଓଡ଼ିଆ ରାଜ୍ୟର ସରକାରୀ ଭାଷା ଅଟେ । ଓଡ଼ିଆ ବ୍ୟତୀତ– ହିନ୍ଦୀ, ଇଂରାଜୀ, ଉର୍ଦ୍ଦୁ, ବଙ୍ଗଳା ଭାଷା ଓଡ଼ିଶାରେ ଅନେକ ଲୋକ ବୁଝନ୍ତି ଓ କହିବାର କ୍ଷମତା ରଖନ୍ତି । ଏହି ଶାନ୍ତିପ୍ରିୟ ରାଜ୍ୟରେ ଭାଷାକୁ ନେଇ କୌଣସି ମତାନ୍ତର ଦେଖାଯାଏ ନାହିଁ ।

### ଓରିଶାରୁ ଓଡ଼ିଶା, ଓରିଆରୁ ଓଡ଼ିଆ

ଐତିହାସିକମାନଙ୍କ ମତରେ ଓଡ଼ିଶା ନାମ 'ଓଡ୍ର' ବା 'ଉଡ୍ର' ଶବ୍ଦରୁ ଆନୀତ । ସେତେବେଳର ଉଡ୍ରଦେଶ ଯାହା ସବୁକ୍ଷେତ୍ରରେ ପ୍ରଗତି କରୁଥିଲା ସମୟାନୁକ୍ରମେ ବ୍ରିଟିଶ ଶାସନାଭୁକ୍ତ ହେଲା ଏବଂ ଏହାର ନାମ 'ଓରିଶା' କରାଗଲା । ଏହା କହିବା ନିଷ୍ପ୍ରୟୋଜନ ଯେ ଏହି ରାଜ୍ୟର ଲୋକେ ଓଡ଼ିଆ ଭାଷାରେ ଲେଖିବା ଓ ଓଡ଼ିଶା ଶବ୍ଦର ଉଚ୍ଚାରଣ ସହ ଆନ୍ତରିକ ଭାବେ ଜଡିତ । ପ୍ରତି ରାଜ୍ୟର ନାଁ ଓ ଭାଷା ସହ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଉତ୍ତୁଙ୍ଗ ଇତିହାସ ଜଡିତ ହୋଇଥାଏ, ଓଡ଼ିଶା ତା'ଠୁ ଭିନ୍ନ ନୁହଁ । ସୁବିଧା ପାଇଁ ତତ୍କାଳୀନ ବ୍ରିଟିଶ ସରକାର ଓଡ଼ିଶାର ନାଁ ଓ ଭାଷାରେ ପରିବର୍ତ୍ତନ ଆଣିଥିଲେ । ସେହି ସମୟରେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ବିଚ୍ଛୁରିତ ହୋଇ ରହିଥିଲା । ଏହି ମାଟିର କେତେଜଣ ସୁଯୋଗ୍ୟ ସନ୍ତାନ ବିଚ୍ଛୁରିତ ଅଞ୍ଚଳଗୁଡ଼ିକୁ ଭାଷାଭିତ୍ତିରେ ଏକତ୍ରିତ କରି ଏକ ରାଜ୍ୟ ଗଢ଼ିବାର ଆପ୍ରାଣ ପ୍ରୟାସ ଆରମ୍ଭ କଲେ । ସେମାନଙ୍କର ଅହୋରାତ୍ର ଉଦ୍ୟମ ଫଳରେ ପରିଶେଷରେ ୧୯୩୬ ମସିହା ଅପ୍ରେଲ ୧ ତାରିଖରେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ପାଇଲା । ଏହା ସହ ପ୍ରତିଟି ଓଡ଼ିଆ ଏକ ସ୍ୱତନ୍ତ୍ର ପରିଚୟ ପାଇଲେ । ଏହା ଭାରତର ପ୍ରଥମ ରାଜ୍ୟ, ଯାହାକି ସମ୍ପୂର୍ଣ୍ଣ ଭାଷାଭିତ୍ତିରେ ଗଠିତ । କିନ୍ତୁ ଏହାର ନାଁ ସେହି 'ଓରିଶା' ରହିଲା । ତାହାକୁ ନେଇ ଲୋକେ ସନ୍ତୁଷ୍ଟ ହୋଇପାରିଲେ ନାହିଁ ।

ବିଡମ୍ବନାର ବିଷୟ 'ଓଡ଼ିଶା' ଓ ଏହାର ଭାଷା ସହ ପ୍ରତିଟି ଓଡ଼ିଆର ଭାବାବେଗ ଜଡିତ ଥିବା ସତ୍ତ୍ୱେ ସମୟ ତା' ରାସ୍ତାରେ ଗଡିଚାଲିଲା । ନବୀନ ପଟ୍ଟନାୟକଙ୍କ ସରକାର ଏହି ଭାବାବେଗକୁ ସମ୍ମାନ ଜଣାଇବାପୂର୍ବକ ନାମ ପରିବର୍ତ୍ତନ ପାଇଁ ଏକ ସର୍ବଦଳୀୟ ବୈଠକ ଡକାଇଲେ । ସେଠାରେ 'ଓରିଶାକୁ ଓଡ଼ିଶା' ଓ 'ଓରିୟାକୁ ଓଡ଼ିଆ'ରେ ପରିବର୍ତ୍ତନ କରାଯିବାର ନିଷ୍ପତ୍ତି ନିଆଗଲା । ଓଡ଼ିଶା ବିଧାନସଭାରେ ଏ ନେଇ ବିସ୍ତୃତ ଆଲୋଚନା ହେବା ପରେ ଏକ ଐତିହାସିକ ସଂକଳ୍ପ ଏ ସମ୍ବନ୍ଧରେ ୨୦୦୮ ମସିହାରେ ମଞ୍ଜୁର କରାଗଲା । ଏହି ଆବେଦନ ୨୦୧୦ ମସିହାରେ ଭାରତ ସଂସଦର ଦୁଇ ଗୃହରେ ଗୃହୀତ ହେଲା । ୨୦୧୧ ମସିହା ମାର୍ଚ୍ଚ ୨୪ ତାରିଖ ଦିନ ରାଜ୍ୟସଭା 'ଓରିଶା'କୁ 'ଓଡ଼ିଶା' କରିବା ପାଇଁ ବିଲ୍ ଗୃହୀତ କରିବା ସହ ଭାଷାକୁ 'ଓରିଆ'ରୁ 'ଓଡ଼ିଆ' ପରିବର୍ତ୍ତନ ହେଲା । ୨୦୧୧ ମସିହା ନଭେମ୍ବର ୧ ତାରିଖ ଦିନ ଭାରତ ସରକାର ଓରିଶା (ନାଁ ପରିବର୍ତ୍ତନ) ବିଲ୍, ୨୦୧୦ର ଗେଜେଟ୍ ବିଜ୍ଞପ୍ତି ସହ ଆସିଲା ଏବଂ ୧ ନଭେମ୍ବର ୨୦୧୧ରୁ ଏହି ନାଁ ପରିବର୍ତ୍ତନ ହେଲା ବୋଲି ସମ୍ବିଧାନରେ ପ୍ରଣୀତ ହେଲା । ମାନ୍ୟବର ମୁଖ୍ୟମନ୍ତ୍ରୀ ଏଥିପାଇଁ ଭାରତର ମାନ୍ୟବର ରାଷ୍ଟ୍ରପତିଙ୍କୁ ଧନ୍ୟବାଦ ଦେବା ସହ ରାଜ୍ୟବାସୀଙ୍କୁ ଏହି ଐତିହାସିକ ସଫଳତା ପାଇଁ ଶୁଭେଚ୍ଛା ଜଣାଇଥିଲେ । ଓଡ଼ିଆ ଲୋକଙ୍କ ଆଗ୍ରହ ଓ ମୂଲ୍ୟବୋଧକୁ ଆଖିଆଗକୁ ଆଣିଲେ ଏହା ନିଶ୍ଚୟ ଭାବରେ ଏକ ଅବିସ୍ମରଣୀୟ ମୁହୂର୍ତ୍ତ । ଶେଷରେ ଓଡ଼ିଶାବାସୀ ନିଜର ସଠିକ ପରିଚୟ ପାଇଲେ । ଏହି ସମୟଖଣ୍ଡଟି ଓଡ଼ିଶା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । 'ଓରିଶାରୁ ଓଡ଼ିଶା, ଓରିଆ'ରୁ ଓଡ଼ିଆ ଏକ ସ୍ମରଣୀୟ ଐତିହାସିକ ଯାତ୍ରା । ଏହା ସହିତ ଓଡ଼ିଶାବାସୀଙ୍କ ଭାବଗତ ଓ ଆନ୍ତରିକ ନିବିଡ଼ତା ଜଡ଼ିତ ।



# ଓଡ଼ିଶାର ଭୂଗୋଳ

ଓଡ଼ିଶା ଭାରତର ପୂର୍ବ ଉପକୂଳରେ ଅବସ୍ଥିତ ଏକ ତଟବର୍ତ୍ତୀ ରାଜ୍ୟ । ଏହା ୧୭°.୪୯'–୨୨°.୩୪' ଉତ୍ତର ଅକ୍ଷାଂଶ ଓ ୮୧°.୨୭'–୮୭°.୨୯' ପୂର୍ବ ଦ୍ରାଘିମା ରେଖା ମଧ୍ୟରେ ଅବସ୍ଥିତ । ଏହାର ଉତ୍ତରରେ ଝାଡ଼ଖଣ୍ଡ ଓ ପଶ୍ଚିମବଙ୍ଗ, ଦକ୍ଷିଣରେ ଆନ୍ଧ୍ରପ୍ରଦେଶ, ପଶ୍ଚିମରେ ଛତିଶଗଡ ଓ ପୂର୍ବରେ ବଙ୍ଗୋପସାଗର ଅବସ୍ଥିତ । ରାଜ୍ୟର ପଶ୍ଚିମ ଓ ଉତ୍ତରାଂଶ ଛୋଟନାଗପୁର ମାଳଭୂମିର ଅଂଶବିଶେଷ । ଓଡ଼ିଶାର ଭୌଗୋଳିକ କ୍ଷେତ୍ରଫଳ ୧,୫୫, ୭୦୭ ବର୍ଗ କି.ମି. । ଏହି କ୍ଷେତ୍ରର ଆୟତନ ୧୯୪୯ ମସିହା ଜାନୁଆରୀ ୧ ତାରିଖ ଦିନ ନିର୍ଣ୍ଣୟ କରାଯାଇଥିଲା । ଏହି ଦିନ ମୟୂରଭଞ୍ଜ ଶେଷ ରାଜ୍ୟଭାବେ ଓଡ଼ିଶା ସାଙ୍ଗରେ ମିଶିଥିଲା ।

ଆକୃତି ବିଜ୍ଞାନ ଓଡ଼ିଶାକୁ ପାଞ୍ଚ ଭାଗରେ ବିଭକ୍ତ କରାଏ – ତଟୀୟ ସମତଳ ଅଞ୍ଚଳ, ମଧ୍ୟ ପର୍ବତାଞ୍ଚଳ, ଗଡାଣିଆ ଉଚ୍ଚଭୂମି, ନଦୀ ଉପତ୍ୟକା ଏବଂ ମାଳଭୂମି ।

ଓଡ଼ିଶାର ତଟୀୟ ସମତଳ ଅଞ୍ଚଳ ଉତ୍ତରରେ ସୁବର୍ଣ୍ଣରେଖାଠାରୁ ଦକ୍ଷିଣରେ ଋଷିକୁଲ୍ୟା ଯାଏଁ ବ୍ୟାପ୍ତ । ଉତ୍ତରରେ ଏହା ସଂକୀର୍ଣ୍ଣ, ମଧ୍ୟଭାଗରେ ଚଉଡା, ଚିଲିକା ହ୍ରଦର ତଟଠାରେ ଏହା ସବୁଠୁ ସଂକୀର୍ଣ୍ଣ ଏବଂ ଦକ୍ଷିଣରେ ଏହା ବିସ୍ତୀର୍ଣ୍ଣ ।

ଓଡ଼ିଶାର ତଟୀୟ ସମତଳାଞ୍ଚଳ ଛଅଟି ନଦୀର ଉପହାର ଅଟେ । ଉତ୍ତରରୁ ଦକ୍ଷିଣକୁ ସେହି ନଦୀଗୁଡିକ ହେଲେ ସୁବର୍ଣ୍ଣରେଖା, ବୁଢାବଳଙ୍ଗ, ବୈତରଣୀ, ବ୍ରାହ୍ମଣୀ, ମହାନଦୀ ଓ ଋଷିକୁଲ୍ୟା ।

ଓଡ଼ିଶାର ପାର୍ବତ୍ୟ କ୍ଷେତ୍ର ରାଜ୍ୟ କ୍ଷେତ୍ରଫଳର ପାଖାପାଖି ତିନି–ଚତୁର୍ଥାଂଶ ଅଟେ । ଏଠି ଗଭୀର ଓ ବ୍ୟାପକ ଉପତ୍ୟକାଗୁଡିକ ବୈତରଣୀ, ବ୍ରାହ୍ମଣୀ, ମହାନଦୀ, ଋଷିକୁଲ୍ୟା, ବଂଶଧାରା ଏବଂ ନାଗାବଳୀ ନଦୀମାନଙ୍କ ଦ୍ୱାରା କଟା ହୋଇ ଭିନ୍ନ ହୋଇଛନ୍ତି । ଏହି ଉପତ୍ୟକାଗୁଡିକ ଉର୍ବର ଓ ଜନସଂଖ୍ୟାବହୁଳ । ଆକୃତି ବିଜ୍ଞାନ ଏ କ୍ଷେତ୍ରକୁ ନିମ୍ନମତେ ବିଭାଜନ କରିଛି । ଯଥା : (କ) ସିମୁଳିଆ ଓ ମେଘାସନ ପର୍ବତମାଳା (ଖ) ବୈତରଣୀ ଓ ବ୍ରାହ୍ମଣୀ ଅବବାହିକା (ଗ) ବ୍ରାହ୍ମଣୀ ଓ ମହାନଦୀ ଅବବାହିକା (ଘ) ଋଷିକୁଲ୍ୟା ଓ ବଂଶଧାରା ଅବବାହିକା । କ୍ଷେତ୍ରର ଉତ୍‌ଥାନ ୬୧୦ ମି.ରୁ ୧୦୬୮ ମି. ପର୍ଯ୍ୟନ୍ତ । ଗଡାଣିଆ ଉଚ୍ଚଭୂମି ମାଳଭୂମିଠାରୁ କମ୍ ଉଚ୍ଚ । ଏଥିରେ ୧୫୩ମି.ଠାରୁ ୩୦୫ ମି. ମଧ୍ୟରେ ତଫାତ୍ ଚିରସ୍ରୋତା ନଦୀଗୁଡିକ ଯୋଗୁଁ ଏଭଳି ଭୂଖଣ୍ଡର ସୃଷ୍ଟି । ଏହି ମାଟି ପୋଷକତତ୍ତ୍ୱରେ ଭରପୂର ହୋଇଥାଏ । ଉପର ବ୍ରାହ୍ମଣୀର କୋଏଲ – ଶଙ୍ଖ ଅବବାହିକା, ମଧ୍ୟ ମହାନଦୀର ସୁକତେଲ ଓ ତେଲ ଅବବାହିକା ଓ ସବାରୀ ବେସିନଠାରେ ଏଭଳି ଅବବାହିକା ଦେଖାଯାଏ । ଗଡାଣିଆ ଉଚ୍ଚଭୂମିକୁ ନିମ୍ନୋକ୍ତଭାବେ ଭାଗ କରାଯାଇପାରେ – ରାଜଗାଙ୍ଗପୁର ଉଚ୍ଚଭୂମି, ଝାରସୁଗୁଡା ଉଚ୍ଚଭୂମି, ବରଗଡ ଉଚ୍ଚଭୂମି, ବଲାଙ୍ଗୀର–ଟିଟିଲାଗଡ–ପାଟନାଗଡ ଉଚ୍ଚଭୂମି, ଭବାନୀପାଟଣା ଉଚ୍ଚଭୂମି, ମାଲକାନଗିରି ଉଚ୍ଚଭୂମି ଓ ରାଇରଙ୍ଗପୁର ଉଚ୍ଚଭୂମି ।

ନଦୀ ଉପତ୍ୟକାଗୁଡିକ ନଦୀ ପ୍ରବାହ ଦ୍ୱାରା ସୃଷ୍ଟି ହୋଇଥାନ୍ତି । ସେଗୁଡିକ ଉର୍ବର । ଓଡ଼ିଶାର ମୁଖ୍ୟନଦୀ ଉପତ୍ୟକାଗୁଡିକ ବ୍ରାହ୍ମଣୀ, ମହାନଦୀ ଓ ବଂଶଧାରା ନଦୀ ଦ୍ୱାରା ସୃଷ୍ଟି ହୋଇଛି । ତୀବ୍ରତା ନଥିବା ମାଳଭୂମି (୩୦୫ମି.–୬୧୦ମି.) ଗୁଡିକରେ ଅନେକ ବୈଶିଷ୍ଟ୍ୟ ଦେଖାଯାଏ । ଏହି ଉପତ୍ୟକାଗୁଡିକ ମୁଖ୍ୟତଃ କେନ୍ଦୁଝର ଓ କୋରାପୁଟ ଜିଲ୍ଲାର ଉପର ବୈତରଣୀ ଓ ସବାରୀ ଅବବାହିକା ମଧ୍ୟରେ ହିଁ ଦେଖାଯାଏ । ଏହି ଉପତ୍ୟକାକୁ ପାନ୍‌ପୋଷ କେନ୍ଦୁଝର–ପାଲଲହଡା ମାଳଭୂମି ଓ ନବରଙ୍ଗପୁର–ଜୟପୁର ମାଳଭୂମିରେ ବିଭକ୍ତ କରାଯାଇପାରେ ।

# ବୃକ୍ଷଲତା ଓ ଜୀବଜନ୍ତୁ

### ଜଙ୍ଗଲ

ଏକାଦଶତମ ରାଜ୍ୟ ଜଙ୍ଗଲ ରିପୋର୍ଟ ୨୦୧୧ ଅନୁସାରେ, ଓଡ଼ିଶାରେ ୫୮,୧୩୬ ବର୍ଗ କି.ମି ଅଞ୍ଚଳ ଜଙ୍ଗଲ ଆଚ୍ଛାଦିତ । ଏହା ମଧ୍ୟରୁ ୨୬,୩୨୯ ବର୍ଗ କି.ମି. (୪୫.୨%) ସଂରକ୍ଷିତ ଜଙ୍ଗଲ, ୧୫,୫୨୫ ବର୍ଗ କି.ମି. (୨୬.୭୦%) ସୁରକ୍ଷିତ ଜଙ୍ଗଲ ଏବଂ ୧୬,୨୮୨ ବର୍ଗ କି.ମି. (୨୮.୧%) ଅନାବନା ଜଙ୍ଗଲ । ଓଡ଼ିଶାର ମୋଟ ଭୌଗୋଳିକ ଅଞ୍ଚଳରେ ୩୭.୩୪% ବନାଞ୍ଚଳ ।



୨୦୦୯ ମସିହାରେ ୪୮.୯୦୩ ବର୍ଗ କି.ମି. ଅଞ୍ଚଳ ଜଙ୍ଗଲ ଆଚ୍ଛାଦିତ ଥିଲା, ଯାହାକି ରାଜ୍ୟ ଭୌଗୋଳିକ ଅଞ୍ଚଳର ୩୧.୪୧% । ସେହିପରି ୨୦୦୭ ମସିହାରେ ୪୮,୮୫୫ ବର୍ଗ କି.ମି. ଅଞ୍ଚଳରେ ଜଙ୍ଗଲ ଥିଲା । ୨୦୦୭ରୁ ୨୦୦୯ ମଧ୍ୟରେ ୪୮ ବର୍ଗ କି.ମି.ର ନୂତନ ଜଙ୍ଗଲ ସୃଷ୍ଟି କରାଯାଇପାରିଛି । ବନ ସଂରକ୍ଷଣ ପଦକ୍ଷେପ ଯୋଗୁଁ ଏହା ସମ୍ଭବ ହୋଇପାରିଛି । ବନବିଭାଗ ଜଙ୍ଗଲ ସଂରକ୍ଷଣ ଓ ନୂତନ ବନାଞ୍ଚଳ ସୃଷ୍ଟି ଦିଗରେ ସର୍ବଦା ତତ୍ପର । ଅବସ୍ଥିତି, ବୃଷ୍ଟିପାତ ଓ ବନସ୍ପତି ଆଧାରରେ ଓଡ଼ିଶାର ଜଙ୍ଗଲକୁ ନିମ୍ନମତେ ଭାଗ କରାଯାଇପାରେ :

### (କ) ଉତ୍ତର କ୍ରାନ୍ତୀୟ ଅର୍ଦ୍ଧ–ଚିରହରିତ୍ ଜଙ୍ଗଲ

ଏହି ପ୍ରକାର ଜଙ୍ଗଲ ନିମ୍ନ ପର୍ବତାଞ୍ଚଳ ଓ ୬୦୦ମିଟର ଉଚ୍ଚ ଉପତ୍ୟକାରେ ଦେଖାଯାଏ । ଓଡ଼ିଶାର ମୟୂରଭଞ୍ଜ, ଢେଙ୍କାନାଳ, ଆଠଗଡ, ପୁରୀ, ନୟାଗଡ, ପାରଳାଖେମୁଣ୍ଡି, କୋରାପୁଟ ଓ କଳାହାଣ୍ଡି ଜିଲ୍ଲାରେ ଏହି ପ୍ରକାର ଜଙ୍ଗଲ ଦେଖାଯାଏ । ଏହି ଜଙ୍ଗଲରେ ଉଚ୍ଚ ଗଛଗୁଡିକ ଅଳ୍ପ ସମୟ ପାଇଁ ପତ୍ରଝଡା ଦିଅନ୍ତି କିନ୍ତୁ ଅଳ୍ପ ଉଚ୍ଚ ଗଛଗୁଡିକ ଚିରହରିତ୍ ଅଟନ୍ତି । ଏଠି ଅର୍ଜୁନ, ଆମ୍ବ, କେନ୍ଦୁ, ଚମ୍ପକ, ରାଇ, ମଣ୍ଡା ଓ ନାଗେଶ୍ୱର ଇତ୍ୟାଦି ଗଛ ଦେଖାଯାଏ ।

### (ଖ) ମୌସୁମୀ ଜଙ୍ଗଲ

ଏହି ଜଙ୍ଗଲ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାର ନିମ୍ନାଞ୍ଚଳ ଏବଂ ମଧ୍ୟପ୍ରଦେଶ ଓ ଆନ୍ଧ୍ରପ୍ରଦେଶ ରାଜ୍ୟକୁ ଲାଗିଥିବା ଜିଲ୍ଲାମାନଙ୍କରେ ଦେଖାଯାଏ । ମୁଖ୍ୟତଃ ଶାଳ, ଅସନ, ପିଆଶାଳ, କୁରୁମ, କଙ୍ଗ୍ରା, ଧଉରା ଓ ଡବା ବାଉଁଶ ଗଛ ଏହି ଜଙ୍ଗଲରେ ବଢନ୍ତି ।

### (ଗ) କ୍ରାନ୍ତୀୟ ଶୁଷ୍କ ପର୍ଣ୍ଣମୋଚୀ ଜଙ୍ଗଲ

ଏହି ଜଙ୍ଗଲ ବଲାଙ୍ଗିର, କଳାହାଣ୍ଡି, ସମ୍ବଲପୁର, ଖରିଆର, ଦେବଗଡ ଏବଂ ଗୋବିନ୍ଦପୁର ଅଞ୍ଚଳରେ ଦେଖାଯାଏ । ଶାଗୁଆନ ଓ ସାଲିଆ ବାଉଁଶ ଏହି ଅଞ୍ଚଳମାନଙ୍କରେ ମୁଖ୍ୟତଃ ବଢିଥାନ୍ତି ।

### (ଘ) ହେନ୍ତାଳବଣ

ଏହି ବିଚ୍ଛୁରିତ ଜଙ୍ଗଲ ସମୁଦ୍ରକୂଳ ଯଥା – ଭିତରକନିକା ଓ ମହାନଦୀ ମୁହାଣଠାରେ ହିଁ ସୀମିତ । ଏ ମାଟିରେ କରିକା, ସୁନ୍ଦର ରାଇ, ଗୁଆ ଆଦି ଗଛ ବଢିଥାନ୍ତି ।

ଜଙ୍ଗଲରୁ ଲାଖ, ଝୁଣା, ସବାଇ ଘାସ, ଟସର, ମହୁ ଆଦି ମିଳିଥାଏ । ଶାଗୁଆନ, ପିଆଶାଳ, କସି, କୁର୍ମ, ଅର୍ଜୁନ, ଗମ୍ଭାରୀ, ଗିରିଙ୍ଗା ଇତ୍ୟାଦି ଗଛରୁ ବିଭିନ୍ନ ପ୍ରକାର ଘର ଉପକରଣ ଯଥା– ଖଟ, ଚୌକି ଆଦି ତିଆରି ହୋଇଥାଏ । ସେହିପରି ଶାଳ, ଧଉରା, ବନ୍ଧନ, କଙ୍ଗ୍ରା ଗଛଗୁଡିକ ଶକ୍ତ ହୋଇଥିବାରୁ ଘର ତିଆରି ବେଳେ ବ୍ୟବହୃତ ହୋଇଥାନ୍ତି । କେନ୍ଦୁପତ୍ରରୁ ବିଡି ତିଆରି ହୋଇଥାଏ, ତେଣୁ ଏହାର ଚାହିଦା ଢେର ଅଧିକ । ବାଉଁଶଗଛ ଲୋକଙ୍କ ଦୈନନ୍ଦିନ ଜୀବନରେ ବହୁଳ ଭାବରେ ବ୍ୟବହୃତ ହେବା ସଙ୍ଗେ ସଙ୍ଗେ କାଗଜ ଶିଳ୍ପରେ କଞ୍ଚାମାଲ ରୂପେ ବ୍ୟବହୃତ ହୋଇଥାଏ । ସବାଇଘାସରୁ ଦଉଡି ତିଆରି ହୁଏ । ବଲାଙ୍ଗୀର ଗନ୍ଧମାର୍ଦ୍ଦନ ପର୍ବତରୁ ବିଭିନ୍ନ ରକମର ଔଷଧୀୟ ବୃକ୍ଷ ମିଳିଥାଏ ।

### ବନ୍ୟପ୍ରାଣୀ

ବାଘ ପରିଯୋଜନା, ଶିମିଳିପାଳ ଅଧୀନରେ ବାଘମାନଙ୍କର ରହିବା ଓ ସଂରକ୍ଷଣ ପାଇଁ ଏକ ଉନ୍ନତ ପ୍ରାକୃତିକ ବାସସ୍ଥାନ ୧୯୭୩ ଜାତୀୟ ଯୋଜନାରେ ଆରମ୍ଭ କରାଯାଇଥିଲା । ଆରମ୍ଭରେ ମାତ୍ର ୧୭ଟି ବାଘ ଶିମିଳିପାଳ ଅଭୟାରଣ୍ୟରେ ଥିଲେ । ପରେ ଏମାନଙ୍କ ସଂଖ୍ୟା ୨୦୦୫ ବନ୍ୟଜନ୍ତୁ ଆକଳନ ଅନୁଯାୟୀ ୧୦୧କୁ ବୃଦ୍ଧି ପାଇଥିଲା । ଏକ ବ୍ୟାଘ୍ର ପରିଯୋଜନା ୨୭୫୦ ବର୍ଗ କି.ମି. ଲମ୍ବ ଶିମିଳିପାଳ ଜଙ୍ଗଲର ମଧ୍ୟରେ ୮୫୦ ବର୍ଗ କି.ମି. ବ୍ୟାଘ୍ର ବନ୍ୟ ସଂରକ୍ଷଣ ଅଞ୍ଚଳରେ କରାଯାଇଛି । ଓଡ଼ିଶାର ବ୍ୟାଘ୍ର ଚିତାବାଘ ଶ୍ରେଣୀର । ଅନ୍ୟ ବାଘ ସମ୍ପ୍ରଦାୟ ଯଥା: କଲରାପତରିଆ (ଯାହା



୧୯୬୦ରେ ଶେଷଥର ପାଇଁ ଢେଙ୍କାନାଳ ଅଞ୍ଚଳରେ ଦେଖାଯାଇଥିଲା) ଓ ଚିତାବାଘ ଆଉ ପ୍ରାୟ ଦେଖାଯାଉନାହିଁ । ନନ୍ଦନକାନନ ପ୍ରାଣୀ ଉଦ୍ୟାନ ଧଳାବାଘ ପାଇଁ ବିଶ୍ୱରେ ପ୍ରସିଦ୍ଧି ଲାଭ କରିଛି ।

ଓଡ଼ିଶା ଜଙ୍ଗଲରେ ବିଭିନ୍ନ ପ୍ରକାର ମାଂସାସୀ ଜନ୍ତୁ ଯଥା– ହେଟା, ଭାଲୁ, ଗାତଭାଲୁ, ଗଧିଆ, ବିଲୁଆ, ବଳିଆ କୁକୁର, ମାର୍ଜାର, କଟାସ, ଶାଳିଆ ପାତିନୀ ଦେଖାଯାନ୍ତି । ହେଟାବାଘମାନେ ବେଳେ ବେଳେ ଦେବଗଡ, ଅନୁଗୁଳ ଓ କୋରାପୁଟ ଜଙ୍ଗଲରେ ଦେଖାଯାନ୍ତି ।

ଇତିହାସକୁ ଦେଖିଲେ ବନ୍ୟଜନ୍ତୁ ମଧ୍ୟରେ ହାତୀ ଓଡ଼ିଶାର ଗର୍ବ। ଅତୀତରେ ଓଡ଼ିଶା ସେନାରେ ହାତୀବାହିନୀ ଥିଲା । ଓଡ଼ିଶାର ପ୍ରମୁଖ ରାଜବଂଶୀୟମାନେ ନିଜକୁ ଗଜପତି ନାମରେ ନାମିତ କରୁଥିଲେ । ମୟୂରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ, ପୁରୀ (ବାଲୁଗାଁ ପାଖରେ), ଗଞ୍ଜାମ ଓ ସମ୍ବଲପୁର ଜିଲ୍ଲାମାନଙ୍କରେ ବନ୍ୟହାତୀ ଦେଖାଯାନ୍ତି । ଚନ୍ଦକା ହାତୀ ଅଭୟାରଣ୍ୟ ଏମାନଙ୍କ ପାଇଁ ଏକ ପ୍ରାକୃତିକ ବନ୍ୟସ୍ଥଳ । ନୟାଗଡ଼ ନିକଟସ୍ଥ ମହାନଦୀ ବାଇସିପାଲି ଅଭୟାରଣ୍ୟ ଏବଂ ୬ ନମ୍ବର ଜାତୀୟ ରାଜପଥରେ ଅବସ୍ଥିତ ଉଷାକୋଠି ଅଭୟାରଣ୍ୟ (ସମ୍ବଲପୁରଠାରୁ ୪୦ କି.ମି. ଦୂରରେ)ରେ ହାତୀ ରହନ୍ତି । ଉଷାକୋଠି ଅଭୟାରଣ୍ୟରେ ମଧ୍ୟ ଗୟଳ ଦେଖାଯାନ୍ତି ।

ଏତଦ୍‌ବ୍ୟତୀତ– ବାରହା, ଚିତଳ, ହରିଣ, ସମ୍ବର, କୁଟୁରା, ହନୁମାଙ୍କଡ, ପାତିମାଙ୍କଡ, ଅନେକ ପ୍ରକାରର ବାଦୁଡ଼ି, ବଜ୍ରକାପ୍ତା, ଝିଙ୍କ, ବଡ–ସାନ, ଗୁଣ୍ଡୁଚି ଜଙ୍ଗଲରେ ଦେଖାଯାନ୍ତି । ବାଲିମେଳା ଓ ସୁନାବେଡା ସଂରକ୍ଷିତ ଅଞ୍ଚଳରେ ଅରଣା ମଇଁଷି ଦେଖାଯାନ୍ତି । ପୁରୀ, କଟକ, ଢେଙ୍କାନାଳ, ସମ୍ବଲପୁର ଓ ମୟୂରଭଞ୍ଜର ନିଛାଟିଆ ସ୍ଥାନମାନଙ୍କରେ ଚାରିଶିଙ୍ଗିଆ କୃଷ୍ଣସାର ମୃଗ ଦେଖାଯାନ୍ତି । ଗଞ୍ଜାମ ଜିଲ୍ଲାର ଆସ୍କା ନିକଟସ୍ଥ ବେତନଇ ନିକଟରେ କୃଷ୍ଣସାର ମୃଗ ଦେଖାଯାନ୍ତି । ଭୂଆଷୁଣୀ ମାଛ ଓ ଶିଶୁମାର ଚିଲିକା ଓ ନଦନଦୀମାନଙ୍କରେ ବେଳେବେଳେ ଦେଖାଯାନ୍ତି ।

## ପକ୍ଷୀ

ଓଡ଼ିଶାରେ ବିଭିନ୍ନ ରଙ୍ଗର ଆକର୍ଷଣୀୟ ପକ୍ଷୀ ଦେଖାଯାନ୍ତି । ସେମାନେ ହେଲେ ହଂସରାଳୀ, ପାଣିକୁଆ ଓ ପାଣିକୋଇଲି, ଗେଣ୍ଡାଳିଆ, ଫ୍ଲେମିଙ୍ଗୋ, ବାଜେଣି, ଚକୁଆ–ଚକୋଇ, ସରଳୀ, ଶାଗୁଣା, ଛଞ୍ଚାଣ, ବାଜ, ଶଙ୍ଖଚିଲ,



ମାଟିଆଚିଲ, ମୟୂର, ତିତିରି, ପୁଣ୍ଡିକି ଚଢେଇ, ସାରସ୍, ଡାହୁକ, ପାଣି ଡାହୁକ, ଡେନ୍ତେଇ, କାଦୁଅଖୁମ୍ପି, ମାଛଖିଆ, ଦେଉଳି ପାରା, ହରଡ ଚଢେଇ, କାଣ୍ଟିଗିରି, କାପ୍ତା, ଶୁଆ, ମଦନ । କୋଇଲି, କୁମ୍ଭାଟୁଆ, ପେଚା, ଲକ୍ଷ୍ମୀପେଚା, ଭୂଇଁ ଛାପୁଲି, ଧନେଶ, ମାଛରଙ୍କା, ଟୁକୁରା ବସନ୍ତ, କାଠହଣା, କଜଳପାତି, ହଳଦୀବସନ୍ତ, ବଣି, ଶାରୀ, ବୁଲବୁଲ, ବାୟାଚଢେଇ, କାଉ, ଘରଚଟିଆ ଓ ଅନ୍ୟାନ୍ୟ । ଏ ପକ୍ଷୀମାନଙ୍କର କାକଳି ଗ୍ରାମାଞ୍ଚଳରେ ସକାଳ ଓ ସଞ୍ଜରେ ଗୁଞ୍ଜରିତ ହୁଏ ଏବଂ ପରିବେଶକୁ ମନୋଜ୍ଞ ଓ ଆକର୍ଷଣୀୟ କରାଏ ।

## ସରୀସୃପ

ସରୀସୃପ ମଧ୍ୟରୁ କୁମ୍ଭୀର ଆଜି ସଙ୍କଟରେ । କୁମ୍ଭୀର ଚମଡା ଉଚ୍ଚ ଦରରେ ବିକ୍ରି ହେଉଥିବାରୁ ତାଙ୍କ ସଂଖ୍ୟା ଧୀରେ ଧୀରେ ହ୍ରାସ ପାଇବାରେ ଲାଗିଛି । ତିନି ପ୍ରକାର କୁମ୍ଭୀର: ଘଡିଆଳ, ବଉଳା ଓ ମଗର ଓଡ଼ିଶାର ବିଭିନ୍ନ ପ୍ରାନ୍ତରରେ ଦେଖାଯାନ୍ତି । ସେମାନଙ୍କର ରକ୍ଷଣାବେକ୍ଷଣ ଓ ବଂଶବୃଦ୍ଧି ପାଇଁ ଅଭୟାରଣ୍ୟ ସୃଷ୍ଟି କରାଯାଇଛି । ଘଡିଆଳ କୁମ୍ଭୀର କେବଳ ମହାନଦୀ ଓ ତା'ର ଶାଖା ନଦୀମାନଙ୍କରେ ଦେଖାଯାଆନ୍ତି । ଏମାନଙ୍କ ରକ୍ଷଣାବେକ୍ଷଣ ନିମନ୍ତେ ସାତକୋଶିଆଠାରେ ୭୯୫.୫ ବର୍ଗ କି.ମି. ଅଞ୍ଚଳରେ ଏକ ଅଭୟାରଣ୍ୟ କରାଯାଇଛି । ଅନ୍ୟ ଦୁଇ ପ୍ରକାରର କୁମ୍ଭୀରଙ୍କ ପାଇଁ ଭିତରକନିକାଠାରେ ୧୬୧.୭୬ ବର୍ଗ. କି.ମିର ଅଭୟାରଣ୍ୟ ରହିଅଛି । ଶିମିଳିପାଳ ଜଙ୍ଗଲର ରାମିର୍ଥଠାରେ ଏକ ଛୋଟ କୁମ୍ଭୀର ରକ୍ଷଣସ୍ଥଳୀ ଅଛି ।

ଓଡ଼ିଶାରେ ମୁଖ୍ୟତଃ ଦୁଇପ୍ରକାର କଇଁଛ ଦେଖିବାକୁ ମିଳନ୍ତି । ସବୁଜ କଇଁଛ ଯାହା ୧.୨ ମିଟର ଯାଏଁ ବଢିଥାଏ ଏବଂ ୧୩୫ରୁ ୧୮୦ କିଲୋଗ୍ରାମ ମଧ୍ୟରେ ଓଜନ ହୋଇଥାଏ, ଏଗୁଡିକ ମୁଖ୍ୟତଃ ଚିଲିକା ହ୍ରଦରେ ଦେଖିବାକୁ ମିଳନ୍ତି । ଓଡ଼ିଶାରେ ଦେଖାଯାଉଥିବା ଅନ୍ୟ କଇଁଛଟି ହେଉଛି ଅଲିଭ ରିଡ୍‌ଲେ ସମୁଦ୍ର କଇଁଛ । ପ୍ରଶାନ୍ତ ମହାସାଗର ଉପକୂଳରୁ ଏମାନେ ଲକ୍ଷାଧିକ ସଂଖ୍ୟାରେ ଅଣ୍ଡା ଦେବା ପାଇଁ ଭିତରକନିକାର ଗହୀର ମଥା ଓ ସାତଭାୟା ଅଞ୍ଚଳକୁ ଆସନ୍ତି । ଯେଉଁ ସ୍ଥାନରେ ଏ କଇଁଛମାନେ ଅଣ୍ଡା ଦିଅନ୍ତି ସେ ସ୍ଥାନକୁ 'ଅରିବାଡ୍' କହନ୍ତି ।

ଓଡ଼ିଶାରେ ଅନ୍ୟ ରାଜ୍ୟ ଭଳି ସାପ, ବେଙ୍ଗ ଓ ଅନ୍ୟାନ୍ୟ ଜାତିର ସରୀସୃପ ଦେଖାଯାନ୍ତି ।



# ଆଧୁନିକ ଓଡ଼ିଶାର ନିର୍ମାତାଗଣ

## ଫକୀର ମୋହନ ସେନାପତି

ବାଲେଶ୍ୱରର ମଲ୍ଲିକାଶପୁରରେ ୧୮୪୩ ମସିହା ଜାନୁଆରୀ ୧୪ ତାରିଖରେ ଜନ୍ମ । ପିତା ଲକ୍ଷ୍ମଣ ଚରଣ



ସେନାପତି ଏବଂ ମାତା ତୁଳସୀ ଦେବୀ । ଓଡ଼ିଆ ଭାଷା ଓ ସାହିତ୍ୟର ସ୍ୱତନ୍ତ୍ର ପରିଚୟ ପ୍ରତିଷ୍ଠା କ୍ଷେତ୍ରରେ ତାଙ୍କର ଅଗ୍ରଣୀ ଭୂମିକା ଥିଲା । ଫକୀର ମୋହନ ସେନାପତି ଓଡ଼ିଆ ଜାତୀୟତା ଓ ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟା ଭାବେ ସମ୍ମାନିତ । ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ସେ ଓଡ଼ିଆ ସାହିତ୍ୟର ବିକାଶ ନିମନ୍ତେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଫକୀର ମୋହନଙ୍କ କାହାଣୀ ବାସ୍ତବରେ ଓଡ଼ିଆ ସାହିତ୍ୟର ପୁନରଭ୍ୟୁଦୟର କାହାଣୀ । ଏହା ସହ ସେ ଜଣେ ସମାଜସଂସ୍କାରକ ଓ ଶିକ୍ଷାବିତ୍ ଥିଲେ । ସେ ସମାଜରେ ପ୍ରଚଳିତ କୁସଂସ୍କାରକୁ ସମାଲୋଚନାପୂର୍ବକ ସୁଧାରିବାରେ ତାଙ୍କର ଲେଖନୀ ଚାଳନା କରୁଥିଲେ । ତାଙ୍କୁ ଓଡ଼ିଆ ଗଦ୍ୟ ସାହିତ୍ୟର ଜନକ ହିସାବରେ ଅଭିହିତ କରାଯାଏ ।

ସେ ଯଥାର୍ଥରେ ଓଡ଼ିଶାର ଥୋମାସ୍ ହାର୍ଡି ରୂପେ ପରିଗଣିତ ହୁଅନ୍ତି । ୧୮୯୭ ରୁ ୧୯୧୫ ମଧ୍ୟରେ ଲିଖିତ ଫକୀରମୋହନଙ୍କ ଚାରି ଗୋଟି ଉପନ୍ୟାସ ଊନବିଂଶ ଓ ବିଂଶ ଶତାବ୍ଦୀର ସାମାଜିକ ଓ ସାଂସ୍କୃତିକ ଚିତ୍ରକୁ ପ୍ରତିବିମ୍ବିତ କରିଥାଏ । ପୁନଶ୍ଚ, 'ଛ'ମାଣ ଆଠଗୁଣ୍ଠ', 'ମାମୁଁ' ଓ 'ପ୍ରାୟଶ୍ଚିତ' ପରି ୩ ଗୋଟି ଉପନ୍ୟାସ ସାମାଜିକ ଜୀବନର ବାସ୍ତବତାକୁ ସବିଶେଷ ଭାବେ ପ୍ରଦର୍ଶିତ କରିଥାଏ । 'ଲଛମା' ହେଉଛି ଅଷ୍ଟାଦଶ ଶତାବ୍ଦୀ ବେଳର ମରାଠା ଆକ୍ରମଣ ପରିପ୍ରେକ୍ଷୀରେ ଓଡ଼ିଶାର ରାଜନୈତିକ ବିଶୃଙ୍ଖଳା ସଂପର୍କିତ ଐତିହାସିକ ଦସ୍ତାବିଜ୍ । ସେ 'ରେବତୀ', 'ପେଟେଣ୍ଟ୍ ମେଡିସିନ୍' ଓ 'ରାଣ୍ଡିପୁଅ ଅନନ୍ତା' ପରି ସ୍ମରଣୀୟ କ୍ଷୁଦ୍ର ଗଳ୍ପ ସୃଷ୍ଟି କରିଛନ୍ତି । ଫକୀରମୋହନ ମଧ୍ୟ ଓଡ଼ିଆ ଭାଷାରେ ପ୍ରଥମ ଆତ୍ମ ଜୀବନୀ ' ଆତ୍ମ ଜୀବନ ଚରିତ'ର ଲେଖକ ।

ଫକୀରମୋହନଙ୍କ ପ୍ରଥମ ମୌଳିକ କବିତା 'ଉତ୍କଳ ଭ୍ରମଣମ୍' ୧୮୯୨ ମସିହାରେ ଆତ୍ମପ୍ରକାଶ କରିଥିଲା । ଏହା ପ୍ରକୃତରେ ଏକ ଭ୍ରମଣ ପୁସ୍ତକ ନଥିଲା, ବରଂ ଏହା ଓଡ଼ିଶାର ତତ୍କାଳୀନ ଜନଜୀବନରେ ସମସାମୟିକ ପ୍ରମୁଖ ସମସ୍ୟାର ଅସାଧାରଣ ଏବଂ ରସାତ୍ମକ ସର୍ବେକ୍ଷଣ ଥିଲା । ତାଙ୍କର ପ୍ରକାଶିତ ଅନ୍ୟାନ୍ୟ ମୌଳିକ କବିତାଗୁଡିକ ଥିଲା 'ପୁଷ୍ପମାଳ',

'ଉପହାର', 'ପୂଜା ଫୁଲ', 'ପ୍ରାର୍ଥନା' ଏବଂ 'ଧୂଳି' । ଫକୀରମୋହନ ସେନାପତି ଏକାକୀ 'ରାମାୟଣ' ଓ 'ମହାଭାରତ'ର ସମଗ୍ର ଭାଗ ଅନୁବାଦ କରିଥିଲେ । ଶବ୍ଦବିନ୍ୟାସ କ୍ଷେତ୍ରରେ ପାଣ୍ଡିତ୍ୟପୂର୍ଣ୍ଣ ନିପୁଣତା ଫକୀରମୋହନଙ୍କୁ ଓଡ଼ିଶାର 'ବ୍ୟାସକବି' ରୂପେ ଲୋକପ୍ରିୟ କରିପାରିଛି । ତତ୍କାଳୀନ ଦେଶୀୟ ରାଜ୍ୟ ବାମଣ୍ଡାର ରାଜାସାହେବ ତାଙ୍କୁ 'ସରସ୍ୱତୀ' ସମ୍ମାନରେ ବିଭୂଷିତ କରିଥିଲେ । ଓଡ଼ିଆ ସାହିତ୍ୟରେ ଏକ ନୂତନ ଯୁଗର ସ୍ରଷ୍ଟା ଫକୀରମୋହନ 'ଉତ୍କଳ ଭାଷା ଉନ୍ନତି ବିଧାନସଭା' ନାମକ ଏକ ସଂଗଠନର ପ୍ରତିଷ୍ଠାତା ଥିଲେ, ଏହା ଓଡ଼ିଆ ଭାଷାର ପ୍ରଚାରପ୍ରସାର ତଥା ଓଡ଼ିଶାର ଲୋକମାନଙ୍କ ମଧ୍ୟରେ ନୂତନ ସଚେତନତା ସୃଷ୍ଟି ଉଦ୍ଦେଶ୍ୟରେ ୧୮୬୭ ମସିହାରେ ଆରମ୍ଭ ହୋଇଥିଲା । ଓଡ଼ିଆ ଭାଷା ସାହିତ୍ୟର ଏହି କାଳଜୟୀ ସ୍ରଷ୍ଟା ୧୯୧୮ ମସିହା ଜୁନ୍ ମାସ ୧୪ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ ।

## ଉତ୍କଳଗୌରବ ମଧୁସୂଦନ ଦାସ



କଟକ ଜିଲ୍ଲାର ସତ୍ୟଭାମାପୁରରେ ୧୮୪୮ ମସିହା ଅପ୍ରେଲ ମାସ ୨୮ ତାରିଖରେ ଜନ୍ମ । ପିତା– ଚୌଧୁରୀ ରଘୁନାଥ ଦାସ, ମାତା–ପାର୍ବତୀ ଦେବୀ । କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଓ ବି.ଏଲ୍. ଡିଗ୍ରୀ ହାସଲ କରିବାରେ ମଧୁସୂଦନ ଦାସ ପ୍ରଥମ ଓଡ଼ିଆ ଥିଲେ । ସେ ମଧୁ ବାରିଷ୍ଟର ରୂପେ ଲୋକପ୍ରିୟ ଥିଲେ, ସମ୍ମାନର ସହିତ 'ଉତ୍କଳଗୌରବ' ରୂପେ ସମ୍ବୋଧିତ ହେଉଥିଲେ । ଓଡ଼ିଆମାନେ ପ୍ରାଶାସନିକ କର୍ତ୍ତୃପକ୍ଷଙ୍କ ଦ୍ୱାରା ବିଦ୍ୱେଷ ଭାବ ଶିକାର ହେଉଥିବା ଦେଖି ସେ ଗଭୀର ଭାବେ ମର୍ମାହତ ହୋଇଥିଲେ । ସେ ବୁଝିଥିଲେ ଯେ ଓଡ଼ିଆମାନଙ୍କ ସ୍ୱାର୍ଥରକ୍ଷା ଦିଗରେ ପ୍ରାଶାସନିକ ଉଦାସୀନତା ଓଡ଼ିଆମାନଙ୍କ ଦୁର୍ଦ୍ଦଶାର କାରଣ । ଓଡ଼ିଆମାନେ ତିନିଗୋଟି ବିଭିନ୍ନ ପ୍ରଦେଶରେ ବିଭକ୍ତ ହୋଇ ରହିଥିବାରୁ ସେମାନେ ଏକତ୍ରିତ ହୋଇପାରୁ ନଥିଲେ । ତେଣୁ ବିଚ୍ଛିନ୍ନ ହୋଇ ରହିଥିବା ଓଡ଼ିଆମାନଙ୍କୁ ସଂଗଠିତ ଏବଂ ପ୍ରେରିତ କରି ସେମାନଙ୍କ ଏକତ୍ରୀକରଣ ନିମନ୍ତେ ସେ ଦୃଢ଼ ପଦକ୍ଷେପ ଗ୍ରହଣ କରିଥିଲେ । ସେ ଓଡ଼ିଆମାନଙ୍କ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଅଭିବୃଦ୍ଧି ସାଙ୍ଗକୁ ବିଚ୍ଛିନ୍ନ ହୋଇ ରହିଥିବା ଓଡ଼ିଆ ଭାଷାଭାଷୀ ଅଂଚଳଗୁଡିକର ଏକତ୍ରୀକରଣ ନିମନ୍ତେ ବ୍ରିଟିଶ୍ ଶାସକଙ୍କ ଉପରେ ଚାପ ପ୍ରୟୋଗ କରିଥିଲେ ।

ଓଡ଼ିଆ ଆନ୍ଦୋଳନର ଲକ୍ଷ୍ୟକୁ ପୂରଣ କରିବା ଦିଗରେ ଏହାର ଯୋଜନା ଓ କାର୍ଯ୍ୟକ୍ରମ ପରିଚାଳନା କରିବା ସହ ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣରେ ମଧୁବାବୁ ପ୍ରମୁଖ ଭୂମିକା ଗ୍ରହଣ କରି ବିଭିନ୍ନ ସମସ୍ୟା ସମାଧାନ ପାଇଁ ତଥା ଏଥିନିମନ୍ତେ କର୍ତ୍ତୃପକ୍ଷଙ୍କ ସହ ଆଲୋଚନା ଓ ବୁଝାମଣା ସକାଶେ ଉତ୍କଳ ୟୁନିଅନ୍ କନ୍‌ଫରେନ୍ସ ଗଠନ କରିଥିଲେ । 'ଉତ୍କଳ ସଭା'ର ବିଲୋପ କ୍ରମେ ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ଗଠିତ ହୋଇଥିଲା । ଏହା ସମସ୍ତ ଓଡ଼ିଆ ଭାଷାଭାଷୀ ଅଂଚଳଗୁଡିକୁ ଏକତ୍ରିତ କରି ଉପଯୁକ୍ତ ବ୍ୟବସ୍ଥା ମଧ୍ୟରେ ଗୋଟିଏ ପ୍ରଶାସନ ଅଧୀନକୁ ଆଣିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲା ।

ମଧୁସୂଦନ ଦାସଙ୍କ ନିଷ୍ଠା ଓ ପ୍ରେରଣା ବଳରେ ବିଭିନ୍ନ ବର୍ଗର ଲୋକେ ଗୋଟିଏ ରାଜନୈତିକ ମଂଚରେ ଏକତ୍ରିତ ହୋଇଥିଲେ । ଲୋକମାନଙ୍କ ମଧ୍ୟରେ ଏହା ସଂସ୍କୃତି, ପରମ୍ପରା

ଏବଂ ଭାଷା ସହ ଜାତୀୟତାର ସଂଗଠିତ ଭାବନା ଉଦ୍ରେକ କରିବା ସହିତ ସମସ୍ତଙ୍କୁ ପ୍ରଭାବିତ କରିପାରିଥିଲା । ଉତ୍କଳଗୌରବ ମଧୁସୂଦନ ଦାସ ଏବଂ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ବଳିଷ୍ଠ ନେତୃତ୍ୱ କ୍ରମେ ଏହା ଏପରି ଏକ ସ୍ତରକୁ ଛୁଇଁଥିଲା ଯେ, 'ସ୍ୱାଧୀନତା ଆନ୍ଦୋଳନ' ଏବଂ ଓଡ଼ିଆ ଆନ୍ଦୋଳନ ଘନିଷ୍ଠ ଭାବେ ସମ୍ବନ୍ଧିତ ହୋଇଯାଇଥିଲା । ବେଳେବେଳେ ଏହି ଦୁଇ ଆନ୍ଦୋଳନ ମଧ୍ୟରୁ କେଉଁଟି ଅଗ୍ରାଧିକାର ଲାଭ କରିବ, ସେ ନେଇ ବିତର୍କ ହେଉଥିଲା । ଏପରି ପରିସ୍ଥିତି ଲୋକମାନଙ୍କୁ ଓଡ଼ିଆ ଆନ୍ଦୋଳନ ମଂଚ ପାଇଁ ମଧୁସୂଦନ ଦାସ ଓ ପରେ କଂଗ୍ରେସ ସହ ହାତ ମିଳାଇବାରେ ପ୍ରେରିତ କରିଥିଲା । 'ଉତ୍କଳ ସମ୍ମିଳନୀ' ବା 'ଉତ୍କଳ ୟୁନିଅନ୍ କନ୍‌ଫେରେନ୍ସ' କଂଗ୍ରେସଠାରୁ ନିଜର ସ୍ୱତନ୍ତ୍ର ପରିଚିତି ରକ୍ଷା କରିଥିଲା ।

ଜଣେ ବ୍ୟବସ୍ଥାପକ ଭାବେ ମଧୁସୂଦନ ଦାସ ପଦମର୍ଯ୍ୟାଦା ରକ୍ଷା କରିବା ସହ ବେଶ୍ ପ୍ରଶଂସିତ ହୋଇପାରିଥିଲେ । ଏହା ବହୁଳ ଭାବରେ ତାଙ୍କର ତୀକ୍ଷ୍ଣ ଚାତୁରୀ ଓ ପ୍ରେରଣାଦାୟକ ବକ୍ତବ୍ୟ ଯୋଗୁଁ ହିଁ ସମ୍ଭବ ହୋଇଥିଲା । ସେ ବିହାର-ଓଡ଼ିଶାର ଲୋକାଲ୍ ସେଲ୍ଫ୍ ଗଭର୍ଣ୍ଣମେଣ୍ଟ୍ (ସ୍ୱାୟତ୍ତ ଶାସନ ବିଭାଗ)ର ମନ୍ତ୍ରୀ ରୂପେ ମନୋନୀତ ହୋଇଥିଲେ ।

ମଧୁସୂଦନ ଦାସ ଉପଯୁକ୍ତ ନେତୃତ୍ୱ ବଳରେ ତାଙ୍କର ମନ୍ତ୍ରିତ୍ୱ କାଳରେ ଜନସାଧାରଣ ଓ ସରକାରରେ ପ୍ରଶଂସା ଲାଭ କରିପାରିଥିଲେ । ସେ ତାଙ୍କର ଲୋକପ୍ରିୟତା ସତ୍ତ୍ୱେ ନୀତିଗତ ଦୃଷ୍ଟିରୁ ୧୯୨୩ ମସିହାରେ ଇସ୍ତଫା ଦେଇଥିଲେ । ଏହା ତାଙ୍କର ସାଧୁତାକୁ ସୂଚାଇ ଥାଏ ।

୧୯୧୭ରେ ଆରମ୍ଭ ହୋଇଥିବା ସାପ୍ତାହିକୀ ଖବର କାଗଜ 'ଦି ଓଡ଼ିଆ'ରେ ତାଙ୍କର ସାମ୍ବାଦିକତା ଶୈଳୀ ପ୍ରତିବିମ୍ବିତ ହୋଇଥିଲା । ଏହି ସାପ୍ତାହିକ ଖବର କାଗଜ ଜରିଆରେ ଓଡ଼ିଆଙ୍କ ସ୍ୱାର୍ଥରକ୍ଷା ଉପରେ ସେ ଆଲୋକପାତ କରିବା ସହ ସରକାରୀ ନୀତିର ସମାଲୋଚନା କରୁଥିଲେ । ସେ ତାଙ୍କ ଉଚ୍ଚାରଣ ଓ ଆଚରଣରେ ଅତ୍ୟନ୍ତ ଯଥାର୍ଥ ଏବଂ କଠୋର ଥିଲେ ।

ଜାତୀୟତା କ୍ଷେତ୍ରରେ ଅଗ୍ରଗଣ୍ୟ ହେବା ସହ ଓଡ଼ିଶା ବିକାଶର ସେ ଜଣେ ଦୃଢ଼ ପୃଷ୍ଠପୋଷକ ଥିଲେ । ସେ ୧୯୩୪ ମସିହା ଫେବୃଆରୀ ମାସ ୪ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ପ୍ରଥମ ଓଡ଼ିଆ ଭାବେ ସେ ପ୍ରଥମ ମାଷ୍ଟର ଡିଗ୍ରୀ ଓ ପ୍ରଥମ ବି.ଏଲ୍. ଡିଗ୍ରୀ ଲାଭ କରିବା ସହ ଜଣେ ପ୍ରକୃତ ଜନସେବକ ତଥା ଜାତୀୟତାବାଦୀ ରୂପେ ପରିଗଣିତ ହୋଇଥିଲେ । ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଦସ୍ୟ ଭାବେ, ଇଂଲଣ୍ଡକୁ ଦୁଇ ଥର ସମୁଦ୍ର ଯାତ୍ରା କରିବାରେ ଏବଂ ସେଣ୍ଟ୍ରାଲ୍ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ସଦସ୍ୟତା ଆହରଣ କ୍ଷେତ୍ରରେ ସେ ପ୍ରଥମ ଓଡ଼ିଆ ଓ ପ୍ରଥମ ଭାରତୀୟ ମନ୍ତ୍ରୀ ଥିଲେ ।

## ଗଙ୍ଗାଧର ମେହେର



ସମ୍ବଲପୁରର ବରପାଲିରେ ଏକ ବୁଣାକାର ପରିବାରରେ ୧୮୬୨ ମସିହା ଅଗଷ୍ଟ ମାସ ୯ ତାରିଖର ଶ୍ରାବଣ ପୂର୍ଣ୍ଣିମାରେ ଜନ୍ମ । ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଗତ ଯୋଗ୍ୟତା । ଗଙ୍ଗାଧର ମେହେରଙ୍କ ପ୍ରତି ଡ.ମାୟାଧର ମାନସିଂହଙ୍କର ପ୍ରଗାଢ଼ ସମ୍ମାନ

ରହିଥିଲା ଏବଂ ସେ ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ'ରେ ନିଜ ମତ ରଖି କହିଛନ୍ତି ଯେ 'ସମସ୍ତେ କହନ୍ତି, ଗଙ୍ଗାଧର ମେହେର ହେଉଛନ୍ତି ଜଣେ ବିରଳ ବ୍ୟକ୍ତିତ୍ୱ ଓ ସମଗ୍ର ଓଡ଼ିଆ ସାହିତ୍ୟ ଶୃଙ୍ଖଳାର କବିମାନଙ୍କ ମଧ୍ୟରେ ଅନନ୍ୟ।' ତାଙ୍କର କାବ୍ୟିକ ସୃଷ୍ଟି ମଧ୍ୟରେ 'ପ୍ରଣୟ–ବଲ୍ଲରୀ', 'କୀଚକ ବଧ', 'ଇନ୍ଦୁମତୀ', 'ଉତ୍କଳ ଲକ୍ଷ୍ମୀ', 'ଅଯୋଧ୍ୟା ଦୃଶ୍ୟ', 'କବିତା କଲ୍ଲୋଳ', 'ଅର୍ଘ୍ୟଥାଳି', 'ଅହଲ୍ୟା ସ୍ତବ', 'ମହିମା', 'ଭାରତୀ ଭାବନା', 'କୁମାର ଜନ୍ମୋତ୍ସବ', 'ଭକ୍ତି ଉପହାର', 'ପଦ୍ମିନୀ', 'କବିତା ମାଳା' ଏବଂ 'କୃଷକ ସଂଗୀତ' ଅନ୍ୟତମ । 'ଆତ୍ମ ଜୀବନୀ', 'ଶ୍ରୀ ନୃପରାଜ ସିଂହ', 'ପୁରାଣ କବି ଫକୀରମୋହନ', 'ସ୍ୱର୍ଗୀୟ କାଶୀନାଥ ପଣ୍ଡା', 'ଏହା କି ପୃଥିବୀର ଶବ୍ଦ?', 'ଶିକ୍ଷିତ', 'ଅଶିକ୍ଷିତ' ଏବଂ 'ଶିକ୍ଷାଭିମାନିନୀ' ହେଉଛି ତାଙ୍କର ଗଦ୍ୟ ସୃଷ୍ଟି ।

କବିବର ରାଧାନାଥ ରାୟଙ୍କ ପରି ଗଙ୍ଗାଧରଙ୍କ ସାହିତ୍ୟିକ ସୃଷ୍ଟିସମ୍ଭାର ପ୍ରକୃତିର ନୈସର୍ଗିକ ସୌନ୍ଦର୍ଯ୍ୟ ବର୍ଣ୍ଣନା ଯୋଗୁଁ ଲୋକପ୍ରିୟତା ହାସଲ କରିପାରିଛି । ଏହା ଅନନ୍ୟ । ଗଙ୍ଗାଧର ଜଣେ ପ୍ରକୃତି କବି ରୂପେ ବେଶ୍ ଜଣାଶୁଣା ଓ ସେ କବି ଶେଲୀ, ବାଇରନ୍ ଏବଂ କୀଟ୍ସଙ୍କ ସହ ତୁଳନୀୟ ଅଟନ୍ତି । ସେ ଉପେନ୍ଦ୍ର ଭଂଜଙ୍କ ଶୈଳୀ ଓ ଆଦର୍ଶର ଜଣେ ବାର୍ତ୍ତାବହ ଥିଲେ । ତାଙ୍କର ଲୋକପ୍ରିୟତା ଆକସ୍ମିକ ନୁହେଁ । ଏହା ପଛରେ ଅନେକ କାରଣ ନିହିତ । କବି ସମ୍ରାଟ ଉପେନ୍ଦ୍ର ଭଂଜଙ୍କ ପରି ତାଙ୍କର କବିତାଗୁଡିକ ଉଚ୍ଚ ଆଳଙ୍କାରିକ ଶବ୍ଦ, ଅନନ୍ୟ ସଂଯୋଜନା ଶୈଳୀ, ଉପମା, ରୂପକ ଓ ଯଥାର୍ଥ ଶବ୍ଦାବଳୀର ଉପଯୁକ୍ତ ପ୍ରୟୋଗ ସହ ସମୃଦ୍ଧ ଥିଲା । ତାଙ୍କର କବିତାଗୁଡିକରେ ଶବ୍ଦ, ଭାଷା ଓ ଛନ୍ଦର ଅପୂର୍ବ ସମ୍ମିଶ୍ରଣ ଘଟିଥିଲା । ଭାରତୀୟ ସାହିତ୍ୟରେ ତାଙ୍କୁ ଜଣେ ମହାନ୍ କବି ଭାବେ ଗଣାଯାଏ । ତାଙ୍କର ମହାପ୍ରୟାଣ ହୋଇଥିଲା ୧୯୨୪ ମସିହା ଅପ୍ରେଲ ମାସ ୪ ତାରିଖରେ । ତାଙ୍କର କବିତାଗୁଡିକୁ ଗୀତି କବିତା, ଭକ୍ତିମୂଳକ, ଦେଶାତ୍ମବୋଧକ, ସଂସ୍କାରମୂଳକ, ନୈତିକ, କୃଷିଭିତ୍ତିକ, ଶୋକଗୀତି ଏବଂ ପ୍ରକୃତି ବର୍ଣ୍ଣନାମୂଳକ ରଚନା ଇତ୍ୟାଦିରେ ବିଭକ୍ତ କରାଯାଇପାରେ ।

## ଶ୍ରୀରାମଚନ୍ଦ୍ର ଭଂଜଦେଓ

ମୟୂରଭଂଜ ଗଡଜାତ ରାଜ୍ୟର ଏକ ରାଜ ପରିବାରେ ୧୮୭୧ ମସିହା ଡିସେମ୍ବର ମାସ ୧୭ ତାରିଖରେ ଜନ୍ମ । ଶ୍ରୀରାମଚନ୍ଦ୍ର ୧୮୯୨ ମସିହା ଅଗଷ୍ଟ ମାସ ୧୫ ତାରିଖରେ ସିଂହାସନ ଆରୋହଣ କରିଥିଲେ । ମୟୂରଭଂଜ ରାଜ୍ୟର ସାମଗ୍ରିକ ଉନ୍ନତି ନିମନ୍ତେ ସେ କାର୍ଯ୍ୟ କରିଥିଲେ ଏବଂ ଜନସାଧାରଣଙ୍କ ମଙ୍ଗଳ ସକାଶେ ବିଭିନ୍ନ ଜନହିତକର



ପଦକ୍ଷେପ ଗ୍ରହଣ କରିଥିଲେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଏହି ଶାସକଙ୍କ ବନ୍ଧୁ, ଦାର୍ଶନିକ ଏବଂ ମାର୍ଗଦର୍ଶକ ଥିଲେ । ଶ୍ରୀରାମଚନ୍ଦ୍ର ଭାଷା, ସ୍ୱାସ୍ଥ୍ୟ ଏବଂ ପ୍ରାଶାସନିକ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଆଣିଥିଲେ । ତାଙ୍କ ଶାସନ ସମୟରେ ରୂପସା–ବାରିପଦା ମଧ୍ୟରେ ରେଳ ଚଳାଚଳର ଶୁଭାରମ୍ଭ ହୋଇଥିଲା । ରାଜକୋଷରୁ ୬ ଲକ୍ଷ ଟଙ୍କା ବ୍ୟୟରେ ସେ ହାଲ୍‌ଡିହା ଓ ହଳଦିଆଠାରେ ଦୁଇଟି ବୃହତ୍ ଜଳାଶୟ ନିର୍ମାଣ

କରିଥିଲେ । ସେହିପରି ଶିକ୍ଷା ପ୍ରସାର ନିମନ୍ତେ ତାଙ୍କ ରାଜ୍ୟ ସୀମା ମଧ୍ୟରେ ଥିବା ପ୍ରାଥମିକ ବିଦ୍ୟାଳୟର ସଂଖ୍ୟା ସେ ୪୪ ରୁ ୪୦୦ ପର୍ଯ୍ୟନ୍ତ ବୃଦ୍ଧି କରିଥିଲେ ।

ଯଦିଓ ସେ ମୟୂରଭଂଜର ରାଜା ଥିଲେ ତଥାପି ସମଗ୍ର ଓଡ଼ିଶା ପ୍ରତି ତାଙ୍କର ଅଗାଧ ଭଲପାଇବା ଥିଲା । ମଧୁସୂଦନଙ୍କ ନେତୃତ୍ୱରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ କରିବା ପାଇଁ ସେ ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ । ୧୯୦୩ ରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଶ୍ରୀରାମଚନ୍ଦ୍ର ଅଧ୍ୟକ୍ଷତା କରିଥିଲେ । ତା'ପରେ, ସଂଗଠିତ ଉଦ୍ୟମ ବଳରେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେବାର ସ୍ୱପ୍ନ ୧୯୩୬ ମସିହା ଅପ୍ରେଲ ମାସ ୧ ତାରିଖରେ ବାସ୍ତବ ରୂପ ନେଇଥିଲା । ୧୯୧୨ ମସିହା ଫେବୃଆରୀ ମାସ ୨୨ ତାରିଖରେ ଓଡ଼ିଶାର ଏହି ବରପୁତ୍ରଙ୍କର ମହାପ୍ରୟାଣ ଘଟିଥିଲା ।

## ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

୧୮୭୭ ମସିହା ଅକ୍ଟୋବର୍ ମାସ ୯ ତାରିଖରେ ଜନ୍ମ । ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଯଥାର୍ଥରେ କହିଥିଲେ ଯେ, 'ଉନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଦେଶର ବିଭିନ୍ନ ଅଂଚଳରେ ମହାମାନବ ଓ ମହିୟସୀ ମହିଳା ଜନ୍ମଲାଭ କରିଥିଲେ । ଉତ୍କର୍ଷ, ସାମାଜିକ ସଂସ୍କାର, ଶିକ୍ଷା, ଆଇନ୍ ଏବଂ ସାହିତ୍ୟ କ୍ଷେତ୍ର ଚମତ୍କାର ଥିଲା । ଶ୍ରୀ ଗୋପବନ୍ଧୁ ଦାସ ଥିଲେ ଏପରି ଜାତି ନିର୍ମାତାଙ୍କ ମଧ୍ୟରୁ ଅନ୍ୟତମ ।'

ସେବା କ୍ଷେତ୍ରରେ ଗୋପବନ୍ଧୁଙ୍କ ଆଗମନ ସହିତ ଓଡ଼ିଶାର ଜନସାଧାରଣଙ୍କ ବର୍ଷ ବ୍ୟାପୀ ଆଶା ଆକାଙ୍କ୍ଷା, ଅଭୀପ୍ସା ଓ ପ୍ରାର୍ଥନା ପରିପୂରଣ ହୋଇଥିଲା । ସେ ଆଧୁନିକ ଓଡ଼ିଶାର ନିର୍ମାତା ଥିଲେ ଏବଂ ଓଡ଼ିଶାବାସୀଙ୍କ ପ୍ରେରଣା ଓ ଆଦର୍ଶର ଉତ୍ସ ଥିଲେ । ସେ ନିଜକୁ ଦେଶସେବାରେ ସଂପୂର୍ଣ୍ଣ ଉତ୍ସର୍ଗ କରିଥିଲେ, ଏପରିକି ପୀଡ଼ିତମାନଙ୍କ ଦୁଃଖ ଦୂର କରିବା ବେଳେ ନିଜର ଏକମାତ୍ର ପୁତ୍ରକୁ ହରାଇଥିଲେ । ସେ ଦାରିଦ୍ର୍ୟ ଓ ଅଶିକ୍ଷାରୁ ମୁକ୍ତ ଏକ ସମାଜ ଚାହୁଁଥିଲେ, ଯେଉଁଠି ମଣିଷ ସମ୍ମାନର ସହ ବଂଚିପାରିବ ଓ ନିଜର ସଚେତନତା ସ୍ତର ବୃଦ୍ଧିରେ ସମର୍ଥ ହେବ । ଏହି ଲକ୍ଷ୍ୟ ହାସଲରେ ବ୍ରତୀ ହୋଇ ସେ ସାରା ଜୀବନ କାର୍ଯ୍ୟ କରିଚାଲିଥିଲେ ।



ଗୋପବନ୍ଧୁଙ୍କର ଏହି ମହତ ଉଦ୍ଦେଶ୍ୟକୁ ଚିହ୍ନି ତା.୨୮.୦୬.୧୯୨୪ ରିଖରେ ବିଶିଷ୍ଟ ବୈଜ୍ଞାନିକ ତଥା ବଙ୍ଗଳାର ଦେଶପ୍ରେମୀ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ତାଙ୍କୁ 'ଉତ୍କଳମଣି' ଉପାଧିରେ ଭୂଷିତ କରିଥିଲେ । ୧୯୦୯ ମସିହାରେ ସେ ପଣ୍ଡିତ ନୀଳକଂଠ ଦାସ ଏବଂ ଅନ୍ୟମାନଙ୍କ ସହ ସତ୍ୟବାଦୀ (ମଧ ଇଂରାଜୀ ଜାତୀୟ) ବିଦ୍ୟାଳୟ ଆରମ୍ଭ କରିଥିଲେ ଓ ଏଥିରେ ପରେ ପଣ୍ଡିତ ଗୋଦାବରୀଶ ଏବଂ ଆଚାର୍ଯ୍ୟ ହରିହର ଯୋଗ ଦେଇଥିଲେ । ଏହି ବିଦ୍ୟାଳୟ ଏହାର ଗୁଣାତ୍ମକତା ତଥା ଚରିତ୍ର ଗଠନ, ମୂଲ୍ୟବୋଧ ଦୃଷ୍ଟିରୁ ଖୁବ୍ ଶୀଘ୍ର ଲୋକପ୍ରିୟ ହୋଇପାରିଥିଲା । ସେ ମଧୁସୂଦନ ଦାସଙ୍କ ସହ ମିଶି ଉତ୍କଳ ସମ୍ମିଳନୀ ଜରିଆରେ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଦାବୀ ହାସଲ କରିବାକୁ ଓଡ଼ିଶାର ଜନସାଧାରଣଙ୍କୁ ଜାଗ୍ରତ କରିପାରିଥିଲେ । ସେତେବେଳେ ବିହାର, ବଙ୍ଗଳା ଏବଂ ଅନ୍ୟାନ୍ୟ ପ୍ରଦେଶରେ ବସବାସ କରୁଥିବା ଓଡ଼ିଆଙ୍କ ସାଂସ୍କୃତିକ, ସାହିତ୍ୟିକ ତଥା ଭାଷାଭିତ୍ତିକ ସମାନତା ସହ

ଓଡ଼ିଆଙ୍କ ସ୍ୱତନ୍ତ୍ର ପରିଚିତି ରକ୍ଷା କରିବା ନିମନ୍ତେ ତାଙ୍କର ବାସ୍ତବବାଦୀ ଚିନ୍ତାଧାରା ଦ୍ୱାରା ସେ ଏହାକୁ ଏକ ନୂତନ ରୂପ ଦେଇପାରିଥିଲେ । ସେ ମଧ୍ୟ ଧଳଭୂମର ବାହାଡାଗୁଡାଠାରେ ଏକ ଓଡ଼ିଆ ମଧ୍ୟଇଂରାଜୀ ବିଦ୍ୟାଳୟ ଆରମ୍ଭ କରିଥିଲେ । ଆହୁରି ମଧ୍ୟ, ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରସାର ନିମନ୍ତେ ସେ ୧୯୧୯ ମସିହା ଅକ୍ଟୋବର୍ ମାସ ୪ ତାରିଖରେ ସାପ୍ତାହିକ 'ସମାଜ' ଆରମ୍ଭ କରିଥିଲେ । ତାଙ୍କର କାଳଜୟୀ ଉଚ୍ଚାରଣ ଏବେ ମଧ୍ୟ ଯୁବ ପିଢ଼ିଙ୍କୁ ଉତ୍ସାହିତ କରିଥାଏ ।

'ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ ପଥେ ଯେତେ ଗାଡ
ପୂରୁ ତହିଁ ପଡି ମୋର ମାଂସ ହାଡ ।'

ସେ ଜଣେ ଅନନ୍ୟ କବି ଥିଲେ । ଜାତୀୟତାବାଦୀ ଚିନ୍ତାଧାରା ସହ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀକ୍ଷେତ୍ର ପୁରୀ ପ୍ରତି ତାଙ୍କର ପ୍ରେମଭାବ ତାଙ୍କ ରଚିତ କବିତାରେ ଭାବବିହ୍ୱଳତାର ସହ ବର୍ଣ୍ଣିତ ହୋଇଛି ।

''ଜଗତ–ସରସେ ଭାରତ–କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।
ଥିଲେ ଯହିଁ ତହିଁ ଭାରତ ବକ୍ଷରେ
ମଣିବି ମୁଁ ଅଛି ଆପଣା କକ୍ଷରେ
ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ
ପ୍ରତି ସ୍ଥାନ ମୋର ପ୍ରିୟ ପୁରୀ ଧାମ ।
ସକଳ ସଲିଳ ପଞ୍ଚତୀର୍ଥ ଜଳ
ପ୍ରତି ଧର୍ମାଳୟ ମୋର ନୀଳାଚଳ ।''

'ବନ୍ଦୀର ଆତ୍ମକଥା' ଓ 'ଅବକାଶ ଚିନ୍ତା' ତାଙ୍କର ଅନବଦ୍ୟ କୃତି । ସେ ଥିଲେ ଜଣେ ବହୁମୁଖୀ ପ୍ରତିଭା: ବିଦ୍ୱାନ, ସ୍ୱାଧୀନତା ସଂଗ୍ରାମୀ, ଆଧୁନିକ ଓଡ଼ିଶାର ନିର୍ମାତା, ଓଡ଼ିଆ ଭାଷାର ତ୍ରାଣକର୍ତ୍ତା, ସମାଜସେବୀ, ଆଦର୍ଶ ଶିକ୍ଷକ, ମାନବପ୍ରେମୀ, ସାମ୍ବାଦିକ, କବି, ଦାର୍ଶନିକ ଏବଂ ଜଗନ୍ନାଥ ସଂସ୍କୃତିର ପ୍ରଚାରକ । ୧୯୨୮ ମସିହା ଜୁନ୍ ମାସ ୧୭ ତାରିଖରେ ତାଙ୍କର ଦେହାନ୍ତ ଘଟିଥିଲା ।

## ପଣ୍ଡିତ ନୀଳକଂଠ ଦାସ

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଯେଉଁ କେତେକ ଉଚ୍ଚ ଶିକ୍ଷିତ ଯୁବକ ଓଡ଼ିଶା ମାଟିରେ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ନବଜାଗରଣ ଆଣିବାକୁ ଇଚ୍ଛା ପୋଷଣ କରିଥିଲେ, ସେମାନଙ୍କ



ମଧ୍ୟରୁ ପଣ୍ଡିତ ନୀଳକଂଠ ଦାସ ଥିଲେ ଅନ୍ୟତମ । ଅନ୍ୟମାନେ ଥିଲେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ପଣ୍ଡିତ କୃପାସିନ୍ଧୁ ମିଶ୍ର । ଏହି ପାଂଚଜଣ ବନ୍ଧୁ 'ସତ୍ୟବାଦୀ ଯୁଗର ପଂଚସଖା' ଭାବେ ଜଣାଶୁଣା । ସେମାନଙ୍କ ଯୌବନର ଆଦ୍ୟ ଭାଗରେ ଏହି ପାଂଚଜଣ ବନ୍ଧୁ ସରକାରୀ ସେବାରେ ଭର୍ତ୍ତି ନହେବାକୁ ତଥା ଦେଶ ସେବା ଏବଂ ସମୃଦ୍ଧିକୁ ସୁନିଶ୍ଚିତ କରିବାକୁ ଶପଥ ଗ୍ରହଣ କରିଥିଲେ ।

ପୁରୀ ଜିଲ୍ଲା ଶ୍ରୀରାମଚନ୍ଦ୍ରପୁର ଗ୍ରାମର ଆନନ୍ଦ ଦାସଙ୍କ ପରିବାରରେ ୧୮୮୪ ମସିହା ଅଗଷ୍ଟ ମାସ ୫ ତାରିଖରେ ଓଡ଼ିଶାର ଏହି ବରପୁତ୍ର ଜନ୍ମ ଗ୍ରହଣ କରିଥିଲେ । ଗ୍ରାମ ବିଦ୍ୟାଳୟରେ ତାଙ୍କର ପ୍ରାଥମିକ ଶିକ୍ଷାଲାଭ ହୋଇଥିଲା ।

୧୮୯୯ରେ ସେ ପୁରୀ ଜିଲ୍ଲା ସ୍କୁଲ୍‌ରେ ନାମ ଲେଖାଇଥିଲେ । ୧୯୦୯ରେ ସେ ବି.ଏ. ପାଶ୍ କଲେ ଏବଂ ତା'ପରେ ଏମ୍.ଏ. ଓ ବି.ଏଲ୍ ଡିଗ୍ରୀ ନିମନ୍ତେ କଲିକତା ଯାଇଥିଲେ । ୧୯୧୧ରେ କଲିକତାରୁ ପ୍ରତ୍ୟାବର୍ତ୍ତନ ପରେ ପଣ୍ଡିତ ନୀଳକଂଠ ସତ୍ୟବାଦୀ ବିଦ୍ୟାଳୟରେ ଜଣେ ଶିକ୍ଷକ ରୂପେ ଯୋଗଦେଇଥିଲେ । ପରେ ସେ ଦୀର୍ଘକାଳ ପର୍ଯ୍ୟନ୍ତ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରିଥିଲେ । ଏହାପରେ ସେ ଓଡ଼ିଆ ଓ ଦର୍ଶନତତ୍ତ୍ୱରେ ପ୍ରଫେସର ରୂପେ ଯୋଗ ଦେଇଥିଲେ କିନ୍ତୁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାକୁ ସେ ଏହି ବୃତ୍ତି ତ୍ୟାଗ କରିଥିଲେ । ସେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଜଣେ କାର୍ଯ୍ୟକାରୀ ସଦସ୍ୟ ଏବଂ ସର୍ବଭାରତୀୟ କଂଗ୍ରେସ କମିଟିର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ । ସମ୍ବଲପୁରରୁ ପ୍ରକାଶ ପାଉଥିବା 'ସେବା' ନାମକ ଖବରକାଗଜର ସେ ସମ୍ପାଦନା କରୁଥିଲେ । ସମ୍ବଲପୁରରେ ନଅ ମାସ ରହିବା ପରେ ସେ ଶ୍ରୀରାମଚନ୍ଦ୍ରପୁର ପ୍ରତ୍ୟାବର୍ତ୍ତନ କରିଥିଲେ । ବ୍ରିଟିଶ୍ ବିରୋଧୀ କାର୍ଯ୍ୟକଳାପ ଅଭିଯୋଗରେ ସେ ୧୯୨୨ ମସିହାରେ ଗିରଫ ହୋଇଥିଲେ ଏବଂ ହଜାରିବାଗ୍ ଜେଲ୍‌ରେ ୬ ମାସ ବନ୍ଦୀ ଜୀବନ ବିତାଇଥିଲେ । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହ ବିଚାରବିମର୍ଶ ପରେ ସେ ବିଧାନସଭା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ । ୧୯୨୩ରେ ସେ ସେଣ୍ଟ୍ରାଲ୍ ଆସେମ୍ବ୍ଲିର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ । ୧୯୨୬ରେ ସେ ସିମିଳା କନ୍‌ଫେରେନ୍ସରେ ଅଂଶଗ୍ରହଣ କରିଥିଲେ । ୧୯୨୮ ମସିହାରେ, ପଣ୍ଡିତ ଗୋପବନ୍ଧୁଙ୍କ ମୃତ୍ୟୁ ପରେ ସେ ଓଡ଼ିଶାରେ କଂଗ୍ରେସର ନେତୃତ୍ୱ ଭାର ହାତକୁ ନେଇଥିଲେ । ଲାହୋର କଂଗ୍ରେସ ଅଧିବେଶନର ନିଷ୍ପତ୍ତି ଅନୁଯାୟୀ ସେ ସେଣ୍ଟ୍ରାଲ୍ ଆସେମ୍ବ୍ଲିରୁ ଇସ୍ତଫା ଦେଇଥିଲେ ଓ 'ଲବଣ ସତ୍ୟାଗ୍ରହ'ରେ ଯୋଗ ଦେଇ ୬ ମାସ ପର୍ଯ୍ୟନ୍ତ ଜେଲ୍ ଭୋଗିଥିଲେ। ସେ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଆରମ୍ଭ କରି ଦଳିତ ଶ୍ରେଣୀର ସେବାରେ ନିଜକୁ ନିୟୋଜିତ କରିଥିଲେ । ଦ୍ୱିତୀୟ ଥର ପାଇଁ ସେ ସେଣ୍ଟ୍ରାଲ୍ ଆସେମ୍ବ୍ଲିର ସଦସ୍ୟ ରୂପେ ମଧ୍ୟ ନିର୍ବାଚିତ ହୋଇଥିଲେ । ୧୯୩୩ରେ 'ନବ ଭାରତ' ନାମକ ଏକ ମାସିକ ଓଡ଼ିଆ ପତ୍ରିକାର ସମ୍ପାଦନା କରିଥିଲେ । ୧୯୩୪ରେ ମଧୁସୂଦନଙ୍କ ବିୟୋଗ ପରେ ସଂପୂର୍ଣ୍ଣ ଦାୟିତ୍ୱ ତାଙ୍କ କାନ୍ଧ ଉପରେ ପଡିଥିଲା ଏବଂ ମହାତ୍ମା ଗାନ୍ଧୀଙ୍କ ପ୍ରଥମ ପର୍ଯ୍ୟାୟ ଓଡ଼ିଶା ଗସ୍ତ କାର୍ଯ୍ୟକ୍ରମ ତାଙ୍କ ଦ୍ୱାରା ଆୟୋଜିତ ହୋଇଥିଲା ।

୧୯୩୬ ମସିହାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଲାଭ କଲା । ପଣ୍ଡିତ ନୀଳକଂଠ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ରୂପେ କାର୍ଯ୍ୟ କଲେ । ତାଙ୍କର ଅସାଧାରଣ ନେତୃତ୍ୱ ବଳରେ ୬୦ ଆସନ ମଧ୍ୟରୁ କଂଗ୍ରେସ ୩୬ ଗୋଟି ଆସନ ହାସଲ କରିପାରିଥିଲା ।

ନୀଳକଂଠଙ୍କ ଅଧ୍ୟକ୍ଷତାରେ ଓଡ଼ିଶାରେ ଉଚ୍ଚ ଶିକ୍ଷାର ପ୍ରସାର ନିମନ୍ତେ ଗୋଟିଏ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ସେ ନିଷ୍ପତ୍ତି ନେଇଥିଲେ । ଏଥି ନିମନ୍ତେ ଏକ କମିଟି ଗଠନ କରାଯାଇଥିଲା । ପରେ କମିଟିର ସୁପାରିଶ୍ ଅନୁଯାୟୀ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । ୧୯୫୧ରେ ସେ ଏକ ନୂତନ ଦଳ 'ସ୍ୱାଧୀନ ଜନ ସଂଘ'ରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୫୫ରେ ପଣ୍ଡିତ ଜବାହରଲାଲ୍ ନେହେରୁଙ୍କ ଅନୁରୋଧକ୍ରମେ ସେ କଂଗ୍ରେସରେ ଯୋଗ ଦେଇଥିଲେ । ସେହି ବର୍ଷ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଉପକୁଳପତି ରୂପେ ନିଯୁକ୍ତି ପାଇଥିଲେ । ୧୯୫୭ରେ ସେ ପୁନଃ ନିର୍ବାଚିତ ହେଲେ । ୧୯୫୭ ମସିହା ମେ ମାସରୁ ୧୯୬୧ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ ସେ ଓଡ଼ିଶା ବିଧାନସଭାର ବାଚସ୍ପତି ରହିଥିଲେ ।

୧୯୬୭ ମସିହା ନଭେମ୍ବର ୬ ତାରିଖରେ ସେ ପରଲୋକ ଗମନ କରିଥିଲେ । ତାଙ୍କର ଦେହାନ୍ତ ସହ ଓଡ଼ିଶା ଜଣେ ଦେଶପ୍ରେମୀ, ସ୍ୱାଧୀନତା ସଂଗ୍ରାମୀ, ଦକ୍ଷ ବିଧାୟକ, ସଂସ୍କାରକ ଓ କବିଙ୍କୁ ହରାଇଲା ।

## ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ

ପାରଳାଖେମୁଣ୍ଡିର ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ପୁତ୍ର ରୂପେ ୧୮୯୨ମସିହା ଅପ୍ରେଲ ମାସ ୨୬ ତାରିଖରେ ଜନ୍ମଲାଭ କରିଥିଲେ । ସେ ମାଡ୍ରାସରେ ଶିକ୍ଷାଲାଭ କରିଥିଲେ । ୧୯୧୩ ମସିହାରେ ସେ ଶାସନ ଭାର ଗ୍ରହଣ କରିଥିଲେ ।

ସେ ଥିଲେ ଜଣେ ପ୍ରଜାହିତୈଷୀ ଶାସକ, ଶିକ୍ଷା ଏବଂ ସଂସ୍କୃତିର ପୃଷ୍ଠପୋଷକ । ସେ ୧୯୧୪ ମସିହାରେ ପାରଳାଖେମୁଣ୍ଡିଠାରେ ଉତ୍କଳ ୟୁନିଅନ୍ କନ୍‌ଫେରେନ୍ସର ବାର୍ଷିକ ଅଧିବେଶନ ଆୟୋଜନ କରିଥିଲେ । ସେ ସରକାରଙ୍କ ଦ୍ୱାରା ୧୯୧୬ରେ ଭାରତୀୟ ପ୍ରତିରକ୍ଷାର ସ୍ଥଳସେନା ଅବୈତନିକ କମିଶନର ପଦବୀ ନିମନ୍ତେ ମନୋନୀତ ହୋଇଥିଲେ । ପାରଳାଖେମୁଣ୍ଡି ସହ ନୂଆପଡାକୁ ସଂଯୋଗ କରୁଥିବା ରେଳଲାଇନ୍ ସେ ନିର୍ମାଣ କରିଥିଲେ । ଗବେଷଣାରତ ଶିକ୍ଷାର୍ଥୀଙ୍କ ନିମନ୍ତେ ତାଙ୍କ ରାଜପ୍ରାସାଦରେ ଏକ ବଡ ପାଠାଗାର ପ୍ରତିଷ୍ଠା କରିଥିଲେ । ସେ ମାଡ୍ରାସ ଜଷ୍ଟିସ୍ ପାର୍ଟିର ଜଣେ ଗୁରୁତ୍ୱପୂର୍ଣ୍ଣ ସଦସ୍ୟ ଥିଲେ । ୧୯୨୭ରେ ରୟାଲ୍ ଏଗ୍ରିକଲ୍‌ଚରାଲ୍ କମିଶନର ସଦସ୍ୟ ହୋଇଥିଲେ । ସେ ମାଡ୍ରାସ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଦସ୍ୟ ଥିଲେ । ୧୯୩୦–୩୧ରେ ଲଣ୍ଡନରେ ଆୟୋଜିତ ଗୋଲ୍ ଟେବୁଲ ବୈଠକରେ ଓଡ଼ିଶାର ଦାବୀ ଉପସ୍ଥାପନ କରିଥିଲେ । ୧୯୩୪ରେ ଓଡ଼ିଶା ସହ ପାରଳାଖେମୁଣ୍ଡିର ମିଶ୍ରଣ ନିମନ୍ତେ ଯୁଗ୍ମ ସଂସଦୀୟ କମିଟି ନିକଟରେ ସେ ଦାବୀ ଉପସ୍ଥାପନ କରିଥିଲେ । ଓଡ଼ିଶା ସହ ପାରଳାଖେମୁଣ୍ଡିର ଓଡ଼ିଆ ଭାଷାଭାଷୀ ଅଂଚଳର ମିଶ୍ରଣ ସହ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ନିମନ୍ତେ କର୍ତ୍ତୃପକ୍ଷଙ୍କ ନିକଟରେ ସ୍ମାରକପତ୍ର ଦାଖଲ ପୂର୍ବକ ଏଥିପାଇଁ ଦୃଢ ଭାବେ ଯୁକ୍ତି ଉପସ୍ଥାପନ କରିଥିଲେ । ୧୯୩୭ରେ ଓଡ଼ିଶାରେ ଅଣ–କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ତାଙ୍କର ପ୍ରଶଂସନୀୟ କାର୍ଯ୍ୟକୁ ସ୍ୱୀକୃତି ଦେଇ ୧୯୩୬ ମସିହାରେ ସରକାର ତାଙ୍କୁ 'ମହାରାଜା' ଉପାଧିରେ ଭୂଷିତ କରିଥିଲେ । ୧୯୪୧ ମସିହା ନଭେମ୍ବରରେ ମନ୍ତ୍ରିମଣ୍ଡଳ ଗଠନ ନିମନ୍ତେ ମହାରାଜା ଆମନ୍ତ୍ରଣ ପାଇଥିଲେ ଓ ମୁଖ୍ୟମନ୍ତ୍ରିତ୍ୱ ଭାର ଗ୍ରହଣ କରିଥିଲେ । ୧୯୪୭ରୁ ୧୯୫୦ ପର୍ଯ୍ୟନ୍ତ ଭାରତର ସମ୍ବିଧାନ ସଭାର ସଦସ୍ୟ ହୋଇଥିଲେ । ଲଣ୍ଡନସ୍ଥିତ ରୟାଲ୍ ସୋସାଇଟି ଅଫ୍ ଆର୍ଟସ୍ ଏବଂ ରୟାଲ୍ ଏସିଆଟିକ୍ ସୋସାଇଟିର ଆଜୀବନ ସଦସ୍ୟ ଥିଲେ । ସେ ମଧ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟର ଆଜୀବନ ସଦସ୍ୟ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଏଲ୍.ଏଲ୍.ଡି ଡିଗ୍ରୀରେ ସମ୍ମାନିତ ହୋଇଥିଲେ । ଓଡ଼ିଶାର ଏହି ବରପୁତ୍ର ୧୯୭୪ ମସିହା ମେ ମାସ ୨୫ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।



## ଡକ୍ଟର ହରେକୃଷ୍ଣ ମହତାବ

ଡକ୍ଟର ହରେକୃଷ୍ଣ ମହତାବ ଥିଲେ କୃଷ୍ଣ ଚରଣ ଦାସ ଓ ତୋହଫା ଦେବୀଙ୍କ ସୁପୁତ୍ର । ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଆଗରପଡାଠାରେ ୧୮୯୯ ମସିହା ନଭେମ୍ବର ମାସ ୨୧ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ଭଦ୍ରକ ଉଚ୍ଚ ବିଦ୍ୟାଳୟରୁ ମାଟ୍ରିକୁଲେସନ୍ ପରେ ସେ ଉଚ୍ଚ ଶିକ୍ଷା ନିମନ୍ତେ କଟକ ରେଭେନ୍ସା କଲେଜରେ ଯୋଗ ଦେଇଥିଲେ । ୧୯୨୧ ମସିହାରେ ଜାତୀୟ ମୁକ୍ତି ଆନ୍ଦୋଳନ ଆଡକୁ ସ୍ୱତଃ ଆକର୍ଷିତ ହେବାରୁ ଏହା ଅସଂପୂର୍ଣ୍ଣ ରହିଥିଲା । ଏହାପରେ ତାଙ୍କ ଜୀବନ ପାଲଟିଥିଲା ଦେଶର ସ୍ୱାଧୀନତା ପାଇଁ ସଂଗ୍ରାମ ଓ ଉତ୍ସର୍ଗର ଗାଥା ।

୧୯୨୩ ମସିହାରେ ସେ ବାଲେଶ୍ୱରଠାରେ ସାପ୍ତାହିକୀ 'ପ୍ରଜାତନ୍ତ୍ର' ଆରମ୍ଭ କରିଥିଲେ । ୧୯୨୨ ମସିହାରେ ରାଜଦ୍ରୋହ ଅଭିଯୋଗରେ ସେ ପ୍ରଥମ ଥର ପାଇଁ କାରାବରଣ କରିଥିଲେ । ୧୯୨୪ ମସିହାରେ ବିହାର ଓ ଓଡ଼ିଶା କାଉନ୍‌ସିଲ୍‌ର ସଦସ୍ୟ ମଧ୍ୟ ଥିଲେ । ୧୯୩୦ ମସିହାରେ ସେ ଲବଣ ସତ୍ୟାଗ୍ରହରେ ଯୋଗଦେଲେ ଓ କାରାବରଣ କଲେ । ୧୯୩୪ ମସିହାରେ ହରିଜନ ଆନ୍ଦୋଳନରେ ସେ ଅଂଶଗ୍ରହଣ କଲେ ଏବଂ ଓଡ଼ିଶାରେ ପ୍ରଥମ



ଥର ପାଇଁ ତାଙ୍କ ପୂର୍ବପୁରୁଷଙ୍କ ଦ୍ୱାରା ନିର୍ମିତ ମନ୍ଦିର ହରିଜନଙ୍କ ନିମନ୍ତେ ଖୋଲିଦେଇଥିଲେ । ୧୯୩୮ ମସିହାରେ ସେ ଷ୍ଟେଟ୍ ପିପୁଲ୍ସ୍ ଇନ୍‌କ୍ୱାରୀ କମିଟିର ସଭାପତି ହୋଇଥିଲେ ଓ ଶାସକ 'ସନନ୍ଦ' ରଦ୍ଦ କରିବା ଏବଂ ଓଡ଼ିଶା ପ୍ରଦେଶ ସହ ଦେଶୀୟ ରାଜ୍ୟଗୁଡିକର ମିଶ୍ରଣ ନିମନ୍ତେ ସୁପାରିଶ କରିଥିଲେ । ସେ ୧୯୪୧ ମସିହାରେ ଅସହଯୋଗ ଆନ୍ଦୋଳନ ଓ ୧୯୪୨ ମସିହାରେ 'ଭାରତ ଛାଡ' ଆନ୍ଦୋଳନରେ ଅଂଶଗ୍ରହଣ କରି କାରାବରଣ କରିଥିଲେ । ଡକ୍ଟର ହରେକୃଷ୍ଣ ମହତାବ ୧୯୪୬ରୁ ୧୯୫୦ ମସିହା ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ୧୯୫୦ରୁ ୧୯୫୨ ପର୍ଯ୍ୟନ୍ତ କେନ୍ଦ୍ର ବାଣିଜ୍ୟ ଓ ଶିଳ୍ପ ମନ୍ତ୍ରୀ, ୧୯୫୨ ମସିହାରେ ପାର୍ଲାମେଣ୍ଟରେ କଂଗ୍ରେସ ଦଳର ମହାସଚିବ, ୧୯୫୫ ମସିହାରୁ ୧୯୫୬ ମସିହା ପର୍ଯ୍ୟନ୍ତ ବମ୍ବେର ରାଜ୍ୟପାଳ ହେବା ସହ, ୧୯୫୬ରେ ରାଜ୍ୟପାଳ ପଦବୀରୁ ଇସ୍ତଫା ଦେଇ ୧୯୫୬ରୁ ୧୯୬୦ ପର୍ଯ୍ୟନ୍ତ ପୁନର୍ବାର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ପୂର୍ବତନ ଦେଶୀୟ ରାଜ୍ୟଗୁଡିକର ଏକତ୍ରୀକରଣ ଓ ମିଶ୍ରଣ, ଭୁବନେଶ୍ୱରଠାରେ ରାଜ୍ୟର ରାଜଧାନୀ ପ୍ରତିଷ୍ଠା, ବହୁମୁଖୀ ହୀରାକୁଦ ବନ୍ଧ ପ୍ରକଳ୍ପର ମଂଜୁରୀ ଓ ନିର୍ମାଣ ଦିଗରେ ତାଙ୍କ ପ୍ରମୁଖ ଭୂମିକା ଯୋଗୁଁ ଡକ୍ଟର ମହତାବ ବାସ୍ତବରେ ଆଧୁନିକ ଓଡ଼ିଶାର ସ୍ଥପତି ରୂପେ ପରିଗଣିତ ହୁଅନ୍ତି । ୧୯୬୨ ମସିହାରେ ସେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ସେ ମଧ୍ୟ ୧୯୬୭, ୧୯୭୧ ଏବଂ ୧୯୭୪ ମସିହାରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ।



ଡକ୍ଟର ମହତାବ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ପ୍ରତିଷ୍ଠା କରିଥିଲେ ଓ ଏହା ଆଜି ପର୍ଯ୍ୟନ୍ତ ମଧ୍ୟ ଦୈନିକ 'ପ୍ରଜାତନ୍ତ୍ର' ଏବଂ ମାସିକ 'ଝଙ୍କାର' ପ୍ରକାଶ କରିଆସୁଛି । ଏହାର ପ୍ରତିଷ୍ଠାଠାରୁ ସେ ପ୍ରକାଶନର ମୁଖ୍ୟ ସଂପାଦକ ରହିଆସିଥିଲେ । ଦୁଇଗୋଟି ଅବଧି ନିମନ୍ତେ ସେ ଓଡ଼ିଶା ସାହିତ୍ୟ ଅକାଦେମୀ ଓ ସଂଗୀତ ନାଟକ ଅକାଦେମୀର ଅଧ୍ୟକ୍ଷ ଥିଲେ । ସେ ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍‌ର ସ୍ଥାୟୀ ସଦସ୍ୟ ମଧ୍ୟ ଥିଲେ । ସେ ଜଣେ ଅନନ୍ୟ ଐତିହାସିକ ଓ ଉଭୟ ଇଂରାଜୀ ତଥା ଓଡ଼ିଆ ଭାଷାରେ ଜଣେ ଲେଖକ ଥିଲେ । ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଦ୍ୱାରା ସମ୍ମାନଜନକ ଡକ୍ଟରେଟ୍ ଡିଗ୍ରୀ, ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ସାହିତ୍ୟରେ ଡକ୍ଟରେଟ୍ ଡିଗ୍ରୀ ଓ ସାଗର ବିଶ୍ୱବିଦ୍ୟାଳୟ ଦ୍ୱାରା ଆଇନ୍‌ରେ 'ଡକ୍ଟରେଟ୍' ଉପାଧି ଲାଭ କରିଥିଲେ ।

ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱର ଯଥାର୍ଥତା ପ୍ରତିପାଦିତ କରି ସେ 'ଓଡ଼ିଶା ଇତିହାସ' ଏବଂ 'ଶେଷର ଆରମ୍ଭ' (ବିଗିନିଙ୍ଗ ଅଫ୍ ଦି ଏଣ୍ଡ) ରଚନା ସହ ଜଣେ ସୁଲେଖକର ମାନ୍ୟତା ହାସଲ କରିଥିଲେ । ଏତଦ୍ ବ୍ୟତୀତ, ସେ ମଧ୍ୟ ଅନେକ ପ୍ରବନ୍ଧ, ନାଟକ ଓ କବିତା ରଚନା କରିଥିଲେ, ଯେଉଁଗୁଡିକ ସାହିତ୍ୟିକ ମୂଲ୍ୟ ଦୃଷ୍ଟିରୁ ବେଶ୍ ପ୍ରଶଂସିତ । ଦୈନିକ ପ୍ରଜାତନ୍ତ୍ରରେ ପ୍ରକାଶିତ ତାଙ୍କର ଲୋକପ୍ରିୟ ସ୍ତମ୍ଭ 'ଗାଁ ମଜଲିସ୍' ୧୯୮୩ ମସିହାରେ କେନ୍ଦ୍ର ସାହିତ୍ୟ ଅକାଦେମୀ ପୁରସ୍କାର ଲାଭ କରିଥିଲା ।

ଡକ୍ଟର ହରେକୃଷ୍ଣ ମହତାବ ଥିଲେ ଜଣେ ସଫଳ ରାଜନୈତିକ ନେତା । ସ୍ୱାଧୀନତା ଓ ପରବର୍ତ୍ତୀ କାଳରେ ବର୍ଷ ବର୍ଷର ସାଧନା ଦ୍ୱାରା ରାଜ୍ୟର ଜନସାଧାରଣଙ୍କୁ ନେତୃତ୍ୱ ଦେଇ ଡ. ମହତାବ ସେସମୟରେ ଜଣେ ତୁଙ୍ଗ ବ୍ୟକ୍ତିତ୍ୱ ରୂପେ ଉଭା ହୋଇଥିଲେ । ଏହି ବରପୁତ୍ର ୧୯୮୭ ମସିହା ଜାନୁୟାରୀ ମାସ ୨ ତାରିଖରେ ପରଲୋକ ଗମନ କରିଥିଲେ ।

## ରାଜା ବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ ଦେବ

୧୯୨୦ରୁ ୧୯୩୦ ମସିହା ମଧ୍ୟରେ ଅନେକ ବିଶିଷ୍ଟ ନେତୃମଣ୍ଡଳୀଙ୍କ ଉଲ୍ଲେଖନୀୟ ଅବଦାନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଫଳପ୍ରଦ ହୋଇପାରିଥିଲା । ଖଲ୍ଲିକୋଟ୍‌ର ରାଜା ବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ ଦେବ ସେମାନଙ୍କ ମଧ୍ୟରୁ ଜଣେ । ୧୯୦୦ ମସିହା ଜାନୁୟାରୀ ମାସ ୧୩ ତାରିଖରେ ସେ ରାଜା ହରିହର ମର୍ଦ୍ଦରାଜଙ୍କ ଔରସରୁ ରାଣୀ କନକ ମଂଜରୀ ଦେବୀଙ୍କ କୋଳ ମଣ୍ଡନ କରିଥିଲେ । ଆଗାମୀ ଦିନରେ ଓଡ଼ିଶାର ଭବିଷ୍ୟତ ନିର୍ମାଣ ସକାଶେ ତାଙ୍କ ଜନ୍ମ ବିଧିନିର୍ଦ୍ଦିଷ୍ଟ ଥିଲା ।

ଶୈଶବରେ ତାଙ୍କ ଡାକ ନାମ ଥିଲା ଏରିକ୍ । ମହିଳା ରାଜ୍ୟପାଳ ଏଫ୍.ହାର୍ଭେ ଡୁନ୍‌ଙ୍କ ତତ୍ତ୍ୱାବଧାନରେ ସେ ଲାଳିତପାଳିତ ହୋଇଥିଲେ । ୧୯୦୯ ମସିହା ଜୁଲାଇ ୨୦ ତାରିଖରେ ସେ ତାଙ୍କର ପିତା ରାଜା ହରିହର ମର୍ଦ୍ଦରାଜ ଦେବଙ୍କୁ ହରାଇଥିଲେ । ପରେ ତାଙ୍କୁ ନେୟୁଇଙ୍ଗଟନ୍‌ଠାରେ ସ୍କୁଲ୍ ଶିକ୍ଷା ନିମନ୍ତେ ମାଡ୍ରାସ ପଠାଯାଇଥିଲା । ନିଜ ରାଜ୍ୟର ଦାୟିତ୍ୱ ନେବାର ଯୋଗ୍ୟତା ବୟସ ପର୍ଯ୍ୟନ୍ତ ସେ ଖ୍ରୀଷ୍ଟିଆନ୍ କଲେଜ୍‌ରେ ଅଧ୍ୟୟନ କରିଥିଲେ । ସେ ୧୯୨୧ ମସିହା ଜାନୁୟାରୀ ୧୪ ତାରିଖରେ ଖଲ୍ଲିକୋଟ୍ ରାଜସିଂହାସନ ଆରୋହଣ କରିଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ନିମନ୍ତେ ତାଙ୍କର ଅବିରତ ଉଦ୍ୟମର ପ୍ରଥମ ପଦକ୍ଷେପ ସ୍ୱରୂପ ସେ ୧୯୨୪ରେ ଗଠିତ ଫିଲିପ୍-ଡଫ୍ କମିଟିକୁ ପ୍ରୋକ୍ତ ଉଦ୍ଦେଶ୍ୟରେ ପ୍ରଭାବିତ କରିପାରିଥିଲେ । ମିଷ୍ଟର ସି.ଏଲ୍.ଫିଲିପ୍ ଏବଂ ମିଷ୍ଟର ଏ.ସି.ଡଫ୍ ୧୯୨୪ ମସିହା ଡିସେମ୍ବର ମାସ ୧୭ ତାରିଖରୁ ୨୧ ତାରିଖ ପର୍ଯ୍ୟନ୍ତ ରାଜା ସାହେବଙ୍କ ଅତିଥି ହୋଇ ରମ୍ଭା ରାଜପ୍ରାସାଦରେ ଅବସ୍ଥାନ କରିଥିଲେ । ଖଲ୍ଲିକୋଟ୍‌ଗଡରେ ଏକ ବିଶାଳ ଜନ ସମାବେଶ ଅନୁଷ୍ଠିତ ହୋଇଥିଲା ଏବଂ ଏଥିରେ ପ୍ରଭାବିତ ହୋଇ କମିଟି ଓଡ଼ିଶାର ମିଶ୍ରଣ ସପକ୍ଷରେ ନିଜର ରିପୋର୍ଟ ପ୍ରଦାନ କରିଥିଲେ ।

ତେବେ ପରେ ଗଠିତ ଓ'ଡୋନେଲ୍ କମିଶନ୍ ଏକ ଅତ୍ୟନ୍ତ ନିରାଶାଜନକ ରିପୋର୍ଟ ପ୍ରଦାନ କରିଥିଲା । କିନ୍ତୁ ଏହା ବିରୁଦ୍ଧରେ ରାମଚନ୍ଦ୍ର ମର୍ଦ୍ଦରାଜ ମାଡ୍ରାସ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ବକ୍ତବ୍ୟ ରଖିଥିଲେ । ୧୯୩୨ ମସିହା ଅଗଷ୍ଟ ମାସ ୨୧ ତାରିଖରେ ଉତ୍କଳ ୟୁନିଅନ୍ କନ୍‌ଫରେନ୍ସର ଏକ ସ୍ୱତନ୍ତ୍ର ଆଲୋଚନାକୁ ଉଦ୍‌ଘାଟନ କରି ସେ ଫିଲିପ୍-ଡଫ୍ କମିଟି ସୁପାରିଶ୍ ଆଧାରରେ ଓଡ଼ିଆ ଭାଷାଭାଷୀ ଅଂଚଳର ମିଶ୍ରଣ ଉପରେ ଗୁରୁତ୍ୱ ଦେଇଥିଲେ ।

ରାଜା ସାହେବ ଲଣ୍ଡନରେ ଆୟୋଜିତ ତୃତୀୟ ଗୋଲ୍‌ଟେବୁଲ ବୈଠକରେ ଯୋଗ ଦେଇ ମିଶ୍ରଣ ସପକ୍ଷରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଥିଲେ । ନିଜର ପ୍ରତିବେଦନକୁ ପରିବର୍ଦ୍ଧିତ କରିବାକୁ ଯାଇ ସେ ୧୯୩୩ ମସିହା ଜାନୁୟାରୀ ୧୨ ତାରିଖରେ ପ୍ରସିଦ୍ଧ 'ଓଡ଼ିଶା ବାଙ୍କ୍ୟୁଏଟ୍' ଆୟୋଜନ କରିଥିଲେ ଏବଂ ସେଠାରେ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆ ସାର୍ ସାମୁଏଲ୍ ହୋର୍‌ଙ୍କୁ ପ୍ରଭାବିତ କରିପାରିଥିଲେ । ଫଳତଃ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସପକ୍ଷରେ ସେ ସାର୍ ସାମୁଏଲ୍‌ଙ୍କ ଅନୁମୋଦନ ଲାଭ କରିବାରେ ସଫଳ ହୋଇଥିଲେ ।

ତୃତୀୟ ଗୋଲ୍‌ଟେବୁଲ୍ ବୈଠକରେ ହୋଇଥିବା ଆଲୋଚନାର ନିର୍ଯ୍ୟାସ ଅନୁଯାୟୀ ଏହି ବିଷୟ ଉପରେ ଦୃଷ୍ଟିପାତ କରିବା ନିମନ୍ତେ ଏକ ଯୁଗ୍ମ ସଂସଦୀୟ କମିଟି ଗଠନ କରାଯାଇଥିଲା । ଶେଷରେ ଗଭର୍ଣ୍ଣମେଣ୍ଟ୍ ଅଫ୍ ଇଣ୍ଡିଆ ଆକ୍ଟ, ୧୯୩୫ ଗୃହୀତ ହେଲା ଓ ଏହି ଅଧିନିୟମର ଧାରା ୨୮୯ ବଳରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ପଥ ପ୍ରଶସ୍ତ ହେଲା ।

ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ ଥିଲେ ଜଣେ ସୃଜନଶୀଳ ସକ୍ରିୟ ନେତା । ତାଙ୍କର ବ୍ୟାପକ ପ୍ରାଶାସନିକ ଓ ରାଜନୈତିକ ଅଭିଜ୍ଞତା ଏବଂ ଦକ୍ଷତା ତାଙ୍କ ସହିତ କାର୍ଯ୍ୟ କରିଥିବା ଲୋକଙ୍କ ପାଇଁ ଆତ୍ମଶକ୍ତି ଓ ପ୍ରେରଣାର ଉତ୍ସ ଥିଲା । ସେ ଓଡ଼ିଶାର ଜନସାଧାରଣଙ୍କ ନିମନ୍ତେ ନିଜର ଜୀବନକୁ ସଂପୂର୍ଣ୍ଣ ରୂପେ ଉତ୍ସର୍ଗ କରିଥିଲେ ଏବଂ ଜନତାଙ୍କ ମଙ୍ଗଳ ପାଇଁ କାର୍ଯ୍ୟ କରୁଥିଲେ । ୧୯୬୩ ମସିହା ଜାନୁୟାରୀ ମାସ ୨୩ ତାରିଖରେ ରାଜା ସାହେବ ତାଙ୍କର ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

## ବିଜୟାନନ୍ଦ ପଟ୍ଟନାୟକ

ବିଜୟାନନ୍ଦ ପଟ୍ଟନାୟକଙ୍କୁ ବିଜୁ ପଟ୍ଟନାୟକ ନାମରେ ସମସ୍ତେ ଜାଣନ୍ତି । ୧୯୧୬ ମସିହା ମାର୍ଚ୍ଚ ମାସ ୫ ତାରିଖରେ ତାଙ୍କର ଜନ୍ମ । ପିତା ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ଶିକ୍ଷା ହେଲା ବି.ଏସ୍‌ସି. ଷ୍ଟାଣ୍ଡାର୍ଡ । ଶ୍ରୀମତୀ ଜ୍ଞାନ ପଟ୍ଟନାୟକଙ୍କ ସହ ଶୁଭ ପରିଣୟ । ଦୁଇଟି ପୁତ୍ର ଓ ଗୋଟିଏ କନ୍ୟା ସନ୍ତାନର ଜନକ । ପ୍ରାରମ୍ଭିକ ବୃତ୍ତି ଥିଲା ବ୍ୟବସାୟ । ବିମାନ ଚାଳନା ଓ ଶିଳ୍ପରେ ଅଭିରୁଚି । ଜୀବନ କାଳରେ ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା, ସୋଭିଏତ୍ ଋଷିଆ, ଫ୍ରାନ୍ସ, ଇଣ୍ଡୋନେସିଆ ସମେତ ଅନ୍ୟାନ୍ୟ ଦେଶକୁ ଯାତ୍ରା । ରାଜନୈତିକ କାର୍ଯ୍ୟକ୍ରମ ଓ ବାଲ୍ୟକାଳରୁ ଦୁଃସାହସିକ ଜୀବନଚର୍ଯ୍ୟା । ଛାତ୍ର ଜୀବନରେ

କଟକଠାରୁ ପେଶାୱାର୍ ପର୍ଯ୍ୟନ୍ତ ସାଇକେଲ୍‌ରେ ଦୁଃସାହସିକ ଯାତ୍ରା । ଇଣ୍ଡିଆନ୍ ନାସ୍‌ନାଲ୍ ଏୟାର୍‌ୱେଜ୍‌ରେ ଯୋଗଦାନ ଓ ଏହାର ମୁଖ୍ୟ ପାଇଲଟ୍ ନିଯୁକ୍ତ । 'ଭାରତ ଛାଡ଼' ଆନ୍ଦୋଳନ ସମୟରେ ଆତ୍ମଗୋପନରେ ଥିବା ନେତାଙ୍କୁ ସହାୟତା, ୩୦ ମାସ ପର୍ଯ୍ୟନ୍ତ କାରାବାସ । ଇଣ୍ଡୋନେସିଆ ମୁକ୍ତି ଆନ୍ଦୋଳନ ସମୟରେ ନିଜ ଜୀବନକୁ ବାଜି ଲଗାଇ ଇଣ୍ଡୋନେସିଆର ନେତୃବୃନ୍ଦଙ୍କୁ ଉଡାଜାହାଜରେ ନୂଆଦିଲ୍ଲୀ ଆଣିପାରିଥିଲେ । ୧୯୪୭ ମସିହାରେ ପାକିସ୍ଥାନର ଭାରତ ଆକ୍ରମଣ ସମୟରେ ସେ କାଶ୍ମୀରରେ ପ୍ରଥମ ଭାରତୀୟ ଉଡାଜାହାଜ ଅବତରଣ କରିଥିଲେ । ଓଡ଼ିଶା ପ୍ରତ୍ୟାବର୍ତ୍ତନ ପରେ ସେ ଶିଳ୍ପ ପ୍ରଗତିକୁ ଦୃଷ୍ଟିରେ ରଖି ଅନେକ ଶିଳ୍ପ ପ୍ରତିଷ୍ଠା କରିଥିଲେ । ଗୋଟିଏ ଅବଧି ନିମନ୍ତେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଓ ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟ ଥିଲେ । ୧୯୬୧ ମସିହାର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ତାଙ୍କ ନେତୃତ୍ୱରେ କଂଗ୍ରେସ ଦଳର ଅଭୂତପୂର୍ବ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ହାସଲ ହୋଇପାରିଲା । ୧୯୬୧ରୁ ୧୯୬୩ ମସିହା ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଥିଲେ ଓ 'କାମରାଜ' ଯୋଜନାରେ ଇସ୍ତଫା ଦେଇଥିଲେ । କଳିଙ୍ଗ ଏୟାର୍‌ୱେଜ୍ ପ୍ରତିଷ୍ଠା ତାଙ୍କର କୃତିତ୍ୱ ମଧ୍ୟରୁ ଅନ୍ୟତମ । ସେ ବିଜ୍ଞାନ ପୁରସ୍କାର ପ୍ରଦାନ ଲକ୍ଷ୍ୟରେ ୟୁନେସ୍କୋକୁ ୧,୦୦୦ ପାଉଣ୍ଡ ପୁରସ୍କାର ରାଶି ପ୍ରଦାନ କରିଥିଲେ । ୧୯୫୨, ୧୯୫୭, ୧୯୬୧ ମସିହାରେ ଯଥାକ୍ରମେ ଜଗନ୍ନାଥପ୍ରସାଦ, ସୋରଡା (ଗଂଜାମ) ଏବଂ ଚୌଦ୍ୱାର (କଟକ)ରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ପୁନଶ୍ଚ, ୧୯୭୧ ଏବଂ ୧୯୭୪ ମସିହାରେ ରାଜନଗର (କଟକ)ରୁ ନିର୍ବାଚିତ ହୋଇଥିଲେ। ୧୯୭୧ ରୁ ୧୯୭୨ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କ ଯୋଜନା ବୋର୍ଡର ଅଧକ୍ଷ ଥିଲେ । ୧୯୭୧ ମସିହା ଅକ୍ଟୋବରରେ ସଂଘଟିତ ମହାବାତ୍ୟାଜନିତ ପ୍ରଭୂତ କ୍ଷୟକ୍ଷତି ସମୟରେ ପୀଡିତ ଜନତା ବିଶେଷତଃ ରାଜନଗରବାସୀଙ୍କୁ ବହୁମୂଲ୍ୟ ସେବା ଓ ସହାୟତା ଯୋଗାଇବାରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ୧୯୭୭ ମସିହାରେ ସଂସଦକୁ ନିର୍ବାଚିତ ଏବଂ ୧୯୭୭ରୁ ୧୯୭୯ ମସିହା ପର୍ଯ୍ୟନ୍ତ କେନ୍ଦ୍ରରେ କ୍ୟାବିନେଟ୍ ମନ୍ତ୍ରୀ ହୋଇଥିଲେ ।



୧୯୮୦ ମସିହାରେ କେନ୍ଦ୍ରାପଡା ସଂସଦୀୟ ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ୧୯୮୪ ଲୋକସଭା ନିର୍ବାଚନରେ କେନ୍ଦ୍ରାପଡା ସଂସଦୀୟ ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ପୁଣି ଥରେ ନିର୍ବାଚିତ ହୋଇଥିଲେ । ୧୯୮୫ ସାଧାରଣ ନିର୍ବାଚନରେ ଭୁବନେଶ୍ୱର ବିଧାନସଭା ଆସନରୁ ଓଡ଼ିଶା ବିଧାନ ସଭାକୁ ପୁନଶ୍ଚ ନିର୍ବାଚିତ ହୋଇଥିଲେ । କେନ୍ଦ୍ରାପଡା ସଂସଦୀୟ ଆସନରୁ ଇସ୍ତଫା ଦେଇ ଓଡ଼ିଶା ବିଧାନସଭାରେ ବିରୋଧୀ ଦଳ ନେତା ହୋଇଥିଲେ । ପୁନଶ୍ଚ, ୧୦ମ ଓଡ଼ିଶା ବିଧାନସଭା ନିର୍ବାଚନରେ ଭୁବନେଶ୍ୱର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୯୦ ମସିହାରେ ତାଙ୍କର ସକ୍ରିୟ ନେତୃତ୍ୱ ବଳରେ ଜନତା ଦଳ ଓଡ଼ିଶା ବିଧାନସଭାର ତିନି ଚତୁର୍ଥାଂଶ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା ଓ ଏହା ଥିଲା ଅଭୂତପୂର୍ବ । ସେ ସର୍ବସମ୍ମତିକ୍ରମେ ଓଡ଼ିଶା ବିଧାନସଭାରେ ଜନତା ଦଳର ନେତା ନିର୍ବାଚିତ ହୋଇଥିଲେ ଏବଂ ତାଙ୍କ ଜନ୍ମଦିନ ମାର୍ଚ୍ଚ ମାସ ୫ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ୧୯୯୫ ମସିହା ମାର୍ଚ୍ଚ ମାସରେ ପୁନଶ୍ଚ ଭୁବନେଶ୍ୱର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ବିରୋଧୀ ଦଳ ନେତା ପଦ ମଣ୍ଡନ କରିଥିଲେ । ପରେ ସେ ୧୯୯୬ ମସିହା ଜୁନ୍‌ରେ ଅନୁଷ୍ଠିତ ଲୋକସଭା ନିର୍ବାଚନରେ ଆସିକା ଏବଂ କଟକ ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରି ଉଭୟ ଆସନରୁ ନିର୍ବାଚିତ ହୋଇଥିଲେ । ଓଡ଼ିଶା ବିଧାନସଭାରୁ ଇସ୍ତଫା ଦେଇ ଆସିକା ଲୋକସଭା ନିର୍ବାଚନ ମଣ୍ଡଳୀରୁ ସେ ପ୍ରତିନିଧିତ୍ୱ କରିଥିଲେ । ଜଣେ କିମ୍ବଦନ୍ତୀ ପ୍ରବାଦପୁରୁଷ ଭାବେ ସୁବିଦିତ ଏହି ଜନପ୍ରିୟ ନେତା ୧୯୯୭ ମସିହା ଅପ୍ରେଲ ମାସ ୧୭ ତାରିଖରେ ନୂଆଦିଲ୍ଲୀର ଏସ୍କର୍ଟ ହସ୍‌ପିଟାଲ୍‌ରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

# ଓଡ଼ିଶା ଇତିହାସର କାଳାନୁକ୍ରମିକ ବିବରଣୀ

| | |
|---|---|
| ଖ୍ରୀଷ୍ଟପୂର୍ବ ୨୬୧ – | କଳିଙ୍ଗ ଯୁଦ୍ଧ । |
| ଖ୍ରୀଷ୍ଟପୂର୍ବ ୧୭୭ – | ରାଜା ଖାରବେଳଙ୍କ ରାଜ୍ୟାଭିଷେକ । |
| ଖ୍ରୀଷ୍ଟାବ୍ଦ ୬୦୦ – | ଗୌଡ ଦେଶ ରାଜା ଶଶାଂକଙ୍କ ଓଡ଼ିଶା ବିଜୟ । |
| ଖ୍ରୀଷ୍ଟାବ୍ଦ ୬୩୯ – | ହୁଏନ୍‌ସାଂଙ୍କ କଳିଙ୍ଗ, କଙ୍ଗୋଦ, କୋଶଳ ଏବଂ ଉଡ୍ର ପରିଭ୍ରମଣ । |
| ଖ୍ରୀଷ୍ଟାବ୍ଦ ୭୩୬ – | କ୍ଷେମଙ୍କର ଦେବଙ୍କ ଉଡ୍ର ଦେଶରେ ତୋଷାଳୀ ରାଜ୍ୟ ଓ ଗୁହେଶ୍ୱର ପାଟକ (ଯାଜପୁର)ଠାରେ ରାଜଧାନୀ ପ୍ରତିଷ୍ଠା । |
| ଖ୍ରୀଷ୍ଟାବ୍ଦ ୮୮୫ – | ପଶ୍ଚିମ ଓଡ଼ିଶାରେ ମହାଭାବଗୁପ୍ତ ଜନ୍ମେଜୟ (୧)ଙ୍କ ଦ୍ୱାରା ସୋମବଂଶୀ ଶାସନର ଆରମ୍ଭ ଓ ସୁବର୍ଣ୍ଣପୁର (ସୋନପୁର)ଠାରେ ରାଜଧାନୀ ପ୍ରତିଷ୍ଠା । |
| ଖ୍ରୀଷ୍ଟାବ୍ଦ ୧୦୭୮ – | କଳିଙ୍ଗରେ ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡଗଙ୍ଗ ଦେବ ସୋମବଂଶର ଶେଷ ରାଜା କର୍ଣ୍ଣ ଦେବଙ୍କୁ ପରାସ୍ତ କରି ଉତ୍କଳର ରାଜା ଭାବରେ ଅଭିଷିକ୍ତ । |
| ଖ୍ରୀଷ୍ଟାବ୍ଦ ୧୧୧୫ – | ପୁରୀଠାରେ ଜଗନ୍ନାଥ ମନ୍ଦିର ନିର୍ମାଣ ଆରମ୍ଭ । |
| ଖ୍ରୀଷ୍ଟାବ୍ଦ ୧୧୪୭ରୁ୧୧୫୬ – | କାମାର୍ଣ୍ଣବ ଦେବ ୭ଙ୍କ ଦ୍ୱାରା କଳିଙ୍ଗ ଶାସନ |
| ଖ୍ରୀଷ୍ଟାବ୍ଦ ୧୧୫୬ରୁ ୧୧୭୦ – | ରାଘବ ଦେବଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୧୭୦ରୁ ୧୧୯୪ – | ରାଜରାଜ ଦେବ –୨ଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୧୯୦ରୁ ୧୧୯୮ – | ଅନଙ୍ଗ ଭୀମଦେବ–୨ଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୧୯୮ରୁ ୧୨୧୧ – | ରାଜରାଜ ଦେବ–୩ଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୨୩୪ରୁ ୧୨୪୫ – | ଲାଙ୍ଗୁଳା ନରସିଂହ ଦେବଙ୍କ ଦ୍ୱାରା କୋଣାର୍କ ସୂର୍ଯ୍ୟ ମନ୍ଦିର ନିର୍ମାଣ । |
| ଖ୍ରୀଷ୍ଟାବ୍ଦ ୧୨୬୪ରୁ ୧୨୭୮ – | ଭାନୁ ଦେବ–୧ଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୨୭୮ରୁ ୧୩୦୫ – | ନରସିଂହ ଦେବ–୨ଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୩୦୬ରୁ ୧୩୨୮ – | ଭାନୁ ଦେବ–୨ଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୩୨୮ରୁ ୧୩୫୨ – | ନରସିଂହ ଦେବ–୩ଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୩୫୨ରୁ ୧୩୭୮ – | ଭାନୁ ଦେବ–୩ଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୩୭୮ରୁ ୧୪୧୪ – | ନରସିଂହ ଦେବ–୪ଙ୍କ ଦ୍ୱାରା କଳିଙ୍ଗ ଶାସନ । |

| | | |
|---|---|---|
| ଖ୍ରୀଷ୍ଟାବ୍ଦ ୧୪୧୪ରୁ ୧୪୩୪ | – | ଭାନୁ ଦେବ–୪ଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୪୩୫ରୁ ୧୪୬୭ | – | କପିଳେନ୍ଦ୍ର ଦେବଙ୍କ ଦ୍ୱାରା ଓଡ଼ିଶା ସାମ୍ରାଜ୍ୟ ପ୍ରତିଷ୍ଠା । |
| | – | ତାଙ୍କ ରାଜ୍ୟାଭିଷେକ ପରେ 'କପିଳାବ୍ଦ' ପ୍ରଚଳନ ଆରମ୍ଭ । |
| | – | ସୂର୍ଯ୍ୟବଂଶୀ ଶାସନର ପ୍ରତିଷ୍ଠା । |
| | – | ଏହି ସମୟ ମଧ୍ୟରେ ସାରଳା ଦାସଙ୍କ ଦ୍ୱାରା ଓଡ଼ିଆ ମହାଭାରତ ରଚନା । |
| ଖ୍ରୀଷ୍ଟାବ୍ଦ ୧୪୬୪ | – | କପିଳେନ୍ଦ୍ର ଦେବଙ୍କ ଦ୍ୱାରା ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ତ୍ରିଚୀନାପଲ୍ଲି ପର୍ଯ୍ୟନ୍ତ ରାଜ୍ୟଜୟ । |
| | – | ଗଜପତି ଗୌଡେଶ୍ୱର ନବକୋଟି କର୍ଣ୍ଣାଟୋତ୍କଳବର୍ଗେଶ୍ୱର ଉପାଧି ଧାରଣ । |
| ଖ୍ରୀଷ୍ଟାବ୍ଦ ୧୪୬୭ରୁ ୧୪୯୭ | – | ପୁରୁଷୋତ୍ତମ ଦେବଙ୍କ ଦ୍ୱାରା କଳିଙ୍ଗ ଶାସନ । |
| ଖ୍ରୀଷ୍ଟାବ୍ଦ ୧୪୯୭ରୁ ୧୫୪୦ | – | ପ୍ରତାପରୁଦ୍ର ଦେବଙ୍କ ଦ୍ୱାରା କଳିଙ୍ଗ ଶାସନ । |
| | – | ଶ୍ରୀଚୈତନ୍ୟ ଦେବଙ୍କ କଳିଙ୍ଗ ଆଗମନ । |
| ଖ୍ରୀଷ୍ଟାବ୍ଦ ୧୫୪୨ରୁ ୧୫୪୯ | – | ଗୋବିନ୍ଦ ବିଦ୍ୟାଧରଙ୍କ ଦ୍ୱାରା କଳିଙ୍ଗ ଶାସନ । |
| | – | କଳିଙ୍ଗରେ ଭୋଇ ରାଜବଂଶ ପ୍ରତିଷ୍ଠା । |
| ଖ୍ରୀଷ୍ଟାବ୍ଦ ୧୫୬୦ରୁ ୧୫୬୮ | – | ମୁକୁନ୍ଦ ଦେବଙ୍କ ଦ୍ୱାରା ଚାଲୁକ୍ୟ ରାଜବଂଶ ପ୍ରତିଷ୍ଠା । |
| | – | ଦୁର୍ଦ୍ଧର୍ଷ କଳାପାହାଡ ଦ୍ୱାରା କଳିଙ୍ଗର ବିଭିନ୍ନ ହିନ୍ଦୁ ମନ୍ଦିର ଧ୍ୱଂସ । |
| ଖ୍ରୀଷ୍ଟାବ୍ଦ ୧୫୬୮ | – | ସୁଲେମାନ କର୍‌ରାଣୀଙ୍କ ଦ୍ୱାରା ଓଡ଼ିଶା ଜୟ । |
| ଖ୍ରୀଷ୍ଟାବ୍ଦ ୧୫୯୦ | – | ମୋଗଲମାନଙ୍କ ଓଡ଼ିଶା ବିଜୟ ଆରମ୍ଭ । |
| | – | ଓଡ଼ିଶାର ସ୍ୱାଧୀନତା ସମାପ୍ତି । |
| ଖ୍ରୀଷ୍ଟାବ୍ଦ ୧୫୯୨ | – | ସୁବର୍ଣ୍ଣରେଖା ନିକଟରେ ମୋଗଲ ଏବଂ ଆଫ୍‌ଗାନମାନଙ୍କ ମଧ୍ୟରେ ପ୍ରଥମ ଯୁଦ୍ଧ, ସାରଙ୍ଗଗଡ ଦୁର୍ଗର ପତନ । |
| ଖ୍ରୀଷ୍ଟାବ୍ଦ ୧୫୯୩ | – | ମାନ୍ ସିଂହଙ୍କ ନିକଟରେ ଖୋର୍ଦ୍ଧା ରାଜାଙ୍କ ଆତ୍ମସମର୍ପଣ । |
| ଖ୍ରୀଷ୍ଟାବ୍ଦ ୧୬୧୧ରୁ୧୬୧୭ | – | ରାଜା ତୋଡରମଲ୍ଲଙ୍କ ଦ୍ୱାରା ଓଡ଼ିଶା ମୋଗଲବନ୍ଦୀ ଓ ଗଡଜାତ ଭାବରେ ବିଭକ୍ତ । |
| ଖ୍ରୀଷ୍ଟାବ୍ଦ ୧୬୧୭ | – | ସୁବେଦାର ମୁକରାମ ଖାନ୍‌ଙ୍କ ଖୋର୍ଦ୍ଧା ଆକ୍ରମଣ । |
| ଖ୍ରୀଷ୍ଟାବ୍ଦ ୧୬୨୫ | – | ବାଲେଶ୍ୱରର ପିପିଲିଠାରେ ଡଚ୍‌ମାନଙ୍କ ଦ୍ୱାରା ପ୍ରଥମ ବନ୍ଦୋବସ୍ତ ପ୍ରତିଷ୍ଠା । |
| ଖ୍ରୀଷ୍ଟାବ୍ଦ ୧୬୩୩ | – | ଇଷ୍ଟ ଇଣ୍ଡିଆ କମ୍ପାନୀ ଦ୍ୱାରା ବଙ୍ଗୋପସାଗର କୂଳରେ ଥିବା ହରିପୁର ନିକଟରେ ପ୍ରଥମ କମ୍ପାନୀ ପ୍ରତିଷ୍ଠା । |
| ଖ୍ରୀଷ୍ଟାବ୍ଦ ୧୬୬୦ରୁ ୧୬୬୭ | – | ଖାନ୍–ଇ–ଦୌରାନ୍‌ଙ୍କ ଦ୍ୱାରା ଓଡ଼ିଶାର ସୁବେଦାରୀ ଗ୍ରହଣ । |
| ଖ୍ରୀଷ୍ଟାବ୍ଦ ୧୬୭୧ | – | ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଓଡ଼ିଶାରେ ମୁକ୍ତ ବାଣିଜ୍ୟ କରିବା ପାଇଁ ଔରଙ୍ଗଦେବଙ୍କ ସମୟରେ ଅନୁମତି ପ୍ରଦାନ । |

| | | |
|---|---|---|
| ଖ୍ରୀଷ୍ଟାବ୍ଦ ୧୭୫୧ | – | ଓଡ଼ିଶାରେ ମରହଟ୍ଟାମାନଙ୍କ ଶାସନ ଆରମ୍ଭ । |
| ଖ୍ରୀଷ୍ଟାବ୍ଦ ୧୭୬୬ | – | ଇଷ୍ଟ୍ ଇଣ୍ଡିଆ କମ୍ପାନୀର ଗଞ୍ଜାମ ଅଧିକାର । |
| ଖ୍ରୀଷ୍ଟାବ୍ଦ ୧୮୦୩ | – | ମରହଟ୍ଟାମାନଙ୍କଠାରୁ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଦ୍ୱାରା ବାରବାଟି ଦୁର୍ଗ ଦଖଲ । |
| | – | ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଦ୍ୱାରା ଉତ୍ତର ଓଡ଼ିଶା ଦଖଲ । |
| ଖ୍ରୀଷ୍ଟାବ୍ଦ ୧୮୧୭ | – | ଖୋର୍ଦ୍ଧାରେ ପାଇକ ବିଦ୍ରୋହ । |
| ଖ୍ରୀଷ୍ଟାବ୍ଦ ୧୮୩୫ | – | ଘୁମୁସର ବିଦ୍ରୋହ । |
| ଖ୍ରୀଷ୍ଟାବ୍ଦ ୧୮୬୨ | – | ମେଜର ଇମ୍ପେଙ୍କ ନିକଟରେ ବୀର ସୁରେନ୍ଦ୍ର ସାଏଙ୍କ ଆତ୍ମସମର୍ପଣ । |
| ଖ୍ରୀଷ୍ଟାବ୍ଦ ୧୮୬୬ | – | ନ'ଅଙ୍କ ଦୁର୍ଭିକ୍ଷରେ ଓଡ଼ିଶାରେ ସଂଖ୍ୟାଧିକ ଜୀବନହାନି । |
| ଖ୍ରୀଷ୍ଟାବ୍ଦ ୧୮୮୨ | – | ଗୌରୀ ଶଙ୍କର ରାୟଙ୍କ ସମ୍ପାଦକତ୍ୱରେ 'ଉତ୍କଳସଭା' ଗଠିତ । |
| ଖ୍ରୀଷ୍ଟାବ୍ଦ ୧୮୯୫ | – | କଟକଠାରେ ଉତ୍କଳଗୌରବ ମଧୁସୂଦନଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ସଭାରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକର ମିଶ୍ରଣ ନିମନ୍ତେ ପ୍ରସ୍ତାବ ଗୃହୀତ । |
| ଖ୍ରୀଷ୍ଟାବ୍ଦ ୧୮୯୮ | – | ବଙ୍ଗଳା ବିଧାନସଭାକୁ ମଧୁବାବୁ ନିର୍ବାଚିତ । |
| ଖ୍ରୀଷ୍ଟାବ୍ଦ ୧୯୦୩ | – | କେନ୍ଦ୍ରୀୟ ସମ୍ମିଳନୀ ଆରମ୍ଭ । |
| ଖ୍ରୀଷ୍ଟାବ୍ଦ ୧୯୦୭ | – | ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକର ମିଶ୍ରଣ ନିମନ୍ତେ ରୟାଲ୍ କମିଶନଙ୍କୁ ଦାବିପତ୍ର ପ୍ରଦାନ । |
| ଖ୍ରୀଷ୍ଟାବ୍ଦ ୧୯୦୯ | – | ସତ୍ୟବାଦୀ ବନ ବିଦ୍ୟାଳୟର ପ୍ରତିଷ୍ଠା(୧୨ ଅଗଷ୍ଟ) । |
| ଖ୍ରୀଷ୍ଟାବ୍ଦ ୧୯୧୧ | – | ବଙ୍ଗଳା ରାଜ୍ୟରୁ ବିହାର ଏବଂ ଓଡ଼ିଶା ପୃଥକ । |
| ଖ୍ରୀଷ୍ଟାବ୍ଦ ୧୯୧୨ | – | ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ଗଠନ ବାବଦରେ ଆଲୋଚନା ନିମନ୍ତେ ବାଲେଶ୍ୱରଠାରେ ଜାତୀୟ ସମ୍ମିଳନୀ ଅନୁଷ୍ଠିତ । |
| ଖ୍ରୀଷ୍ଟାବ୍ଦ ୧୯୧୩ | – | ଓଡ଼ିଶା ଟେନାନ୍ସି ଆଇନ୍ ପାରିତ । |
| ଖ୍ରୀଷ୍ଟାବ୍ଦ ୧୯୧୪ | – | ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସମ୍ପାଦନାରେ ସତ୍ୟବାଦୀ (ସାକ୍ଷୀଗୋପାଳ)ରୁ ପ୍ରକାଶିତ ଏବଂ ଆଶା ପ୍ରେସ୍, ବ୍ରହ୍ମପୁରରେ ମୁଦ୍ରିତ ମାସିକ ପତ୍ରିକା 'ସତ୍ୟବାଦୀ'ର ଆରମ୍ଭ । |
| ଖ୍ରୀଷ୍ଟାବ୍ଦ ୧୯୧୫ | – | ବାଘା ଯତୀନ୍ଙ୍କ ଦେହାନ୍ତ । |
| ଖ୍ରୀଷ୍ଟାବ୍ଦ ୧୯୧୬ | – | ବାମଣ୍ଡା ସୁରତରଙ୍ଗିଣୀ ସାରସ୍ୱତ ସମିତି ପକ୍ଷରୁ ଫକୀର ମୋହନ ସେନାପତିଙ୍କୁ ଫେବୃଆରୀ ୭ ତାରିଖ ଦିନ 'ସରସ୍ୱତୀ' ଉପାଧି ପ୍ରଦାନ । |
| ଖ୍ରୀଷ୍ଟାବ୍ଦ ୧୯୧୭ | – | ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକର ମିଶ୍ରଣ ନିମନ୍ତେ ମଧୁବାବୁଙ୍କ ସମ୍ପାଦନାରେ 'ଦି ଓଡ଼ିଆ' ସମ୍ବାଦପତ୍ର ପ୍ରକାଶିତ। |

| | | |
|---|---|---|
| ଖ୍ରୀଷ୍ଟାବ୍ଦ ୧୯୧୮ | – | ସାକ୍ଷୀଗୋପାଳଠାରେ ସତ୍ୟବାଦୀ ପ୍ରେସ୍ ପ୍ରତିଷ୍ଠା । |
| ଖ୍ରୀଷ୍ଟାବ୍ଦ ୧୯୧୯ | – | ସାପ୍ତାହିକ ପତ୍ରିକା 'ସମାଜ' ଅକ୍ଟୋବର ୪ରୁ ସତ୍ୟବାଦୀ (ସାକ୍ଷୀଗୋପାଳ)ରୁ ପ୍ରକାଶିତ । |
| ଖ୍ରୀଷ୍ଟାବ୍ଦ ୧୯୨୦ | – | ୩୭.୨୦ କିଲୋମିଟର ଦୈର୍ଘ୍ୟ ବିଶିଷ୍ଟ ବାରିପଦା–ବାଙ୍ଗିରିପୋଷି ରେଳ ଲାଇନ କାର୍ଯ୍ୟକାରୀ । |
| ଖ୍ରୀଷ୍ଟାବ୍ଦ ୧୯୨୧ | – | ମାର୍ଚ୍ଚ ୨୪ରେ ମହାତ୍ମା ଗାନ୍ଧୀଙ୍କ ଓଡ଼ିଶା ଆଗମନ । |
| ଖ୍ରୀଷ୍ଟାବ୍ଦ ୧୯୨୨ | – | କନିକା ବିଦ୍ରୋହକୁ ପ୍ରରୋଚିତ କରିବା ଅପରାଧରେ ହରେକୃଷ୍ଣ ମହତାବଙ୍କୁ ୧୮ ଜୁଲାଇରେ ଏକ ବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା । |
| ଖ୍ରୀଷ୍ଟାବ୍ଦ ୧୯୨୩ | – | ମାର୍ଚ୍ଚ ୯ ତାରିଖରେ ବିହାର–ଓଡ଼ିଶା ସରକାରଙ୍କ ମନ୍ତ୍ରୀପଦରୁ ମଧୁବାବୁଙ୍କ ଇସ୍ତଫା ଘୋଷଣା । |
| ଖ୍ରୀଷ୍ଟାବ୍ଦ ୧୯୨୪ | – | ବ୍ରହ୍ମପୁରରେ ଓଡ଼ିଆ ମହିଳା ସଂଗଠନ ଗଠିତ ହେବା ସହିତ କଟକଠାରେ ପ୍ରଥମ ନିଖିଳ ଓଡ଼ିଶା ମହିଳା ସମ୍ମିଳନୀ ଅନୁଷ୍ଠିତ । |
| ଖ୍ରୀଷ୍ଟାବ୍ଦ ୧୯୨୫ | – | ଅଗଷ୍ଟ ୯ରେ ମହାତ୍ମା ଗାନ୍ଧୀଙ୍କ ଓଡ଼ିଶା ଆଗମନ । |
| ଖ୍ରୀଷ୍ଟାବ୍ଦ ୧୯୨୬ | – | ଅସହାୟ ବିଧବାମାନଙ୍କୁ ଶିକ୍ଷା ପ୍ରଦାନ ଓ ସେମାନଙ୍କୁ ରୋଜଗାରକ୍ଷମ କରିବା ନିମନ୍ତେ ତାଲିମ ଦେବା ଉଦ୍ଦେଶ୍ୟରେ ଗୋପବନ୍ଧୁ ଦାସଙ୍କ ଦ୍ୱାରା ପୁରୀଠାରେ ଜଗନ୍ନାଥ ବିଧବାଶ୍ରମ ନାମରେ ଏକ ବିଧବାଶ୍ରମ ଖୋଲାଯାଇ ଆଚାର୍ଯ୍ୟ ହରିହରଙ୍କୁ ଆଶ୍ରମର ଦାୟିତ୍ୱ ପ୍ରଦାନ । |
| ୧୯୨୭ | – | ଗାନ୍ଧୀଙ୍କ ଓଡ଼ିଶା ଆଗମନ । |
| | – | ବାଲେଶ୍ୱରରେ ବନ୍ୟା ବିପତ୍ତି । |
| | – | ପୁରୀ ରାଜା ଗଜପତି ରାମଚନ୍ଦ୍ର ଦେବ– ୪ର୍ଥଙ୍କ ଦ୍ୱାରା କାଳୀଚରଣ ପଟ୍ଟନାୟକଙ୍କୁ 'କବିଚନ୍ଦ୍ର' ଉପାଧି ପ୍ରଦାନ । |
| ୧୯୨୮ | – | ସମ୍ବଲପୁରକୁ ଗାନ୍ଧୀଙ୍କ ଆଗମନ । |
| | – | ଉତ୍କଳମଣି ଗୋପବନ୍ଧୁଙ୍କ ଦେହାବସାନ । |
| ୧୯୨୯ | – | କଟକଠାରେ ଉତ୍କଳ ପ୍ରୋଭିନ୍ସିଆଲ୍ କଂଗ୍ରେସ କମିଟିର ବୈଠକ । |
| ୧୯୩୦ | – | ଲବଣ ସତ୍ୟାଗ୍ରହ ସମୟରେ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ିଠାରେ ସ୍ୱେଚ୍ଛାସେବୀମାନଙ୍କ ପକ୍ଷରୁ ଲୁଣମରା ଅଭିଯାନ । |
| | – | ଜୁନ୍ ୨୦ ତାରିଖରେ ବାଲେଶ୍ୱରଠାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ବୈଠକ । |
| ୧୯୩୧ | – | ଜାନୁଆରୀ ୧୬ ତାରିଖ ଦିନ ଲଣ୍ଡନଠାରେ ଅନୁଷ୍ଠିତ ପ୍ରଥମ ଗୋଲ୍‌ଟେବୁଲ ବୈଠକରେ କୃଷ୍ଣଚନ୍ଦ୍ର ନାରାୟଣ ଗଜପତିଙ୍କ ଦ୍ୱାରା ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଦାବି ଉପସ୍ଥାପନ । |

| | | |
|---|---|---|
| ୧୯୩୨ | – | ସେପ୍ଟେମ୍ବର ୭ତାରିଖରେ ଦ୍ୱିତୀୟ ଗୋଲ୍‌ଟେବୁଲ ବୈଠକରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଗଠନ କରିବାକୁ ନିଷ୍ପତ୍ତି ଗ୍ରହଣ । |
| ୧୯୩୩ | – | ଲିଙ୍ଗରାଜ ପାଣିଗ୍ରାହୀଙ୍କ ସାହାଯ୍ୟରେ ଓଡ଼ିଶାର ପ୍ରଥମ ଇଂରାଜୀ ଦୈନିକ ଖବର କାଗଜ 'ନ୍ୟୁ ଓଡ଼ିଶା' ଶଶିଭୂଷଣ ରଥଙ୍କ ଦ୍ୱାରା ବ୍ରହ୍ମପୁରର ଆଶା ପ୍ରେସ୍‌ରୁ ପ୍ରକାଶିତ । |
| ୧୯୩୪ | – | ମେ ମାସ ୫ ତାରିଖରେ ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ । |
| ୧୯୩୫ | – | ରେଭେନ୍ସାର ରସାୟନ ବିଜ୍ଞାନ ପ୍ରଫେସର ସର୍ଦ୍ଦାର କର୍‌ତାର ସିଂହଙ୍କ ଦ୍ୱାରା କଟକଠାରେ ଶିଖ୍ ଗୁରୁଦ୍ୱାର ନିର୍ମାଣ। ଗୁରୁ ନାନକ ପୁରୀ ଯିବା ବାଟରେ ଏହିଠାରେ ଅଟକି ଥିଲେ ବୋଲି ବିଶ୍ୱାସ କରାଯାଏ । |
| ୧୯୩୬ | – | ଅପ୍ରେଲ ୧ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠିତ । |
| ୧୯୩୭ | – | ପ୍ରଥମ ଓଡ଼ିଶା ମନ୍ତ୍ରିମଣ୍ଡଳ ଗଠିତ । |
| ୧୯୩୮ | – | ୨୫ ମାର୍ଚ୍ଚରେ ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ । |
| | – | ପୁରୀ ଜିଲ୍ଲାର ଡେଲାଙ୍ଗ ନିକଟବର୍ତ୍ତୀ ବେରବୋଇଠାରେ ଅନୁଷ୍ଠିତ ଗାନ୍ଧୀ ସେବାସଂଘର ବାର୍ଷିକ ଅଧିବେଶନରେ ଗାନ୍ଧିଜୀଙ୍କ ଯୋଗଦାନ । |
| | – | ପୋଲିସ୍ ଗୁଳିରେ ବାଜି ରାଉତଙ୍କ ଦେହାନ୍ତ। |
| ୧୯୩୯ | – | ଅଗଷ୍ଟ ୫ରେ ସୁଭାଷ ଚନ୍ଦ୍ର ବୋଷଙ୍କ କଟକ ପରିଦର୍ଶନ । |
| | – | ଜୟପ୍ରକାଶ ନାରାୟଣଙ୍କ କଟକ ଆଗମନ । |
| | – | ନଭେମ୍ବର ୪ ତାରିଖରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳର ଇସ୍ତଫା । |
| | – | ରଣପୁରଠାରେ ମେଜର ଜେନେରାଲ ବେଜେଲ୍‌ଗେଟ୍‌ଙ୍କୁ ଆକ୍ରମଣ ଓ ହତ୍ୟା । |
| | – | ନେତାଜୀଙ୍କ ଓଡ଼ିଶା ଗସ୍ତ, ଦେବୋତ୍ତର କମିଶନଙ୍କ କାର୍ଯ୍ୟ ଆରମ୍ଭ । |
| | – | ରବୀନ୍ଦ୍ର ନାଥ ଠାକୁରଙ୍କ ପୁରୀ ଆଗମନ । |
| ୧୯୪୦ | – | କାଳୀଚରଣ ପଟ୍ଟନାୟକଙ୍କ ଦ୍ୱାରା କଟକଠାରେ 'ଓଡ଼ିଶା ଥିଏଟସ୍' ଆରମ୍ଭ । |
| | – | ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା 'ମାଦଳା ପାଞ୍ଜି' ସମ୍ପାଦିତ । |
| ୧୯୪୧ | – | ବେଜେଲ୍‌ଗେଟଙ୍କ ହତ୍ୟା ଅପରାଧରେ ସଂଶ୍ଳିଷ୍ଟ ରଘୁ-ଦିବାକରଙ୍କୁ ଫାଶୀ । |
| ୧୯୪୨ | – | ଲୁଣିଆ ଗୁଳିକାଣ୍ଡ : ପୁଲିସ୍ ଗୁଳିରେ ୯ଜଣଙ୍କ ମୃତ୍ୟୁ । |
| | – | ପୁଲିସ୍ ଗୁଳିରେ ଇରମ୍‌ଠାରେ ୨୯ଜଣଙ୍କ ମୃତ୍ୟୁ । |
| ୧୯୪୩ | – | କଲିକତା ବେତାର କେନ୍ଦ୍ରରୁ ପ୍ରଥମ ଥର ପାଇଁ ଓଡ଼ିଆ ସଙ୍ଗୀତ ପ୍ରସାରିତ । |
| | – | ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ଭଗବତୀ ଚରଣ ପାଣିଗ୍ରାହୀଙ୍କ ଦେହାନ୍ତ । |
| | – | କଟକଠାରେ ଉତ୍କଳ ବିଶ୍ୱବିଦ୍ୟାଳୟର କାର୍ଯ୍ୟାରମ୍ଭ । |

| | | |
|---|---|---|
| ୧୯୪୪ | – | ୩୦ ଜୁନ୍‌ରେ ଓଡ଼ିଶା ପ୍ରଧାନମନ୍ତ୍ରୀ କୃଷ୍ଣଚନ୍ଦ୍ର ନାରାୟଣ ଗଜପତିଙ୍କ ପଦତ୍ୟାଗ । |
| ୧୯୪୫ | – | ୫୦ ବ୍ରିଟିଶ ଏୟାର ଫୋର୍ସ ବିମାନ ଦ୍ୱାରା ଗଞ୍ଜାମ ଜିଲ୍ଲାର ରେଗୁନ ଅଞ୍ଚଳର ମାୟାଗାଁ ଗ୍ରାମରେ ବୋମା ମାଡ । |
| | – | ୧୨ ଫେବୃଆରୀରେ ହୋଇଥିବା ଏହି ବୋମାମାଡ ଫଳରେ ଆଜାଦ ହିନ୍ଦ୍ ଫୌଜରେ ଥିବା ଗଞ୍ଜାମ ଜିଲ୍ଲାର ଅଧିକାଂଶ ଓଡ଼ିଆ ସୈନ୍ୟଙ୍କ ମୃତ୍ୟୁ । |
| | – | ଜୁଲାଇରୁ ବାଲେଶ୍ୱର, ସମ୍ବଲପୁର ଓ ପୁରୀଠାରେ ନୂତନ କଲେଜ ପ୍ରତିଷ୍ଠା । |
| | – | ବଲାଙ୍ଗିର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଦ୍ୱାରା ଇଣ୍ଟରମେଡିଏଟ୍ କ୍ଲାସ ସହିତ ରାଜେନ୍ଦ୍ର କଲେଜ ପ୍ରତିଷ୍ଠା । |
| ୧୯୪୬ | – | ୨୯ ଜାନୁଆରୀରେ ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ । |
| | – | ଓଡ଼ିଶା ଗଭର୍ଣ୍ଣର ସାର୍ ହଥର୍ଣ୍ଣ ଲୁଇସ୍‌ଙ୍କ ଦ୍ୱାରା ହୀରାକୁଦ ବନ୍ଧର ଭିତ୍ତିପ୍ରସ୍ତର ସ୍ଥାପନ । |
| | – | କଟକଠାରେ କେନ୍ଦ୍ରୀୟ ଧାନ ଗବେଷଣା ପ୍ରତିଷ୍ଠାନ ଆରମ୍ଭ । |
| ୧୯୪୭ | – | ଇଣ୍ଡୋନେସିଆ ନେତାଙ୍କୁ ଉଦ୍ଧାର କରିବା ପାଇଁ ବିଜୁବାବୁଙ୍କ ଦୁଃସାହସିକ ବିମାନ ଯାତ୍ରା । |
| | – | ଓଡ଼ିଶାରେ ଗଡଜାତ ରାଜ୍ୟର ମିଶ୍ରଣ । |
| ୧୯୪୮ | – | ଭୁବନେଶ୍ୱରଠାରେ ଓଡ଼ିଶାର ନୂଆ ରାଜଧାନୀର ଭିତ୍ତିପ୍ରସ୍ତର ସ୍ଥାପନ । |
| | – | କଟକଠାରେ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠା । |
| | – | କଟକଠାରେ ଉଚ୍ଚ ନ୍ୟାୟାଳୟ ପ୍ରତିଷ୍ଠା। |
| ୧୯୪୯ | – | ଓଡ଼ିଶାର ରାଜଧାନୀ କଟକରୁ ଭୁବନେଶ୍ୱରକୁ ସ୍ଥାନାନ୍ତରିତ । |
| | – | ବଲାଙ୍ଗିର ଜିଲ୍ଲା ଗଠିତ । |
| ୧୦୫୦ | – | ୧୩ଟି ଜିଲ୍ଲାସମ୍ବଳିତ ଓଡ଼ିଶାର ମାନଚିତ୍ର ପ୍ରକାଶିତ । |
| ୧୯୫୧ | – | ଡିସେମ୍ବର ୧୩ରେ ଓଡ଼ିଶା ଗସ୍ତରେ ଆସି ଝାରସୁଗୁଡାରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ପଦାର୍ପଣ । |
| ୧୯୫୨ | – | କଳିଙ୍ଗ ପୁରସ୍କାର ପ୍ରବର୍ତ୍ତନ ପାଇଁ ୟୁନେସ୍କୋକୁ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ୧,୦୦୦ ପାଉଣ୍ଡ ଦାନ । |
| | – | ସରକାରୀ କାର୍ଯ୍ୟ ପାଇଁ ଉଭୟ ଓଡ଼ିଆ ଏବଂ ଇଂରାଜୀ ଭାଷା ପ୍ରଚଳନ । |
| ୧୯୫୩ | – | ରାଉରକେଲାରେ ଇସ୍ପାତ କାରଖାନା ପ୍ରତିଷ୍ଠା । |
| ୧୯୫୪ | – | ଭୁବନେଶ୍ୱରଠାରେ କୃଷି ମହାବିଦ୍ୟାଳୟ ପ୍ରତିଷ୍ଠା । |

| | | |
|---|---|---|
| | – | ଓଡ଼ିଆରେ ସରକାରୀ କାର୍ଯ୍ୟ ପାଇଁ ଓଡ଼ିଶା ବିଧାନସଭାରେ ସରକାରୀ ଭାଷା ଆଇନ ଗୃହୀତ । |
| ୧୯୫୫ | – | ଓଡ଼ିଶାର ଭୂମିହୀନମାନଙ୍କୁ ଭୂଦାନ ଜମି ପ୍ରଦାନ । |
| ୧୯୫୬ | – | ବୁର୍ଲାରେ ଯାନ୍ତ୍ରିକ ମହାବିଦ୍ୟାଳୟ ପ୍ରତିଷ୍ଠା । |
| | – | ପ୍ରଜାମଣ୍ଡଳ ନେତା ସାରଙ୍ଗଧର ଦାସଙ୍କ ଦେହାନ୍ତ । |
| | – | ରାଉରକେଲା ଇସ୍ପାତ କାରଖାନା ନିର୍ମାଣ । |
| ୧୯୫୭ | – | ଜବାହରଲାଲ ନେହେରୁଙ୍କ ଦ୍ୱାରା ହୀରାକୁଦ ବନ୍ଧ ଉଦ୍‌ଘାଟିତ । |
| | – | ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରତିଷ୍ଠା । |
| | – | ଶିମିଳିପାଳ ଅଭୟାରଣ୍ୟ ଜାତୀୟ ଉଦ୍ୟାନ ଘୋଷିତ । |
| | – | ଭାରତର ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଦ୍ୱାରା ଭୁବନେଶ୍ୱରଠାରେ ରାଜ୍ୟ ସଂଗ୍ରହାଳୟର ଭିତ୍ତିପ୍ରସ୍ତର ସ୍ଥାପନ । |
| ୧୯୫୮ | – | କଟକର ମିହିର ସେନ୍‌ଙ୍କ ଦ୍ୱାରା ଇଂଲିଶ୍ ଚ୍ୟାନେଲ ଅତିକ୍ରମ । |
| | – | ଦଣ୍ଡକାରଣ୍ୟ ଉନ୍ନୟନ ପ୍ରକଳ୍ପର ପ୍ରତିଷ୍ଠା । |
| ୧୯୫୯ | – | ଓଡ଼ିଶା ସରକାରଙ୍କ ଦ୍ୱାରା ଲଳିତ କଳା ଏକାଡେମୀ ପ୍ରତିଷ୍ଠା । |
| | – | ବୁର୍ଲାରେ ବୀର ସୁରେନ୍ଦ୍ର ସାଏ ମେଡିକାଲ କଲେଜ ଆରମ୍ଭ। |
| ୧୯୬୦ | – | ଭୁବନେଶ୍ୱରଠାରେ ଓଡ଼ିଶା ରାଜ୍ୟ ଅଭିଲେଖାଗାର ପ୍ରତିଷ୍ଠା । |
| | – | ନନ୍ଦନକାନନ ପ୍ରାଣୀଉଦ୍ୟାନ ପ୍ରତିଷ୍ଠା । |
| | – | ଭୁବନେଶ୍ୱରଠାରେ ଦୃଷ୍ଟିହୀନ ବିଦ୍ୟାଳୟ ପ୍ରତିଷ୍ଠା । |
| | – | ବିନୋଦ କାନୁନ୍‌ଗୋଙ୍କ ଦ୍ୱାରା ସମ୍ପାଦିତ 'ଜ୍ଞାନମଣ୍ଡଳ'ର ପ୍ରଥମ ସଂକଳନ ପ୍ରକାଶିତ । |
| ୧୯୬୧ | – | ଓଡ଼ିଶା ରାଜ୍ୟ ବିଧାନ ସଭା ସୌଧ ଉଦ୍‌ଘାଟିତ । |
| | – | ରାଉରକେଲାରେ ଯାନ୍ତ୍ରିକ ମହାବିଦ୍ୟାଳୟ ଆରମ୍ଭ । |
| ୧୯୬୨ | – | ଜବାହରଲାଲ୍ ନେହେରୁଙ୍କ ଦ୍ୱାରା ପାରାଦିପ ବନ୍ଦରର ଭିତ୍ତିପ୍ରସ୍ତର ସ୍ଥାପନ । |
| | – | ଭୁବନେଶ୍ୱରଠାରେ ସୈନିକ ସ୍କୁଲ ପ୍ରତିଷ୍ଠା । |
| | – | ଦୈତାରୀରୁ ପାରଦ୍ୱୀପକୁ ଏକ୍ସପ୍ରେସ୍ ହାଇୱେର ନିର୍ମାଣ ଆରମ୍ଭ । |
| | – | ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା । |

| | | |
|---|---|---|
| ୧୯୬୩ | – | ଋଷୀୟ ମହାକାଶଚାରିଣୀ ଭାଲେଣ୍ଟିନା ତେରେସ୍କୋଭାଙ୍କ ଓଡ଼ିଶା ପରିଦର୍ଶନ । |
| | – | ଉତ୍କଳ ବିଶ୍ୱବିଦ୍ୟାଳୟ କୋଠା ଉଦ୍‌ଘାଟିତ । |
| ୧୯୬୪ | – | ଜବାହରଲାଲ ନେହେରୁଙ୍କ ଦ୍ୱାରା ତାଳଚେର ତାପଜ ବିଦ୍ୟୁତ କେନ୍ଦ୍ରର ଭିତ୍ତିପ୍ରସ୍ତର ସ୍ଥାପନ । |
| ୧୯୬୫ | – | ଗ୍ରାମ ଚୌକିଦାରି ବ୍ୟବସ୍ଥା ଉଚ୍ଛେଦ । |
| ୧୯୬୬ | – | ପ୍ରଧାନମନ୍ତ୍ରୀ ଲାଲ ବାହାଦୁର ଶାସ୍ତ୍ରୀଙ୍କ ଦେହାନ୍ତ ପରେ ବିଶ୍ୱନାଥ ଦାସ ଭାରତ ଲୋକସେବକ ମଣ୍ଡଳର ସଭାପତି ମନୋନୀତ । |
| ୧୯୬୭ | – | ବ୍ରହ୍ମପୁର ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା । |
| | – | ପଣ୍ଡିତ ନୀଳକଣ୍ଠ ଦାସଙ୍କ ଦେହାନ୍ତ । |
| ୧୯୬୮ | – | ଜାନୁୟାରୀ ୫ରେ ରାଷ୍ଟ୍ରପତିଙ୍କ ଦ୍ୱାରା ସମ୍ବଲପୁର ବିଶ୍ୱବିଦ୍ୟାଳୟ ଉଦ୍‌ଘାଟିତ । |
| | – | ସ୍ୱାଧୀନତା ସଂଗ୍ରାମୀ ତଥା ସାହିତ୍ୟିକ ରାଧାନାଥ ରଥଙ୍କୁ 'ପଦ୍ମଭୂଷଣ' ସମ୍ମାନ । |
| ୧୯୬୯ | – | ୨୪ ଅଗଷ୍ଟରେ ବରାହଗିରି ଭେଙ୍କଟଗିରି ଭାରତର ରାଷ୍ଟ୍ରପତି ନିର୍ବାଚିତ । |
| ୧୯୭୦ | – | ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଗୋଟିଏ ଆଞ୍ଚଳିକ ଦଳ 'ଉତ୍କଳ କଂଗ୍ରେସ' ପ୍ରତିଷ୍ଠା । |
| ୧୯୭୧ | – | ପୁରୀଠାରେ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା । |
| | – | ଆଚାର୍ଯ୍ୟ ହରିହର ଦାସଙ୍କ ଦେହାନ୍ତ । |
| | – | ବଙ୍ଗଳା ଦେଶ ଯୁଦ୍ଧରେ ଶହୀଦ ହୋଇଥିବା ଲାନ୍ସ ନାଏକ ଆଲବର୍ଟ ଏକ୍କାଙ୍କୁ ସର୍ବୋଚ୍ଚ ସାମରିକ ସମ୍ମାନ ମରଣୋତ୍ତର 'ପରମ ବୀର ଚକ୍ର' ପ୍ରଦାନ । |
| ୧୯୭୨ | – | ଓଡ଼ିଶା ଉପକୂଳରେ ଭୟଙ୍କର ବାତ୍ୟା । |
| ୧୯୭୩ | – | ରେଳ ଚଳାଚଳ ପାଇଁ କଟକ–ପାରାଦ୍ୱୀପ ରେଳ ଲାଇନ ଖୋଲା । |
| | – | ଚିଲିକାଠାରେ ନୌ–ବାଳକ ତାଲିମ କେନ୍ଦ୍ରର ଭିତ୍ତିପ୍ରସ୍ତର ସ୍ଥାପନ । |
| ୧୯୭୪ | – | ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଦେହାନ୍ତ । |
| ୧୯୭୫ | – | ବ୍ୟାସକବି ଫକୀର ମୋହନ ସେନାପତିଙ୍କ ଉପରେ ଲିଖିତ ଗବେଷଣା ସନ୍ଦର୍ଭ ନିମନ୍ତେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ବ୍ରିଟିଶ୍ ଗବେଷକ ଡଃ ଜେ.ଭି. ବୋଲ୍‌ଟନ୍ ସମ୍ବର୍ଦ୍ଧିତ । |
| | – | ଭିତରକନିକା ଡାଙ୍ଗମାଳଠାରେ ଲୁଣାଜଳ କୁମ୍ଭୀର ଗବେଷଣା କେନ୍ଦ୍ର ପ୍ରତିଷ୍ଠା । |
| ୧୯୭୬ | – | ରାଜ୍ୟ ସରକାରଙ୍କ ପକ୍ଷରୁ ଗୋତି ଶ୍ରମିକ(ଉଚ୍ଛେଦ) ଆଇନ୍- ୧୯୭୬ ପାରିତ । |
| ୧୯୭୭ | – | କୌଶଲ୍ୟାଗଙ୍ଗଠାରେ ମଧୁରଜଳ ମତ୍ସ୍ୟ ଗବେଷଣାକେନ୍ଦ୍ରର ଭିତ୍ତିପ୍ରସ୍ତର ସ୍ଥାପନ । |

| | | |
|---|---|---|
| ୧୯୭୮ | – | କେଉଁଝର ଜିଲ୍ଲାର ବାନ୍ଧଗୋଡା ଗ୍ରାମରେ ଭୟଙ୍କର ଘୂର୍ଣ୍ଣିଝଡ । |
| | – | ଉପର ଇନ୍ଦ୍ରାବତୀ ପ୍ରକଳ୍ପର ଭିତ୍ତିପ୍ରସ୍ତର ସ୍ଥାପନ । |
| ୧୯୭୯ | – | ଇଣ୍ଡିଆ ପବ୍ଲିକ ଚାରିଟେବୁଲ ଟ୍ରଷ୍ଟ ପକ୍ଷରୁ ସାରଳା ପୁରସ୍କାର ପ୍ରଦାନ ଆରମ୍ଭ । |
| ୧୯୮୦ | – | ଇଂଲଣ୍ଡର ରାଜକୁମାର ଚାର୍ଲସ୍‌ଙ୍କ ଓଡ଼ିଶା ପରିଭ୍ରମଣ । |
| | – | ଇଣ୍ଡୋନେସିଆ ସରକାରଙ୍କ ପକ୍ଷରୁ ବିଜୁ ପଟ୍ଟନାୟକଙ୍କୁ 'ଭୂମିପୁତ୍ର' ସମ୍ମାନ ପ୍ରଦାନ । |
| ୧୯୮୧ | – | ଅନୁଗୁଳଠାରେ 'ନାଲ୍‌କୋ' (ନ୍ୟାସ୍‌ନାଲ୍ ଆଲୁମିନିୟମ୍ କମ୍ପାନୀ) ପ୍ରତିଷ୍ଠା । |
| ୧୯୮୨ | – | ୨୩ ଡିସେମ୍ବରରେ ଭୁବନେଶ୍ୱରଠାରେ ଭାରତୀୟ ସଡକ କଂଗ୍ରେସର ବାର୍ଷିକ ସମ୍ମିଳନୀ ଅନୁଷ୍ଠିତ । |
| ୧୯୮୩ | – | ଡଃ ହରେକୃଷ୍ଣ ମହତାବଙ୍କୁ ତାଙ୍କର ପ୍ରବନ୍ଧ ପୁସ୍ତକ 'ଗାଁ ମଜଲିସ୍' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରଦାନ । |
| ୧୯୮୪ | – | ବଲାଙ୍ଗିରର ସଇଁତଳାଠାରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଦ୍ୱାରା ଗୋଳାବାରୁଦ କାରଖାନାର ଭିତ୍ତିପ୍ରସ୍ତର ସ୍ଥାପନ । |
| | – | ଭୁବନେଶ୍ୱରଠାରେ 'ଓରେଡା' (ଓଡ଼ିଶା ଅକ୍ଷୟ ଶକ୍ତି ବିକାଶ ସଂସ୍ଥା) ପ୍ରତିଷ୍ଠା । |
| | – | ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଦେହାନ୍ତ । |
| | – | ପୂର୍ବତନ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ଦେହାନ୍ତ । |
| | – | ତାଳଚେର ଓ ସମ୍ବଲପୁର ରେଳ ଲାଇନ୍ ପ୍ରକଳ୍ପର ଭିତ୍ତିପ୍ରସ୍ତର ସ୍ଥାପନ । |
| | – | ଭୁବନେଶ୍ୱରଠାରେ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ପୂର୍ବତନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଶେଷ ଅଭିଭାଷଣ । |
| | – | ଓଡ଼ିଶା ବିଜ୍ଞାନ ଏକାଡେମୀ ପ୍ରତିଷ୍ଠା । |
| ୧୯୮୫ | – | ପ୍ରଖ୍ୟାତ ସର୍ବୋଦୟ ତଥା ଭୂଦାନ ନେତ୍ରୀ ମା' ରମାଦେବୀଙ୍କ ଦେହାନ୍ତ । |
| | – | କଟକଠାରେ ପ୍ରଥମ ରାଜ୍ୟସ୍ତରୀୟ ଲୋକ ଅଦାଲତ । |
| ୧୯୮୬ | – | 'ଜ୍ଞାନମଣ୍ଡଳ'ର ପ୍ରଖ୍ୟାତ ସମ୍ପାଦକ ବିନୋଦ କାନୁନ୍‌ଗୋଙ୍କୁ 'ପଦ୍ମଶ୍ରୀ' ସମ୍ମାନ । |
| | – | ଭୁବନେଶ୍ୱରଠାରେ ପଠାଣୀ ସାମନ୍ତ ପ୍ଲାନେଟୋରିୟମ୍‌ର ଭିତ୍ତିପ୍ରସ୍ତର ସ୍ଥାପନ । |
| ୧୯୮୭ | – | ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଡ଼. ହରେକୃଷ୍ଣ ମହତାବଙ୍କ ଦେହାନ୍ତ । |
| | – | କଟକଠାରେ ଜବାହରଲାଲ ଇନ୍‌ଡୋର ଷ୍ଟାଡିୟମ୍ ଉଦ୍‌ଘାଟିତ। |
| ୧୯୮୭ | – | ଭୁବନେଶ୍ୱରଠାରେ ହରେକୃଷ୍ଣ ମହତାବ ରାଜ୍ୟ ଗ୍ରନ୍ଥାଗାର ଉଦ୍‌ଘାଟିତ । |

| | | |
|---|---|---|
| ୧୯୮୮ | – | ସଚ୍ଚିଦାନନ୍ଦ ରାଉତରାୟଙ୍କ 'ଜ୍ଞାନପୀଠ' ସମ୍ମାନ ଗ୍ରହଣ । |
| | – | ଆଧ୍ୟାତ୍ମିକ ଗୁରୁ ଦଲାଇଲାମାଙ୍କ ଓଡ଼ିଶା ଭ୍ରମଣ । |
| | – | କଟକ ଦୂରଦର୍ଶନ କେନ୍ଦ୍ରରୁ ଓଡ଼ିଆ ସମ୍ବାଦ ପରିବେଷଣ ଆରମ୍ଭ । |
| ୧୯୮୯ | – | ଭୁବନେଶ୍ୱର ଷ୍ଟକ୍ ଏକ୍ସଚେଞ୍ଜର କାର୍ଯ୍ୟାରମ୍ଭ । |
| | – | ଇବ୍ ତାପଜ ବିଦ୍ୟୁତ ପ୍ରକଳ୍ପର ଭିତ୍ତିପ୍ରସ୍ତର ସ୍ଥାପନ । |
| | – | କଟକ ସହରର ସହସ୍ରାବ୍ଦ ଉତ୍ସବ ଉଦଘାଟିତ । |
| | – | ରବି ରାୟ ଲୋକସଭାର ବାଚସ୍ପତି ଭାବେ ନିର୍ବାଚିତ । |
| | – | ଚାନ୍ଦିପୁରଠାରେ ପ୍ରଥମ ବାଲିଷ୍ଟିକ କ୍ଷେପଣାସ୍ତ୍ର 'ଅଗ୍ନି'ର ପ୍ରଥମ ପରୀକ୍ଷଣ । |
| ୧୯୯୦ | – | ସର୍ବୋଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଭାବେ ଜଷ୍ଟିସ୍ ରଙ୍ଗନାଥ ମିଶ୍ରଙ୍କ ଦାୟିତ୍ୱ ଗ୍ରହଣ । |
| ୧୯୯୧ | – | ପ୍ରଖ୍ୟାତ ସାହିତ୍ୟିକ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଦେହାନ୍ତ । |
| | – | ଓଡ଼ିଶା ସରକାରଙ୍କ ପକ୍ଷରୁ ମହିଳା ବିକାଶ ସମବାୟ ନିଗମ ଗଠିତ । |
| ୧୯୯୨ | – | ସ୍ୱାଧୀନତା ସଂଗ୍ରାମୀ ରାଜକୃଷ୍ଣ ବୋଷଙ୍କ ଦେହାନ୍ତ । |
| ୧୯୯୩ | – | ପ୍ରଖ୍ୟାତ କଣ୍ଠଶିଳ୍ପୀ ବାଳକୃଷ୍ଣ ଦାସଙ୍କ ପରଲୋକ । |
| | – | ଓଡ଼ିଶାର ଜିଲ୍ଲା ସଂଖ୍ୟା ୧୩ରୁ ୩୦କୁ ବୃଦ୍ଧି । |
| ୧୯୯୪ | – | ଭାରତ ସରକାରଙ୍କ ଦ୍ୱାରା ଶିମିଳିପାଳ ସଂରକ୍ଷିତ ଅଭୟାରଣ୍ୟ ଜୈବ ମଣ୍ଡଳ ଭାବରେ ଘୋଷିତ । |
| | – | ଓଡ଼ିଶା ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଭାବେ ଜି.ଟି. ନାନାବତୀଙ୍କ ଶପଥ ଗ୍ରହଣ । |
| ୧୯୯୫ | – | ଇଣ୍ଡୋନେସିଆ ପକ୍ଷରୁ ବିଜୁ ପଟ୍ଟନାୟକଙ୍କୁ ସେ ଦେଶର ଜାତୀୟ ସମ୍ମାନ 'ବିନ୍ତୁଙ୍ଗ ଯଶ୍ ଉତ୍ତମା' ପ୍ରଦାନ । |
| ୧୯୯୬ | – | ପୁରୀଠାରେ ଶ୍ରୀଜଗନ୍ନାଥ ଓ ଚତୁର୍ଦ୍ଧାମୂର୍ତ୍ତିଙ୍କ ନବକଳେବର । |
| ୧୯୯୭ | – | ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ପରଲୋକ । |
| | – | ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ ଡକ୍ଟର ସତ୍ୟନାରାୟଣ ରାଜଗୁରୁଙ୍କ ଦେହାନ୍ତ । |
| | – | ପ୍ରଖ୍ୟାତ ଓଡ଼ିଶୀ ନୃତ୍ୟାଙ୍ଗନା ସଂଯୁକ୍ତା ପାଣିଗ୍ରାହୀଙ୍କ ଦେହାନ୍ତ । |
| ୧୯୯୮ | – | 'ସମାଜ'ର ସମ୍ପାଦକ ପଦ୍ମଭୂଷଣ ରାଧାନାଥ ରଥଙ୍କ ଦେହାନ୍ତ । |
| | – | ସମାଜସେବିକା ମାଳତୀ ଚୌଧୁରୀଙ୍କ ଦେହାନ୍ତ । |

| | | |
|---|---|---|
| | – | ଭୁବନେଶ୍ୱରଠାରେ କଳିଙ୍ଗ ଷ୍ଟାଡିୟମ୍ ଉଦ୍‌ଘାଟିତ । |
| | – | ତାଳଚେର–ସମ୍ବଲପୁର ରେଳ ଚଳାଚଳ ଆରମ୍ଭ । |
| ୧୯୯୯ | – | ଚାନ୍ଦିପୁରଠାରେ ବାଲିଷ୍ଟିକ କ୍ଷେପଣାସ୍ତ୍ର 'ଅଗ୍ନି–୨'ର ପରୀକ୍ଷଣ । |
| | – | ବାଲେଶ୍ୱରର ଫକୀର ମୋହନ ବିଶ୍ୱବିଦ୍ୟାଳୟ ଏବଂ ବାରିପଦାର ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟରେ ପାଠପଢ଼ା ଆରମ୍ଭ । |
| | – | ଅକ୍ଟୋବର ମାସରେ ଓଡ଼ିଶା ଉପକୂଳରେ ମହାବାତ୍ୟା । |
| | – | 'କୁଜଙ୍ଗ ଗାନ୍ଧୀ' ନାରାୟଣ ବୀରବର ସାମନ୍ତଙ୍କ ଦେହାନ୍ତ । |
| | – | ଓଡ଼ିଶାର ରାଜ୍ୟପାଳ  ଭାବେ ଶ୍ରୀ ଏମ୍. ଏମ୍, ରାଜେନ୍ଦ୍ରନ୍ ନିଯୁକ୍ତ । |
| ୨୦୦୦ | – | ୫ ମାର୍ଚ୍ଚରେ ମୁଖ୍ୟମନ୍ତ୍ରୀ ଭାବେ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦାୟିତ୍ୱ ଗ୍ରହଣ । |
| | – | ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ ଉଦ୍‌ଘାଟିତ । |
| | – | ସ୍ୱାଧୀନତା ସଂଗ୍ରାମୀ ଚିନ୍ତାମଣି ପାଣିଗ୍ରାହୀଙ୍କ ପରଲୋକ । |
| | – | ପାରାଦ୍ୱୀପ ବିଶୋଧନାଗାରର ଭିତ୍ତିପ୍ରସ୍ତର ସ୍ଥାପନ । |
| | – | ଓଡ଼ିଶା ସରକାରଙ୍କ ପକ୍ଷରୁ ବୃତ୍ତିକର ଲାଗୁ । |
| | – | ରାଉରକେଲାଠାରେ ଦ୍ୱିତୀୟ ବିଶ୍ୱ ଓଡ଼ିଆ ସମ୍ମିଳନୀ ଅନୁଷ୍ଠିତ । |
| | – | ଓଡ଼ିଶାରେ ଭୟଙ୍କର ମରୁଡ଼ି । |
| ୨୦୦୧ | – | ଓଡ଼ିଶାରେ ଭୟଙ୍କର ବନ୍ୟା । |
| ୨୦୦୨ | – | ଓଡ଼ିଶାରେ ଉତ୍କଟ ମରୁଡ଼ି ପରିସ୍ଥିତି । |
| ୨୦୦୩ | – | ଜଷ୍ଟିସ୍ ସୁଜିତ୍ ବର୍ମନ ରାୟ ଓଡ଼ିଶା ହାଇକୋର୍ଟର ମୁଖ୍ୟ ନ୍ୟାୟାଧୀଶ ଭାବେ ଅବସ୍ଥାପିତ । |
| | – | ଓଡ଼ିଶାରେ ଭୟଙ୍କର ବନ୍ୟା । |
| | – | ୧୫ ନଭେମ୍ବରରେ ଖ୍ୟାତନାମା  କବି ବିନୋଦ ନାୟକଙ୍କ ଦେହାନ୍ତ । |
| ୨୦୦୪ | – | ହକି ତାରକା ଦିଲ୍ଲୀପ ତିର୍କୀ, ନୃତ୍ୟଗୁରୁ ମାଗୁଣି ଚରଣ ଦାସ ଏବଂ ନାଟ୍ୟକାର ମନୋରଞ୍ଜନ ଦାସଙ୍କୁ ପଦ୍ମଶ୍ରୀ ସମ୍ମାନ । |
| | – | ଡ. ପ୍ରଫୁଲ୍ଲ କୁମାର ମହାନ୍ତି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଗି ମନୋନୀତ । |
| | – | ୭ ଅପ୍ରେଲରେ ବିଶ୍ୱପ୍ରସିଦ୍ଧ ଓଡ଼ିଶୀ ନୃତ୍ୟଗୁରୁ ପଦ୍ମବିଭୂଷଣ କେଳୁ ଚରଣ ମହାପାତ୍ରଙ୍କ ଦେହାନ୍ତ । |
| | – | ୭ ମଇରେ ଓଡ଼ିଆ ମହିଳା ରୂପା ମିଶ୍ର ସର୍ବଭାରତୀୟ ପ୍ରଶାସନିକ ସେବା ପରୀକ୍ଷାରେ ପ୍ରଥମ ସ୍ଥାନ ହାସଲ କରିଥିବା ଘୋଷିତ । |

– ୧୬ ମଇରେ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ ।

– ଆଧୁନିକ ଓଡ଼ିଆ ସାହିତ୍ୟର କର୍ଣ୍ଣଧାର ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ ଦେହାନ୍ତ ।

– ୨୬ ଅଗଷ୍ଟରେ ବିଶିଷ୍ଟ କବି ଗୁରୁ ପ୍ରସାଦ ମହାନ୍ତିଙ୍କ ଦେହାନ୍ତ ।

– ପ୍ରସିଦ୍ଧ କଥାକାର ପୂର୍ଣ୍ଣାନନ୍ଦ ଦାନୀଙ୍କ ଦେହାନ୍ତ ।

– ପ୍ରସିଦ୍ଧ କଥାକାର କିଶୋରୀ ଚରଣ ଦାସଙ୍କ ଦେହାନ୍ତ ।

– ୧ସେପ୍ଟେମ୍ବରରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ଭାବେ ଡ଼. ସୁବାସ ପାଣିଙ୍କ ଦାୟିତ୍ୱ ଗ୍ରହଣ ।

– ୪ ଅକ୍ଟୋବରରେ ପୂର୍ବତନ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କ ଦେହାନ୍ତ ।

– ୧୭ ନଭେମ୍ବରରେ ଓଡ଼ିଶାର ନୂତନ ରାଜ୍ୟପାଳ ଭାବେ ଶ୍ରୀ ରାମେଶ୍ୱର ଠାକୁରଙ୍କ ଶପଥ ଗ୍ରହଣ ।

୨୦୦୫

– ବିଜୁ ଜନତା ଦଳର ବିଧାୟକ ତଥା ଉପମୁଖ୍ୟ ସଚେତକ ଶଙ୍କର୍ଷଣ ନାୟକଙ୍କ ସଡକ ଦୁର୍ଘଟଣାରେ ପରଲୋକ ।

– ଖଣି ରାଜସ୍ୱ ନୀତି ପ୍ରଚଳନ ।

– ୭ ମାର୍ଚ୍ଚରେ ପ୍ରଖ୍ୟାତ ସାହିତ୍ୟିକ, ପ୍ରାବନ୍ଧିକ ତଥା ସମୀକ୍ଷକ ଚିନ୍ତାମଣି ବେହେରାଙ୍କ ଦେହାନ୍ତ ।

– ୧୧ ମାର୍ଚ୍ଚରେ ଅବସରପ୍ରାପ୍ତ ବିଚାରପତି ଜଷ୍ଟିସ ନବ କୁମାର ଦାସଙ୍କ ଦେହାନ୍ତ ।

– ଫାଇନାନ୍ସିଆଲ ଆକାଉଣ୍ଟାବିଲିଟି ବିଲ୍ ଓଡ଼ିଶା ବିଧାନସଭାରେ ପାରିତ ।

– ଭ୍ୟାଟ୍ ପ୍ରଚଳନ ।

– ୨୦ ନଭେମ୍ବରରେ ସୂଚନା ଅଧିକାର ଆଇନ ରାଜ୍ୟରେ ପ୍ରଚଳନ ହେବା ସହିତ ରାଜ୍ୟ ସୂଚନା କମିଶନ ବ୍ୟବସ୍ଥା ଆରମ୍ଭ ।

– ଏଡୁ–ସାଟ୍ ପ୍ରୋଜେକ୍ଟ ଉନ୍ମୋଚିତ ।

– ୨୬ ଓ ୨୭ ଡିସେମ୍ବରରେ ଭାରତର ରାଷ୍ଟ୍ରପତିଙ୍କ ଦୁଇଦିନିଆ ଓଡ଼ିଶା ଗସ୍ତ ।

୨୦୦୬

– ପୁରୀଠାରେ ବେଦାନ୍ତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ବେଦାନ୍ତ ଫାଉଣ୍ଡେସନ ସହ ଚୁକ୍ତି ସ୍ୱାକ୍ଷରିତ ।

– ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା କ୍ରୀଡ଼ା ଏକାଡେମୀ ପ୍ରତିଷ୍ଠା ।

– ଭୁବନେଶ୍ୱରସ୍ଥିତ ଗୋଠପାଟଣାରେ ରାଷ୍ଟ୍ରପତି ଡ଼. ଏ.ପି.ଜେ. ଅବଦୁଲ କଲାମଙ୍କ ଦ୍ୱାରା ଇଣ୍ଟରନ୍ୟାସନାଲ ଇନ୍ଷ୍ଟିଚ୍ୟୁଟ୍ ଅଫ୍ ଇନ୍ଫରମେସନ୍ ଟେକ୍ନୋଲୋଜିର ଭିତ୍ତିପ୍ରସ୍ତର ସ୍ଥାପନ ।

| | | |
|---|---|---|
| | – | ଗୋପବନ୍ଧୁ ଗ୍ରାମୀଣ ଯୋଜନା କାର୍ଯ୍ୟକାରୀ । |
| | – | ବିଜୁ କେବିକେ ଯୋଜନାର ଶୁଭାରମ୍ଭ । |
| | – | ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ଦେହାନ୍ତ । |
| | – | ତ୍ରିସ୍ତରୀୟ ପଞ୍ଚାୟତ ନିର୍ବାଚନ ଅନୁଷ୍ଠିତ । |
| | – | ଓଡ଼ିଶାରେ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ମିତ୍ତଲ–ଆର୍‌ସେଲର ମଧ୍ୟରେ ବୁଝାମଣାପତ୍ର ସ୍ୱାକ୍ଷରିତ । |
| ୨୦୦୭ | – | ଗଣତନ୍ତ୍ର ଦିବସ ଅବସରରେ ନୂଆଦିଲ୍ଲୀଠାରେ ପ୍ରଦର୍ଶିତ ଓଡ଼ିଶାର ପ୍ରଜ୍ଞାପନ ମେଢ ସମଗ୍ର ଦେଶରେ ଶ୍ରେଷ୍ଠ ବିବେଚିତ । |
| | – | ଓଡ଼ିଶା ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଭାବେ ଅଶୋକ ଗାଙ୍ଗୁଲି ମନୋନୀତ । |
| | – | ଭାରତୀୟ ହକି ଦଳର ଅଧିନାୟକ ଭାବେ ପ୍ରବୋଧ ତିର୍କୀ ମନୋନୀତ । |
| | – | ମୂରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଓଡ଼ିଶାର ରାଜ୍ୟପାଳ ଭାବେ ଅବସ୍ଥାପିତ । |
| | – | ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ସଭାଗୃହରେ ଭାରତ ସ୍ୱାଧୀନତା ପାଇଁ ପ୍ରଥମ ଲଢେଇର ୧୫୦ ବର୍ଷ ପୂର୍ତ୍ତି ପାଳନ ଉତ୍ସବ । |
| ୨୦୦୮ | – | ରାଜଧାନୀ ଭୁବନେଶ୍ୱର ଏବଂ କଟକ ସହରରେ ପୋଲିସ୍ କମିଶନରେଟ୍ ବ୍ୟବସ୍ଥା ଆରମ୍ଭ । |
| | – | ଓଡ଼ିଆ ମହିଳା କଳ୍ପନା ଦାସଙ୍କ ଏଭେରେଷ୍ଟ ଆରୋହଣ । |
| | – | ଶହୀଦ ପ୍ରମୋଦ ଶତପଥୀଙ୍କୁ ମରଣୋତ୍ତର ଭାବେ ‘ଅଶୋକ ଚକ୍ର’ ସମ୍ମାନ ପ୍ରଦାନ । |
| | – | ରାଜ୍ୟରେ ନୂଆ କୃଷି ନୀତି–୨୦୦୮ ଆରମ୍ଭ । |
| ୨୦୦୯ | – | ତୃତୀୟ ଥର ଲାଗି ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ । |
| | – | ଚେସ୍ ତାରକା ପଦ୍ମିନୀ ରାଉତ ଏକଲବ୍ୟ ପୁରସ୍କାର ଲାଗି ମନୋନୀତ । |
| | – | ପ୍ରଖ୍ୟାତ ଐତିହାସିକ ଡ଼ଃ ମନ୍ମଥ ନାଥ ଦାସଙ୍କ ଦେହାନ୍ତ । |
| | – | ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ‘ଅତିବଡୀ ଜଗନ୍ନାଥ ଦାସ’ ପୁରସ୍କାର । |
| | – | ଇଗ୍‌ନେସ୍ ତିର୍କୀଙ୍କୁ ସମ୍ମାନଜନକ ଅର୍ଜୁନ ପୁରସ୍କାର । |
| | – | ଗଞ୍ଜାମର ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍ ଦ୍ୱାରା ଇଣ୍ଡିଆ ଗଟ୍ ଟ୍ୟାଲେଣ୍ଟରେ ଶ୍ରେଷ୍ଠ ସ୍ଥାନ ହାସଲ । |
| ୨୦୧୦ | – | ୧୫ଶ ଜାତୀୟ ଯୁବ ଉତ୍ସବ ଭୁବନେଶ୍ୱରସ୍ଥିତ କଳିଙ୍ଗ ଷ୍ଟାଡିୟମରେ ଅନୁଷ୍ଠିତ । |
| | – | ପ୍ରଖ୍ୟାତ ଗାୟକ ଡ଼. ରଘୁନାଥ ପାଣିଗ୍ରାହୀ, ହକି ଖେଳାଳୀ ଇଗ୍‌ନେସ ତିର୍କୀ ଓ ଗୁରୁ ମାୟାଧର ରାଉତ ‘ପଦ୍ମଶ୍ରୀ’ ସମ୍ମାନ ପାଇଁ ମନୋନୀତ, ବିଶିଷ୍ଟ ହୃଦ୍‌ଶଲ୍ୟ ବିଶେଷଜ୍ଞ ଡ଼ା. ରମାକାନ୍ତ ପଣ୍ଡାଙ୍କୁ ‘ପଦ୍ମଭୂଷଣ’ ସମ୍ମାନ । |

– ରାଜ୍ୟଗୋଷ୍ଠୀ କ୍ରୀଡ଼ାରେ କେ. ରବି କୁମାରଙ୍କ ଦ୍ୱାରା ଭାରୋତ୍ତୋଳନ ବର୍ଗରେ ସ୍ୱର୍ଣ୍ଣ ପଦକ ହାସଲ ।

– ପ୍ରଖ୍ୟାତ ଭଜନ ଗାୟକ ତଥା ଭଜନ ସମ୍ରାଟ ଭାବେ ଜଣାଶୁଣା ଭିକାରୀ ବଳଙ୍କ ଦେହାନ୍ତ।

– ଲୋକସଭାରେ 'ଓରିଶା'ରୁ 'ଓଡ଼ିଶା' ଏବଂ 'ଓରିଆ'ରୁ 'ଓଡ଼ିଆ' ନାମ ପରିବର୍ତ୍ତନ ବିଲ୍ ଗୃହୀତ ।

– ଓଡ଼ିଶାର ନୌକା ଚାଳନାକାରୀ ପ୍ରତିମା ପୁହାଣ ଏବଂ ପ୍ରମିଳା ପ୍ରଭା ମିଞ୍ଜଙ୍କ ଦ୍ୱାରା ଏସିଆଡ୍ ଗେମ୍‌ସରେ ବ୍ରୋଞ୍ଜ ପଦକ ହାସଲ ।

– ପ୍ରଖ୍ୟାତ ବୈଜ୍ଞାନିକ ଡ଼. କୁଳମଣି ପରିଡା ଏବଂ ଡ଼. ରଜନୀକାନ୍ତ ଚୌଧୁରୀଙ୍କୁ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ବିଜୁ ପଟ୍ଟନାୟକ ସମ୍ମାନ ପ୍ରଦାନ ।

୨୦୧୧ – ୧ ନଭେମ୍ବରରେ ଭାରତ ସରକାର ଗେଜେଟ୍ ବିଜ୍ଞପ୍ତି ଜରିଆରେ ଓରିଶା(ଅଲ୍‌ଟରନେସନ ନାମ) ବିଲ୍ ୨୦୧୦ ଏବଂ ସମ୍ବିଧାନ ୧୧୩ ତମ ସଂଶୋଧନ ବିଲ୍ ସଂସଦରେ ଗୃହୀତ । ଗେଜେଟ ବିଜ୍ଞପ୍ତିରେ ଉଲ୍ଲେଖ ରହିଲା କି ପରିବର୍ତ୍ତିତ ନାମ ୨୦୧୧ ନଭେମ୍ବର ୧ରୁ ଲାଗୁ ହେବ। ବର୍ତ୍ତମାନ 'ଓରିଶା' ହେଲା 'ଓଡ଼ିଶା' ଏବଂ 'ଓରିଆ' ହେଲା 'ଓଡ଼ିଆ' ।

– ଭିନ୍ନକ୍ଷମମାନଙ୍କ ସଶକ୍ତିକରଣ କ୍ଷେତ୍ରରେ ଗଞ୍ଜାମ ଜିଲା ଦେଶର ଶ୍ରେଷ୍ଠ ଜିଲ୍ଲା ଭାବେ ରାଷ୍ଟ୍ରପତିଙ୍କଠାରୁ ପୁରସ୍କୃତ।

– ପ୍ରଖ୍ୟାତ ଚଳଚ୍ଚିତ୍ର ନିର୍ମାତା ଅପୂର୍ବ କିଶୋର ବୀରଙ୍କୁ ଜୟଦେବ ସମ୍ମାନ ।

– ୧୯ତମ ରାଜ୍ୟଗୋଷ୍ଠୀ କ୍ରୀଡ଼ାରେ ଭାରୋତ୍ତୋଳନ ବର୍ଗରେ ସ୍ୱର୍ଣ୍ଣ ପଦକ ହାସଲ କରିଥିବା କେ. ରବି କୁମାରଙ୍କୁ ଅର୍ଜୁନ ପୁରସ୍କାର ।

– ତିନି ପର୍ବତ ଆରୋହଣକାରୀ ଗଣେଶ ଚନ୍ଦ୍ର ଜେନା, ଯୋଗବ୍ୟାସ ଭୋଇ, ଦେବୀ ଦତ୍ତ ପଣ୍ଡାଙ୍କ ଏଭେରେଷ୍ଟ ଆରୋହଣ ।

– ବି.ଜେ.ଡି. ବିଧାୟକ ଜଗବନ୍ଧୁ ମାଝୀଙ୍କ ପରଲୋକ ପରେ ବିଜେଡି ବିଧାୟକ ସୁବାସ ଗୋଣ୍ଡ ଉମରକୋଟ ଉପନିର୍ବାଚନରେ ବିଜୟୀ ।

– ସାହିତ୍ୟିକ ଡ. ସୀତାକାନ୍ତ ମହାପାତ୍ରଙ୍କୁ ସାହିତ୍ୟ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ସମ୍ମାନଜନକ 'ପଦ୍ମଭୂଷଣ' ସମ୍ମାନ ।

– ଓଡ଼ିଶା ଗ୍ରାମପଞ୍ଚାୟତ ନିୟମ ୧୯୬୪ ସଂଶୋଧନକ୍ରମେ ମହିଳା ସଂରକ୍ଷଣ ୩୩ରୁ ୫୦ ପ୍ରତିଶତକୁ ବୃଦ୍ଧି ।

– ବାଲୁକାଶିଳ୍ପୀ ସୁଦର୍ଶନ ପଟ୍ଟନାୟକଙ୍କ ଆନ୍ତର୍ଜାତୀୟ ସ୍ତରରେ ସୁନାମ ଅର୍ଜନ ।

– ପ୍ରଖ୍ୟାତ ସାହିତ୍ୟିକ ତଥା ଶିକ୍ଷାବିତ୍ ନାରାୟଣ ପୃଷ୍ଟିଙ୍କ ଦେହାନ୍ତ।

– ଖଣି ଉତ୍ତୋଳନ କ୍ଷେତ୍ରରେ ହୋଇଥିବା ଅନିୟମିତତାର ତଦନ୍ତ ପାଇଁ ୯ ଓ ୧୦ ଡିସେମ୍ବରରେ ଶାହା କମିଶନଙ୍କ ଓଡ଼ିଶା ଆଗମନ ।

୨୦୧୨ – ୧୮ ଅପ୍ରେଲରେ ବରିଷ୍ଠ ସାହିତ୍ୟିକ ତଥା ସ୍ୱାଧୀନତା ସଂଗ୍ରାମୀ ଓ ପୂର୍ବତନ ମନ୍ତ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ଦେହାନ୍ତ ।

– ୨୨ ଅପ୍ରେଲ ରାଜସ୍ମିତା କର ଡ୍ୟାନ୍ସ ଇଣ୍ଡିଆ ଡ୍ୟାନ୍ସ ସିଜନ–୩ର ବିଜୟୀ ।

– ୨୫ ଅପ୍ରେଲରେ ଓଡ଼ିଶୀ ଗୁରୁ ମାୟାଧର ରାଉତ, ଗୋପାଳ ଚନ୍ଦ୍ର ପଣ୍ଡା ଏବଂ ପ୍ରଖ୍ୟାତ ସଙ୍ଗୀତଜ୍ଞ ନୀଳମାଧବ ପାଣିଗ୍ରାହୀଙ୍କୁ ସମ୍ମାନଜନକ ଟାଗୋର ଏକାଡେମୀ ରତ୍ନ ସମ୍ମାନ ।

– ୧୯ ଜୁନ୍‌ରେ ଓଡ଼ିଆ ଶଲ୍ୟ ଚିକିତ୍ସକ ଡ଼. ରମାକାନ୍ତ ପଣ୍ଡାଙ୍କୁ ‘ମେଡ୍ ସ୍କେପ୍ ଇଣ୍ଡିଆ’ ସମ୍ମାନ ।

– ୨୪ ଜୁନ୍‌ରେ ଦିଲ୍ଲୀଠାରେ କିମ୍ବଦନ୍ତୀ ଓଡ଼ିଶୀ ନୃତ୍ୟଗୁରୁ ହରେକୃଷ୍ଣ ବେହେରାଙ୍କ ଦେହାନ୍ତ ।

– ୧୫ ଅଗଷ୍ଟରେ ସାହିତ୍ୟ ସମାଲୋଚକ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ଦେହାନ୍ତ ।

– ୧୩ ସେପ୍ଟେମ୍ବରରେ ଭାରତର ପୂର୍ବତନ ମୁଖ୍ୟ ବିଚାରପତି ରଙ୍ଗନାଥ ମିଶ୍ରଙ୍କ ଦେହାନ୍ତ ।

– ୧୦ ଅକ୍ଟୋବରରେ ବିଶିଷ୍ଟ ଚିତ୍ରକର ଅଜିତ୍ କେଶରୀ ରାୟଙ୍କ ଦେହାନ୍ତ ।

୨୦୧୩ – ୧୨ ଅକ୍ଟୋବରରେ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ଭାବେ ଜଷ୍ଟିସ୍ ଆଦର୍ଶ କୁମାର ଗୋଏଲ୍ ଅବସ୍ଥାପିତ ।

– ୧୨ ଅକ୍ଟୋବରରେ ଫାଇଲିନ୍ ବାତ୍ୟା ଯୋଗୁଁ ଓଡ଼ିଶାର ବହୁ ଅଞ୍ଚଳରେ କ୍ଷୟକ୍ଷତି ।

– ସବ୍ୟସାଚୀ ମହାପାତ୍ରଙ୍କ ସମ୍ବଲପୁରୀ ଚଳଚ୍ଚିତ୍ର ‘ସଲାବୁଢ଼ା’ ଅନ୍ତର୍ଜାତୀୟ ଉତ୍ସବର ଭାରତୀୟ ପାନୋରାମା ପର୍ଯ୍ୟାୟ ପାଇଁ ମନୋନୀତ ।

– ୨୧ ମାର୍ଚ୍ଚରେ ଡ଼ଃ ଏସ୍. ସି. ଜମିର ଓଡ଼ିଶାର ରାଜ୍ୟପାଳଭାବେ ଅବସ୍ଥାପିତ ।

– ପୋଲିସ୍ ଏବଂ ସାଧାରଣ ଲୋକଙ୍କ ମଧ୍ୟରେ ଥିବା ଦୂରତାକୁ ହ୍ରାସ କରିବା ପାଇଁ ଅପ୍ରେଲ ୧ରେ କମ୍ୟୁନିଟି ପୋଲିସ୍ ବ୍ୟବସ୍ଥାର ପ୍ରଚଳନ।

– ୧ ଅପ୍ରେଲରେ ଓଡ଼ିଶାରେ ପ୍ରଥମ ତଥା ଭାରତର ବୃହତ୍ତମ ସାମୁଦ୍ରିକ ସଂଗ୍ରହାଳୟ ଯୋବ୍ରାଠାରେ ଉଦ୍‌ଘାଟିତ ।

– ୨୨ମେ’ରେ ବାଲଯୋଗୀ ସଭାଗୃହ, ନୂଆଦିଲ୍ଲୀଠାରେ ଅନୁଷ୍ଠିତ ୪୭ତମ ଜ୍ଞାନପୀଠ ସମ୍ମାନ ଉତ୍ସବରେ ୨୦୧୧ ବର୍ଷ ପାଇଁ ଓଡ଼ିଶାର ପ୍ରଖ୍ୟାତ ଲେଖିକା ପ୍ରତିଭା ରାୟଙ୍କୁ ରାଷ୍ଟ୍ରପତି ଶ୍ରୀ ପ୍ରଣବ ମୁଖାର୍ଜୀଙ୍କ ଦ୍ୱାରା ଏହି ସର୍ବୋଚ୍ଚ ସାହିତ୍ୟ ସମ୍ମାନ ପ୍ରଦାନ ।

– କୃଷି ତଥା ଆନୁଷଙ୍ଗିକ କ୍ଷେତ୍ର ଏବଂ କୃଷକମାନଙ୍କ ବିକାଶ ପାଇଁ ଓଡ଼ିଶା ରାଜ୍ୟ ସରକାରଙ୍କ ଦ୍ୱାରା ୧୯ ଫେବୃୟାରୀରେ ଏକ ସ୍ୱତନ୍ତ୍ର କୃଷି ବଜେଟ ଉପସ୍ଥାପନ । ସ୍ୱତନ୍ତ୍ର କୃଷି ବଜେଟ ଉପସ୍ଥାପନ କରିବାରେ ଓଡ଼ିଶା ଦେଶରେ ଦ୍ୱିତୀୟ ରାଜ୍ୟ ।

– ରାଜ୍ୟରେ ସଂକ୍ରାମକ ରୋଗ ବିଷୟରେ ସଚେତନତା ସୃଷ୍ଟି କରିବା ଲକ୍ଷ୍ୟ ନେଇ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ୧ଅଗଷ୍ଟ ୨୦୧୩ରେ ପତାକା ଦେଖାଇ 'ନିଧି ମଉସା ରଥ'ର ଶୁଭାରମ୍ଭ ।

– ୦୧ ଅପ୍ରେଲରେ କୃଷି ଓ କୃଷକର କଲ୍ୟାଣ ନିମନ୍ତେ ପ୍ରଣୀତ କୃଷି ନୀତି–୨୦୧୩ ଲାଗୁ ।

– ୦୭ ଅପ୍ରେଲରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ରାଜ୍ୟ ଯୁବ ନୀତି ଘୋଷିତ ।

– ଅନଲାଇନ୍ ବୁକିଂ ମାଧ୍ୟମରେ ଘର ନିକଟରେ ପନିପରିବା ଯୋଗାଇ ଦେବା ଲକ୍ଷ୍ୟ ନେଇ ୨୫ ନଭେମ୍ବରରେ ଭେଜି–କାର୍ଟ ବ୍ୟବସ୍ଥା ଆରମ୍ଭ ।

– ୨୬ ନଭେମ୍ବରରେ ବିଶିଷ୍ଟ ସାହିତ୍ୟିକ ମନୋରମା ମହାପାତ୍ରଙ୍କୁ ସାରଳା ସମ୍ମାନ ପ୍ରଦାନ ।

– ୦୧ଜାନୁୟାରୀରେ ଓଡ଼ିଶା ସରକାରଙ୍କ ଦ୍ୱାରା ଗୁଟ୍‌କା ଏବଂ ତମାଖୁ ଜାତୀୟ ପଦାର୍ଥର ଉତ୍ପାଦନ ଏବଂ ବିକ୍ରି ଉପରେ ପ୍ରତିବନ୍ଧକ ଲାଗୁ ।

– ୦୨ ଜାନୁୟାରୀଠାରୁ ଜନସେବା ଅଧିକାର ଅଧିନିୟମ ଲାଗୁ ।

୨୦୧୪ – ବିଧାନସଭାର ପୂର୍ବତନ ବାଚସ୍ପତି ଯୁଧିଷ୍ଠିର ଦାଶଙ୍କ ଦେହାନ୍ତ ।

– କୃଷି କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ଓଡ଼ିଶାକୁ 'କୃଷି କର୍ମଣ' ପୁରସ୍କାର ।

– ଷଷ୍ଠ ଭାରତୀୟ ଭାଷା ଭାବେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପ୍ରାପ୍ତି ।

– ଓଡ଼ିଶା ବିଧାନସଭାର ୧୫ତମ ସାଧାରଣ ନିର୍ବାଚନ ଅନୁଷ୍ଠିତ ।

– ୪ର୍ଥ ଥର ପାଇଁ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ ।

– ଓଡ଼ିଶା ସରକାରଙ୍କ ଦ୍ୱାରା ସରକାରୀ କର୍ମଚାରୀଙ୍କ ଅବସର ବୟସ ସୀମା ୫୮ରୁ ୬୦କୁ ବୃଦ୍ଧି ।

– ଓଡ଼ିଶା ରାଜ୍ୟ ବାଳିକା ଓ ମହିଳା ନୀତି–୨୦୧୪ ପ୍ରଣୀତ ।

– ୦୭ ଜୁଲାଇରେ ଶ୍ରୀ ସଞ୍ଜୀବ ମାରିକ ଓଡ଼ିଶାର ପୋଲିସ୍ ମହାନିର୍ଦ୍ଦେଶକ ଭାବେ ନିଯୁକ୍ତ ।

– ବାଲୁକା ଶିଳ୍ପୀ ସୁଦର୍ଶନ ପଟ୍ଟନାୟକ ୯ ଜୁଲାଇରେ ଆମେରିକାଠାରେ ସମ୍ମାନିତ ।

– ୦୧ ଅଗଷ୍ଟରେ ଶ୍ରୀ ଗୋକୁଳ ଚନ୍ଦ୍ର ପତିଙ୍କ ମୁଖ୍ୟ ଶାସନ ସଚିବ ଭାବେ ଦାୟିତ୍ୱ ଗ୍ରହଣ ।

୨୦୧୫ – ୨୧ ଅପ୍ରେଲରେ ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ବିଶିଷ୍ଟ ନେତା ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପରଲୋକ ।

– ୧୪ ଅକ୍ଟୋବରରେ ହୁଦ୍‌ହୁଦ୍ ବାତ୍ୟାରେ ଉପକୂଳ ଓଡ଼ିଶା କ୍ଷତିଗ୍ରସ୍ତ ।

– ସ୍ମାର୍ଟସିଟି ତାଲିକାରେ ଭୁବନେଶ୍ୱର ଦେଶରେ ପ୍ରଥମ ସହର ଭାବେ ମନୋନୀତ ।

– ୩୦ ନଭେମ୍ବରରେ ନୂତନ ମୁଖ୍ୟ ଶାସନ ସଚିବ ଶ୍ରୀ ଆଦିତ୍ୟ ପ୍ରସାଦ ପାଢୀଙ୍କ ଦାୟିତ୍ୱ ଗ୍ରହଣ ।

– ୧୮ ନଭେମ୍ବରରେ କଳିଙ୍ଗ ନଗରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ କରକମଳରେ ଟାଟା ଷ୍ଟିଲ୍ ପ୍ଲାଣ୍ଟ୍‌ର ଉଦ୍‌ଘାଟନ ।

– ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଭାରତର କ୍ଷେପଣାସ୍ତ୍ର ବିଜ୍ଞାନୀ ତଥା ପୂର୍ବତନ ରାଷ୍ଟ୍ରପତି ଡଃ ଏ.ପି.ଜେ. ଅବଦୁଲ କଲାମ୍‌ଙ୍କ ନାମରେ ଭଦ୍ରକ ଜିଲ୍ଲାର ହୁଇଲର୍ ଦ୍ୱୀପର ନାମକରଣ ।

– ପୁରୀଠାରେ ନୂତନ ସହସ୍ରାବ୍ଦର ପ୍ରଥମ ନବକଳେବର ଅନୁଷ୍ଠିତ ।

– ୨୧ ଡିସେମ୍ବରରେ ଭୁବନେଶ୍ୱର ଏକାମ୍ର କ୍ଷେତ୍ରକୁ 'ୟୁନେସ୍କୋ' ପକ୍ଷରୁ ବିଶ୍ୱ ଐତିହ୍ୟ ମାନ୍ୟତା ।

୨୦୧୬ – ରାଜ୍ୟ, ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ପାଳନ ।

– ୨୩ ମଇରେ ଓଡ଼ିଶା ସରକାରଙ୍କ ଭାଷା ବିଧେୟକ ପାରିତ ।

– ରିଓ ଅଲମ୍ପିକ୍ସ୍–୨୦୧୬ରେ ଅଂଶଗ୍ରହଣ ନିମନ୍ତେ ଦୁତୀ ଚାନ୍ଦ ଓ ଶ୍ରାବଣୀ ନନ୍ଦ ମନୋନୀତ ।

– ରାଜ୍ୟର ୩୦ଟି ଜିଲ୍ଲାକୁ ଗୋପବନ୍ଧୁ ଗ୍ରାମୀଣ ଯୋଜନା ସଂପ୍ରସାରିତ ।

– ୨୫ ଜୁଲାଇରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ପ୍ରଥମକରି ବ୍ରହ୍ମପୁରଠାରୁ 'ବରିଷ୍ଠ ନାଗରିକ ତୀର୍ଥଯାତ୍ରା ଯୋଜନା'ର ଶୁଭାରମ୍ଭ । ରାଜ୍ୟ ସରକାରଙ୍କଠାରୁ ସମସ୍ତ ସହାୟତାପ୍ରାପ୍ତ ହୋଇ ପ୍ରାୟ ୭୦୦ରୁ ଅଧିକ ବରିଷ୍ଠ ନାଗରିକ ଏହି ତୀର୍ଥଯାତ୍ରାରେ ସାମିଲ ହୋଇଥିଲେ ।

– ୧୨ ଅଗଷ୍ଟରେ ଓଡ଼ିଆ ଭାଷା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ରାଜ୍ୟ କ୍ୟାବିନେଟ୍‌ର ସ୍ୱୀକୃତି ପ୍ରଦାନ ।

– ୨୩ ମାର୍ଚ୍ଚରେ ପଞ୍ଚାୟତ ସଶକ୍ତିକରଣ ନିମନ୍ତେ ଓଡ଼ିଶା ଜାତୀୟ ସ୍ତରରେ ପୁରସ୍କୃତ ।

– ଭୁବନେଶ୍ୱରଠାରେ 'ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍' ଅନୁଷ୍ଠିତ ।

– ଓଡ଼ିଆ ଝିଅ ସେଲ୍‌ଭି ମିଶ୍ର ରାଜ୍ୟର ପ୍ରଥମ ମହିଳା ବିମାନଚାଳକ ହେଲେ ।

– ଓଡ଼ିଆ ବୈଜ୍ଞାନିକ ଡଃ କୋଟା ହରିନାରାୟଣଙ୍କ ଦ୍ୱାରା ସ୍ୱଦେଶୀ ଜ୍ଞାନ କୌଶଳରେ ଯୁଦ୍ଧବିମାନ 'ତେଜସ୍'ର ନିର୍ମାଣ ।

– ୫୯୪ଟି ନୂତନ ଗ୍ରାମପଞ୍ଚାୟତ ହେବା ପରେ ଓଡ଼ିଶାରେ ଗ୍ରାମପଞ୍ଚାୟତ ସଂଖ୍ୟା ୬,୨୦୮ରୁ ୬,୮୦୨କୁ ବୃଦ୍ଧି ।

– ବିଭିନ୍ନ ସରକାରୀ ସେବା ଉପଲବ୍ଧି ନିମନ୍ତେ ଆଟେଷ୍ଟେସନ ବ୍ୟବସ୍ଥାର ଶେଷ ନିମନ୍ତେ ରାଜ୍ୟ ସରକାରଙ୍କ ନିଷ୍ପତ୍ତି ।

- ଲଗାତର ୫ ବର୍ଷ ଧରି କୃଷି କ୍ଷେତ୍ରରେ ସାମଗ୍ରିକ ବିକାଶ ନିମନ୍ତେ ଚତୁର୍ଥ ଥର ପାଇଁ ଓଡ଼ିଶାକୁ 'କୃଷି କର୍ମଣ' ପୁରସ୍କାର ।
- ଓଡ଼ିଶାକୁ ନବମ ଗ୍ଲୋବାଲ୍ ଏଗ୍ରିକଲ୍‌ଚର ଲିଡରସିପ୍ ଆୱାର୍ଡ, ୨୦୧୬ ।
- ଓଡ଼ିଶା ବିଧାନସଭାରେ ଜି.ଏସ୍.ଟି. ଉପରେ ସାମ୍ବିଧାନିକ ସଂଶୋଧନ ବିଧେୟକ ପାରିତ ।
- ୨୩ ଡିସେମ୍ବରରେ ପ୍ରବୀଣ ପାଇଲଟ୍ ବିଜୁ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ଅବସରରେ କଟକଠାରେ ଭାରତୀୟ ବିମାନ ବାହିନୀ ପକ୍ଷରୁ ସାହସିକ ଏୟାର ସୋ' ପ୍ରଦର୍ଶିତ ।
- ୧୪ ଜୁନ୍‌ରେ ବିଶିଷ୍ଟ ସାହିତ୍ୟିକ ଅନ୍ନଦା ପ୍ରସାଦ ରାୟଙ୍କ ପରଲୋକ ।
- ୩୦ ଡିସେମ୍ବରରେ ବିଶିଷ୍ଟ ସାହିତ୍ୟିକ ଗୋପାଳକୃଷ୍ଣ ରଥଙ୍କ ପରଲୋକ ।
- ପଶୁ ସମ୍ପଦ ବିକାଶ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ନିମନ୍ତେ ଡଃ ବୀରକିଶୋର ପରିଜାଙ୍କୁ 'ବିଜୁ ବିଜ୍ଞାନୀ ସମ୍ମାନ' ପ୍ରଦାନ ।
- ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ସୁରେନ୍ଦ୍ରନାଥ ପଶୁପାଳକଙ୍କୁ 'ପ୍ରାଣକୃଷ୍ଣ ପରିଜା ସମ୍ମାନ' ।

୨୦୧୭

- ରାଜ୍ୟରେ ଥିବା ମୋଟ ୫୮୯ଟି ଥାନାରୁ ୧୬୨ଟି ଥାନାରେ ସିସିଟିଏସ୍ (କ୍ରାଇମ୍ କ୍ରିମିନାଲ୍ ଟ୍ରାକିଂ ନେଟ୍‌ୱାର୍କ ସିଷ୍ଟମ) କାର୍ଯ୍ୟକାରୀ ହେବା ସହିତ ଥାନାମାନଙ୍କରେ ଅନ୍‌ଲାଇନ୍‌ରେ ଏତଲା ଗ୍ରହଣର ନିଷ୍ପତ୍ତି । ୨୦୧୮ ମସିହାରୁ ପ୍ରତ୍ୟେକ ଥାନାରେ ରେଜିଷ୍ଟର ବଦଳରେ କମ୍ପ୍ୟୁଟର ଓ ଲାପ୍‌ଟପ୍ ବ୍ୟବହାର ପାଇଁ ରାଜ୍ୟ ସରକାରଙ୍କ ନିଷ୍ପତ୍ତି ।
- ୧୮୧୭ ମସିହାରେ ଇଂରେଜମାନଙ୍କ ବିରୁଦ୍ଧରେ ଆରମ୍ଭ ହୋଇଥିବା ପାଇକ ବିଦ୍ରୋହର ୨୦୦ ବର୍ଷ ପୂର୍ତ୍ତି ସମାରୋହ ଉଭୟ କେନ୍ଦ୍ର ସରକାର ଓ ରାଜ୍ୟ ସରକାରଙ୍କ ଦ୍ୱାରା ପାଳିତ ।
- ୬ ମାର୍ଚ୍ଚରେ କଟକଠାରେ ନବମ ଲୋକସଭାର ବାଚସ୍ପତି ତଥା ପୂର୍ବତନ କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ରବି ରାୟଙ୍କ ପରଲୋକ ।
- ପ୍ରଖ୍ୟାତ କଣ୍ଠଶିଳ୍ପୀ ପ୍ରଣବ କିଶୋର ପଟ୍ଟନାୟକଙ୍କୁ ୨୦୧୭ ବର୍ଷ ପାଇଁ ଜୟଦେବ ପୁରସ୍କାର ।
- କଟକର ଆନନ୍ଦ ଭବନରେ ବିଜୁ କର୍ଣ୍ଣର ପ୍ରତିଷ୍ଠା ପାଇଁ ନିଷ୍ପତ୍ତି । ବିଜୁ ପଟ୍ଟନାୟକଙ୍କ ଜନ୍ମଶତବାର୍ଷିକୀ ଅବସରରେ ରାଜ୍ୟ ସଂସ୍କୃତି ବିଭାଗ ପକ୍ଷରୁ ଏହା ଘୋଷିତ । ଏଥିରେ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକ ବ୍ୟବହାର କରୁଥିବା ପ୍ରିୟ ଡାକୋଟା ବିମାନ ସର୍ବସାଧାରଣଙ୍କୁ ପ୍ରଦର୍ଶନ ନିମନ୍ତେ ସ୍ଥାନ ପାଇବ ବୋଲି ଘୋଷଣା ।

- ବିଶିଷ୍ଟ ମଞ୍ଚକଳା ନିର୍ଦ୍ଦେଶକ ଅସୀମ ବସୁ, ସାହିତ୍ୟିକ ଓ ଭାଷାବିତ୍ ଖଗେଶ୍ୱର ମହାପାତ୍ର, ବିଶିଷ୍ଟ ଅଭିନେତା ମୀନକେତନ, କଳା ନିର୍ଦ୍ଦେଶକ ବୁଢ଼ା ମହାରଣା, ନାଟ୍ୟକାର ଡା.ସୁବୋଧ ପଟ୍ଟନାୟକ, କଥାକାର ଉମାଶଙ୍କର ମିଶ୍ର, ବିଶିଷ୍ଟ ଲେଖକ ସୀତାକାନ୍ତ ମହାନ୍ତି, କେଲୁ ଚରଣ ବେହେରା ଓ ସାହିତ୍ୟିକା ଡ. ଇନ୍ଦୁ ମିଶ୍ରଙ୍କ ପରୋଲୋକ ।
- ୨୦୧୭ ମସିହା ନିମନ୍ତେ ବିଶିଷ୍ଟ ଚଳଚ୍ଚିତ୍ର ନିର୍ଦ୍ଦେଶକ ଓ ଅଭିନେତା ସାଧୁ ମେହେର, ଓଡ଼ିଶୀ ନୃତ୍ୟଶିଳ୍ପୀ ଡ. ଅରୁଣା ମହାନ୍ତି, ସମ୍ବଲପୁରୀ କଣ୍ଠଶିଳ୍ପୀ ଡ. ଜିତେନ୍ଦ୍ରିୟ ହରିପାଲ ଓ ଡାକ୍ତର ମୁକୁଟ ମିଞ୍ଜଙ୍କୁ 'ପଦ୍ମଶ୍ରୀ' ସମ୍ମାନ ।
- ପରିବେଶବିତ୍ ତଥା ସମାଜସେବୀ ପ୍ରଫୁଲ୍ଲ ସାମନ୍ତରାଙ୍କୁ ସବୁଜ ନୋବେଲ (ଗ୍ରୀନ୍ ନୋବେଲ୍) ପୁରସ୍କାର ।
- ବିଶିଷ୍ଟ କବି ରବି ସିଂଙ୍କୁ ଅତିବଡ଼ୀ ପୁରସ୍କାର ।
- ବନମାଳୀ ମହାରଣାଙ୍କୁ କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ସମ୍ମାନ ।
- ଓଡ଼ିଶୀ ନୃତ୍ୟଗୁରୁ ରତିକାନ୍ତ ମହାପାତ୍ର, ସତ୍ୟବ୍ରତ ରାଉତ ଓ ଲକ୍ଷ୍ମୀଧର ରାଉତଙ୍କୁ କେନ୍ଦ୍ର ସଂଗୀତ ନାଟକ ଏକାଡ଼େମୀ ପୁରସ୍କାର ।
- ୬୪ତମ ଜାତୀୟ ଚଳଚ୍ଚିତ୍ର ପୁରସ୍କାର ନିମନ୍ତେ ବିଭିନ୍ନ ବିଭାଗରେ ୪ଜଣ ଓଡ଼ିଆ ମନୋନୀତ । ସେମାନେ ହେଲେ ନୀଳମାଧବ ପଣ୍ଡା, ଲିପିକା ସିଂ, ଶିବୁ ପୃଷ୍ଟି ଓ ଶଙ୍ଖଜିତ୍ ଦେ ।
- ୬ ଜୁଲାଇରୁ ୯ ଜୁଲାଇ ପର୍ଯ୍ୟନ୍ତ ଓଡ଼ିଶାରେ ଏସିଆନ୍ ଆଥ୍ଲେଟିକ୍ ମିଟ୍ ଅନୁଷ୍ଠିତ । ଏସିଆନ୍ ଆଥ୍ଲେଟିକ୍ ମିଟ୍‌ରେ ଓଡ଼ିଆ ଧାବିକା ଦୂତୀ ଚାନ୍ଦ, ଶ୍ରାବଣୀ ନନ୍ଦ ଓ ପୂର୍ଣ୍ଣିମା ହେମ୍ବ୍ରମ୍‌ଙ୍କ ପଦକ ଲାଭ । ରାଜଧାନୀ ଭୁବନେଶ୍ୱରର କଳିଙ୍ଗ ଷ୍ଟାଡିୟମ୍‌ରେ ଅନୁଷ୍ଠିତ ଏହି ଆୟୋଜନ ନିମନ୍ତେ ଓଡ଼ିଶା ବହୁଳ ପ୍ରଶଂସିତ ।
- ୨୫ ଜୁଲାଇରେ ରାଜ୍ୟର ୯ଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାର ଜନଜାତିମାନଙ୍କ ବିକାଶ ପାଇଁ ସ୍ୱତନ୍ତ୍ର ବିକାଶ ପରିଷଦ ଗଠନ କରାଯିବାକୁ  ନିଷ୍ପତ୍ତି । ମୟୂରଭଞ୍ଜ, କେଉଁଝର, ସୁନ୍ଦରଗଡ, କନ୍ଧମାଳ, ଗଜପତି, କୋରାପୁଟ, ରାୟଗଡା, ମାଲକାନଗିରି ଓ ନବରଙ୍ଗପୁର ଜିଲ୍ଲାର ୧୧୭ଟି ବ୍ଲକ୍‌ରେ ରହୁଥିବା ୬୨ଟି ବର୍ଗର ଜନଜାତିଙ୍କ ସାଂସ୍କୃତିକ, ଶୈକ୍ଷିକ ଓ ଆର୍ଥିକ ବିକାଶ ନିମନ୍ତେ ଏହି ପରିଷଦଗୁଡିକ ଗଠନ କରାଯିବ ।
- ଅରୁଣ ଶର୍ମାଙ୍କ ରଚିତ ଅହମିୟା ଉପନ୍ୟାସର ଅନୁବାଦ ' ଆଶୀର୍ବାଦର ରଙ୍ଗ' ପାଇଁ ଓଡ଼ିଆ ଲେଖିକା ମୋନାଲିସା ଜେନାଙ୍କୁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଅନୁବାଦ ପୁରସ୍କାର ।
- ପାଇକ ବିଦ୍ରୋହର ୨୦୦ ବର୍ଷ ପୂର୍ତ୍ତି ଅବସରରେ 'ବସୁଧା' ନାମରେ ପାନୀୟ ଜଳ ଯୋଗାଣ ଯୋଜନା କାର୍ଯ୍ୟକାରୀ କରିବାକୁ ମୁଖ୍ୟମନ୍ତ୍ରୀଙ୍କ ଘୋଷଣା ।

– ୧୯ ଅଗଷ୍ଟରେ 'ଆଉଟ୍ ଲୁକ୍' ପତ୍ରିକା ତରଫରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କୁ ଶ୍ରେଷ୍ଠ ପ୍ରଶାସକ ସମ୍ମାନ ।

– ୨୨ ଅଗଷ୍ଟରେ ବିଜେପୁରର ବିଧାୟକ ସୁବଳ ସାହୁଙ୍କ ପରଲୋକ ।

– ୨୮ ଅଗଷ୍ଟରେ ସର୍ବୋଚ୍ଚ ନ୍ୟାୟାଳୟର ପ୍ରଧାନ ବିଚାରପତି ଭାବେ ଜଷ୍ଟିସ୍ ଦୀପକ ମିଶ୍ରଙ୍କ ଶପଥ ଗ୍ରହଣ । ସର୍ବୋଚ୍ଚ ନ୍ୟାୟାଳୟର ବିଚାରପତି ରୂପେ ଅଧିଷ୍ଠିତ ହେବାରେ ଜଷ୍ଟିସ୍ ମିଶ୍ର ତୃତୀୟ ଓଡ଼ିଆ ।

– ୧୧ ସେପ୍ଟେମ୍ବରରେ ରାଜ୍ୟର ପୂର୍ବତନ ସ୍ୱାସ୍ଥ୍ୟମନ୍ତ୍ରୀ ସୈଦ୍ ମୁସ୍ତାଫିଜ୍ ଅହମ୍ମଦ୍‌ଙ୍କ ପରଲୋକ ।

– ୦୧ ଡିସେମ୍ବରରୁ ୧୦ ଡିସେମ୍ବର ପର୍ଯ୍ୟନ୍ତ ଭୁବନେଶ୍ୱରର କଳିଙ୍ଗ ଷ୍ଟାଡିୟମ୍‌ରେ ହକି ୱାର୍ଲ୍ଡ ଲିଗ୍ ଫାଇନାଲ – ୨୦୧୭ ଅନୁଷ୍ଠିତ ।

– ୨୬ ଡିସେମ୍ବରରେ ବିଧାନସଭା ବାହାରେ ପୁରୀଠାରେ ପ୍ରଥମଥର ପାଇଁ ସ୍ୱତନ୍ତ୍ର କ୍ୟାବିନେଟ୍ ବୈଠକ ଅନୁଷ୍ଠିତ । ରାଜ୍ୟରେ ଭାଷା କମିଶନ ଓ ଐତିହ୍ୟ କ୍ୟାବିନେଟ୍ ଗଠନ ପାଇଁ ନିଷ୍ପତ୍ତି । ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଛାତ୍ରଛାତ୍ରୀମାନଙ୍କୁ ଓଡ଼ିଆ ଭାଷା ଶିକ୍ଷା ନିମନ୍ତେ ପାଠ୍ୟକ୍ରମ ଦେୟ ଛାଡ ପାଇଁ ନିଷ୍ପତ୍ତି । ସଂସ୍କୃତି ବିଭାଗ ନାମ ପରିବର୍ତ୍ତିତ ହୋଇ 'ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି' ବିଭାଗ ରଖାଯିବାକୁ ନିଷ୍ପତ୍ତି ।

– ୨୯ ଡିସେମ୍ବରରୁ ଅନ୍‌ଲାଇନ୍ ମାଧ୍ୟମରେ ଜମିଜମା ସଂକ୍ରାନ୍ତୀୟ ମ୍ୟୁଟେସନ୍ କାର୍ଯ୍ୟର ଶୁଭାରମ୍ଭ । ରାଜ୍ୟର ୨୫ଟି ଜିଲ୍ଲାର ୩୮ଟି ତହସିଲ୍‌ରେ ପ୍ରାରମ୍ଭିକ ପର୍ଯ୍ୟାୟରେ ଏହି ବ୍ୟବସ୍ଥା ଆରମ୍ଭ ।



# ସ୍ମୃତି ଓ ବିସ୍ମୃତିରେ ଓଡ଼ିଶାର ନୌସଂପଦ

ଡକ୍ଟର ତୁଳସୀ ଓଝା

ପ୍ରାଗ୍ ଐତିହାସିକ କାଳରୁ ଏକ ସଂସ୍କୃତିସଂପନ୍ନ ତଥା ବୈଭବଶାଳୀ ରାଷ୍ଟ୍ର ଭାବରେ କଳିଙ୍ଗ, ଉତ୍କଳ, ଉଡ୍ରଦେଶ ଆଦି ଭାବରେ ପ୍ରଖ୍ୟାତ ଏକ ଭୂଖଣ୍ଡର ସୁଖ୍ୟାତି ରହି ଆସିଛି । ଏହାର କଳା, ଶିଳ୍ପ, ବାଣିଜ୍ୟ ଆଦି ଏତେ ସମୃଦ୍ଧ ଥିଲା ଯେ ଭାରତର ବିଭିନ୍ନ ପ୍ରାନ୍ତ ସହିତ ପଶ୍ଚିମ ଭୂଖଣ୍ଡ ମଧ୍ୟ ଏ ରାଜ୍ୟ ପ୍ରତି ଆକର୍ଷିତ ହେଉଥିଲେ । ସମୃଦ୍ଧିଶାଳୀ ମଗଧ ସାମ୍ରାଜ୍ୟ ଉତ୍ତର ପଶ୍ଚିମ ଭାରତକୁ ସଂପୂର୍ଣ୍ଣ କରାୟତ କରିଥିଲେ ମଧ୍ୟ କଳିଙ୍ଗ ବିଜୟ ତାଙ୍କ ପାଇଁ ସ୍ୱପ୍ନ ଥିଲା । ଏ ରାଜ୍ୟକୁ ବିଶେଷ ସମୃଦ୍ଧିଶାଳୀ କରିଥିଲା ତା'ର ନୌବାଣିଜ୍ୟ । କାରଣ ଏହା ଏକ ନଦୀ ସମୃଦ୍ଧ ରାଜ୍ୟ । ଏହି ରାଜ୍ୟ ମଧ୍ୟରେ ମହାନଦୀ, ବୈତରଣୀ, ଋଷିକୂଲ୍ୟା, ସୁବର୍ଣ୍ଣରେଖା, ବୁଢ଼ାବଳଙ୍ଗ, ନାଗାବଳୀ, ବଂଶଧାରା, ପ୍ରାଚୀ, ଚିତ୍ରୋତ୍ପଳା, ବ୍ରାହ୍ମଣୀ ଆଦି ଅସଂଖ୍ୟ ନଦୀ ସହିତ ଅଳକା, ଦେବୀ, କାଂସ, କୋୟଲ, କୁଶଭଦ୍ରା,ଦୟା, ଭାର୍ଗବୀ, ଧନୁଆଁ ଇତ୍ୟାଦି ବହୁ ଉପନଦୀ ପ୍ରବାହିତ ହୋଇ ବଂଗୋପସାଗରରେ ପଡିଛି । ଏଥିପାଇଁ ତାମ୍ରଲିପ୍ତଠାରୁ ଆରମ୍ଭ କରି କଳିଙ୍ଗ ପଭନମ୍ ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ସମୁଦ୍ର ଥିବାରୁ ଏଠାରେ ଅସଂଖ୍ୟ ବନ୍ଦର ମଧ୍ୟ ଥିଲା । କାଂଚନପୁର, ଦନ୍ତପୁର, ପିହୁଣ୍ଡା, ରାଜପୁର, ପଷ୍ଡରୀ, ତାମ୍ରଲିପ୍ତ, ହଠାଶୀଶ, ଛତ୍ରଗଡ ଗଇନଡା, ମାଣିକପାଟଣା, କଟି, କଦର୍ମ, କୋଣାର୍କ, ମାନଦା, କୋଭବର, ସିପ୍ପାରା, ମିନାଗରା, ଧାମରା, କଳିଙ୍ଗପଭନମ୍, ପିପିଲି, ହରିଶପୁର, ବାଲେଶ୍ୱର, ଚାନ୍ଦବାଲି, ଗଂଜାମ, ବାଣପୁର, ଇଚ୍ଛାବତୀ, କୁହୁଡ଼ି, ହଳଦିଆ ଆଦି ଅସଂଖ୍ୟ ବନ୍ଦର ଥିଲା । କିଛି ବନ୍ଦର ନଦୀ ଶଯ୍ୟାରେ ଓ କିଛି ବନ୍ଦର ସମୁଦ୍ର ଓ ନଦୀର ମୁହାଣରେ ଅବସ୍ଥିତ ଥିଲା । ଏହି ବନ୍ଦର ମଧ୍ୟଦେଇ ଓଡ଼ିଶାର ସାଧବ(ବିଶେଷ ବ୍ୟବସାୟୀ ଗୋଷ୍ଠୀ)ମାନେ ସୁଦୂର ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବ୍ରହ୍ମଦେଶ, ମିଶର ଓ ପଶ୍ଚିମ ଏସିଆର ବହୁ ଅଂଚଳରେ ବାଣିଜ୍ୟ କାରବାର କରୁଥିଲେ । ଓଡ଼ିଶାରୁ ସେମାନେ ଚାଉଳ, ଲୁଣ, ତନ୍ତଲୁଗା, କପା, ଟସର ଆଦି ସହିତ ସୁନା, ରୂପା, ଲୁହା ଆଦି ଧାତୁରେ ନିର୍ମିତ ବିଭିନ୍ନ ମୂର୍ତ୍ତି ଓ ମଣିମାଣିକ୍ୟାଦିର ବେପାର କରି ବହୁ ଅର୍ଥ ଉପାର୍ଜନ କରିଥିଲେ । ଏହା ସହିତ ଓଡିଶାର କୁଶଳୀ କାରିଗରମାନେ ନିଜେ ବିଭିନ୍ନ ଆକାର ଓ ପ୍ରକାରର ସାମୁଦ୍ରିକ ବୋଇତମାନ ନିର୍ମାଣ କରୁଥିଲେ, ଯାହା ସହଜରେ ସାମୁଦ୍ରିକ ଝଡ ଆଦିର ସାମ୍ନା କରିବାକୁ ସକ୍ଷମ ଥିଲା । ଆବଶ୍ୟକତାର ପ୍ରକାରଭେଦ ଯଥା ଜଳକ୍ରୀଡା, ବାଣିଜ୍ୟ, ସାମରିକ ପୋତ ଆଦି ତଥା ଜଳବାୟୁର ପ୍ରବର୍ତ୍ତନକୁ ଦୃଷ୍ଟିରେ ରଖି ଭିନ୍ନ ଭିନ୍ନ ଜାତିର ଓ ଭିନ୍ନ ଆକାରର ସାମୁଦ୍ରିକ ପୋତ ନିର୍ମାଣର କୌଶଳ ସେମାନଙ୍କୁ ଜଣାଥିଲା । ଯୁକ୍ତି କଳ୍ପତରୁ, ପାଇକଖେଦା ଆଦି ଗ୍ରନ୍ଥମାନଙ୍କରେ ଶାଳ, ତାଳ, କଥାଲ ଆଦି କାଠରେ ନିର୍ମିତ ଅସଂଖ୍ୟ ବୋଇତମାନଙ୍କର ବର୍ଣ୍ଣ ଆକାର ଓ ନାମାଙ୍କନର ଦୀର୍ଘ ତାଲିକା ଦେଖିବାକୁ ମିଳେ । 'ପାଇକ ଖେଦା'ରେ ଓଡ଼ିଶାର ନୌସଂପଦର ଏକ ଚମତ୍କାର ବର୍ଣ୍ଣନା ରହିଛି ।

'ବହିତର ଗାଣ୍ଡିଆ, ଚୋଟମୁଖୀ ବଣିଜରେ
ଏହା ସାର ପରଖି
ସମରେ ନୁହଁଇ ସମରେ ଅଟେ ସୁର ଚତୁରୀ
ପୁଣ ପୁଣ ରାଜପୁର, ଲାଂଜୁଆ ଖାଇଜଙ୍ଗା
ଗଂଗା ପ୍ରସାଦ ଠିଆ

ନନ୍ଦିଆ, ଖୁଡୁପଗୁରୁ ଏମାନ, ଗୁଣ କରିବା ଗୁଣ ସାବଧାନ
ଲାଞ୍ଜୁଆ ଯେ ଚାରୁ ଦୂରୁ ଦିଶଇ ଯେହ୍ନେ ମହାମେରୁ ।'

ଏହି ବର୍ଣ୍ଣନା ଅନୁଯାୟୀ ନଅ ପ୍ରକାର ବୋଇତରୁ ତିନୋଟି ବାଣିଜ୍ୟ ଓ ଛଅଟି ଯୁଦ୍ଧ ଜାହାଜ ଅଟେ । ଏଥିରୁ ଜଣାପଡେ ନୌସଂପଦକୁ ସୁରକ୍ଷିତ ରଖିବା ନିମିତ୍ତ ଉନ୍ନତ କଳାକୌଶଳ ସମ୍ପନ୍ନ ଯୁଦ୍ଧ ଜାହାଜ ମଧ୍ୟ ଓଡ଼ିଶାର କାରିଗରମାନେ ନିର୍ମାଣ କରୁଥିଲେ । କିନ୍ତୁ କାଳକ୍ରମେ ଓଡ଼ିଶାର ଏହି ସମୃଦ୍ଧ ପରଂପରାଟି ଓଲନ୍ଦାଜ, ପର୍ତ୍ତୁଗୀଜ ତଥା ଅନ୍ୟାନ୍ୟ ବିଦେଶୀ ଜଳଦସ୍ୟୁ ଓ ଆକ୍ରମଣକାରୀମାନଙ୍କର ଚକ୍ରାନ୍ତ ଫଳରେ ଲୋପ ପାଇଗଲା । ତଥାପି ତା'ର ଛିନ୍ନ ବିଚ୍ଛିନ୍ନ ସ୍ମୃତିକୁ ଓଡ଼ିଶାର ଜନସାଧାରଣ କିଛି ଧାର୍ମିକ କିଛି ପାରଂପରିକ ଓ କିଛି ସାଂସ୍କୃତିକ ରୂପ ପ୍ରଦାନ କରି ବଞ୍ଚାଇ ରଖିଛନ୍ତି । ଆଜି ଯାନ୍ତ୍ରିକ ଯାନର ବ୍ୟବହାର ଫଳରେ ବୋଇତ ବା ତରୀର ବ୍ୟବହାର କମିଗଲେ ମଧ୍ୟ ଦୁର୍ଗମ ନଦୀ ଶଯ୍ୟା ଅଂଚଳରେ ଡଙ୍ଗା ନାହା ଓ ଚାପର ଯଥାରୀତି ବ୍ୟବହାର ଦେଖିବାକୁ ମିଳେ । ଏହା ବ୍ୟତୀତ ପ୍ରାୟତଃ ଓଡ଼ିଶାର ଲୋକ ସଂସ୍କୃତିରେ ଏହାକୁ ଜୀବିତ ରଖିଛି, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଚନ୍ଦନ ଚାପ, ଚୈତ୍ର ପୂର୍ଣ୍ଣିମାରେ କୈବର୍ତ୍ତ ସଂପ୍ରଦାୟର ନୌକାପୂଜା ଓ କାର୍ତ୍ତିକ ପୂର୍ଣ୍ଣିମାରେ ଓଡ଼ିଶାରେ ସାଧାରଣ ଜନତାଙ୍କର ବୋଇତ ବନ୍ଦାଣ ପର୍ବ ।

**୧. ଚନ୍ଦନ ଚାପ–** ଶିଳ୍ପ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ରହିଛି ବୃହଦାକାର ଜାହାଜ ବିଶେଷତଃ ଦୁଇଟି ଜାହାଜକୁ ଯୋଡି ଅଧିକ ବିପଣୀ ବା ମାଲ୍ ପରିବହନ ନିମିତ୍ତ ଯେଉଁ ବାଣିଜ୍ୟ ତରୀର ବ୍ୟବସ୍ଥା ହୁଏ, ତାହାକୁ ଚାପ କୁହାଯାଏ । ଏଗୁଡିକ ଦୀର୍ଘପଥ ଅତିକ୍ରମ କରିବା ନିମିତ୍ତ ଉଦ୍ଦିଷ୍ଟ ହୋଇଥାନ୍ତି । କିନ୍ତୁ କାଳକ୍ରମେ ଏହି ଚାପ ରାଜ ପରିବାରମାନଙ୍କର ନୌକା ବିହାର ନିମନ୍ତେ ଉଦ୍ଦିଷ୍ଟ ହୋଇଥିବାର ସଂଭାବ୍ୟ ପ୍ରମାଣ ପ୍ରାଚୀନ ଚିତ୍ରକାବ୍ୟମାନଙ୍କରୁ ମିଳିଥାଏ । ମହାପ୍ରଭୁ ଶ୍ରୀଜଗନ୍ନାଥ ବୈଶାଖ ମାସରେ ଚନ୍ଦନ ପୋଖରୀରେ ନୌକା ବିହାର କରିବାକୁ ଆସି ଏହି ଚାପରେ ବିଜେ କରିଥାନ୍ତି । ଦୁଇଟି ହଂସ ଆକାରର ନୌକାକୁ ଯୋଡି ଏହି ଚାପ ପ୍ରସ୍ତୁତ ହୋଇଥାଏ । ଏହି ଦୁଇ ଚାପରେ ଦୁଇଟି ଧଳା ଓ ଲାଲ୍ ରଂଗର ସୁଦୃଶ୍ୟ ବିମାନ ସଜ୍ଜିତ ହୋଇଥାଏ । ଏହି ବିମାନ ମଧ୍ୟରେ ଥିବା ରୌପ୍ୟ ସିଂହାସନରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ମଦନ ମୋହନ, ଭୂଦେବୀ, ଶ୍ରୀଦେବୀ ବିଜେ କରୁଥିବାସ୍ଥଳେ ଅନ୍ୟ ଚାପଟିରେ ରାମକୃଷ୍ଣ ଏବଂ ପଂଚ ମହାଦେବ ବିଜେ କରନ୍ତି । ଏହି ଶୈଳୀକୁ ଅନୁସରଣ କରି ଓଡ଼ିଶାର ଅନ୍ୟାନ୍ୟ ଦେବଦେବୀ ପୀଠରେ ମଧ୍ୟ ପୁଷ୍କରିଣୀ ମଧ୍ୟରେ ଜଳକ୍ରୀଡା ଉତ୍ସବ ପାଳିତ ହୁଏ ।

**୨. କୈବର୍ତ୍ତ ସଂପ୍ରଦାୟର ନୌକାପୂଜା–** କୈବର୍ତ୍ତ ଗୀତାରେ ଉଲ୍ଲେଖ ଅଛି–ସ୍ୱୟଂଭୂ ପରଂବ୍ରହ୍ମ ପ୍ରଳୟ କାଳରେ ସୂକ୍ଷ୍ମ ରୂପ ଧାରଣ କରି କଳ୍ପବଟର ଏକ ବଟପତ୍ର ଉପରେ ବିଶ୍ରାମ କରୁଥାନ୍ତି । କିନ୍ତୁ ପ୍ରଳୟ ଜଳର ସ୍ରୋତ ବାରଂବାର ବଟବୃକ୍ଷକୁ ଆନ୍ଦୋଳିତ କରୁଥିବାରୁ ଶ୍ରୀହରିଙ୍କର ବିଶ୍ରାମରେ ବ୍ୟାଘାତ ସୃଷ୍ଟି ହେଉଥାଏ । କିପରି ତାଙ୍କ ନିଦ୍ରାରେ ବ୍ୟାଘାତ ନହେବ ଏହିପରି ଚିନ୍ତା କରୁ କରୁ ଆଦିମୂଳ ତାଙ୍କ କର୍ଣ୍ଣମୂଳରୁ କିଛି ମଳିନେଇ ଜଳରେ ପକାଇ ଦେଲେ  ଏବଂ ସେଇ ମଳିରୁ ଜଳ ମଧ୍ୟରୁ ଏକ ଦିବ୍ୟପୁରୁଷର ଆବିର୍ଭାବ ଘଟିଲା । ସେହି ପୁରୁଷ ନିଜର ପରିଚୟ ଜିଜ୍ଞାସା କରିବାରୁ ଆଦିମୂଳ ତା'ର ଜନ୍ମ ପରିଚିତି ଦେଇ କହିଲେ–

'ପ୍ରଳୟ ଜଳରେ ଆମ୍ଭେ ଶୋଇ ନପାରିଲୁ
ତେଣୁ କରି କର୍ଣ୍ଣମୂଳୁଂ ତୋତେ ଜାତ କଲୁଂ
କର୍ଣ୍ଣମୂଳୁଂ ଜାତ ତୋର ଜାତି କଇବର୍ତ୍ତ
କଇବର୍ତ୍ତ ଦାସ ରାଜା ନାମ ତୋର ଖ୍ୟାତ ।'

କୈ.ଗୀ.ପୃଷ୍ଠା–୫

ଏହାପରେ ମହାବିଷ୍ଣୁଙ୍କ ଆଦେଶରେ କଣ୍ଡିଆର ଯୋଗେ ଦାସ ରାଜା କଳ୍ପବଟକୁ ଧାରଣ କରିବାରୁ କଳ୍ପବଟ ସ୍ଥିର ହୋଇ ରହିଲା ଏବଂ ଏହା ଉପରେ ମହାବିଷ୍ଣୁ ଆନନ୍ଦରେ ଶୟନ କଲେ । କଳ୍ପବଟ ମଧ୍ୟ ସ୍ଥିର ରହିବାରୁ ତାହାକୁ ଧାରଣ କରିଥିବା ଦାସ ରାଜା ନିର୍ବିଘ୍ନରେ ନିଦ୍ରାଗଲେ । ଏହି ସମୟରେ ରାଘବ ମତ୍ସ୍ୟ ଆସି କଣ୍ଡିଆର ସହିତ ଦାସ ରାଜାଙ୍କୁ ଭକ୍ଷଣ କଲା । ମତ୍ସ୍ୟ ଗର୍ଭକୁ ଦାସ ରାଜା ଗଲା ପରେ କଳ୍ପବଟ ପୁନଶ୍ଚ ଦୋହଲିବାକୁ ଆରମ୍ଭ କଲା ଏବଂ ମହାବିଷ୍ଣୁଙ୍କର ନିଦ୍ରା ଭଂଗ ହେଲା । ଯୋଗ ବଳରେ ପରଂବ୍ରହ୍ମ ଏହା ଅବଗତ ହେବାରୁ ରାଘବ ମତ୍ସ୍ୟର ପେଟ ଚିରି ତହିଁରୁ ସେ ଦାସ ରାଜାଙ୍କୁ ମୁକ୍ତ କଲେ ଏବଂ ଦାସରାଜାଙ୍କୁ ବର ପ୍ରଦାନ କଲେ ଯେ ସେ –

ତୋତେ ଯେ ଗିଳିଲା ମୀନ ତୋହର ବଇରି
ଏହାକୁ ମାରିବୁ ଜନ୍ମେ ଜନ୍ମେ ଅବତରି
ତୋହର ସଗୋତ୍ର ଜାତି କୁଟୁମ୍ବ ସେମାନ
ସମସ୍ତେ ଏ ଜୀବମାରି ପୋଷିବେ ଜୀବନ ।(ପୃ-୭)

କିନ୍ତୁ ଦାସ ରାଜା କେବଳ ଏହି ପ୍ରକାର ପାପକାର୍ଯ୍ୟ କରି ଜୀବିକା ଅର୍ଜନ କରିବାକୁ ଅସମ୍ମତ ହେବାରୁ ପରଂବ୍ରହ୍ମ ଶ୍ରୀହରି ତା'ର ଜୀବିକା ଅର୍ଜନର ଭିନ୍ନ ଭିନ୍ନ ପନ୍ଥା ନିର୍ଦ୍ଦେଶ କଲେ ଏବଂ ସେହି ଅନୁସାରେ–

'କେହିବା ଚାଷ ଚଷିଣ ବଳଦ ବାହିଲା
ଚାଷୀ କଇବର୍ତ୍ତ ବୋଲି ନାମ ଜଣାଇଲା ।
କେହିବା ବୋଇତ ଚଢ଼ି ବଣିଜରେ ଗଲା
ବୋଇତିଆଳ ବୋଲିଣ ନାମ ଭଣାଇଲା ।
କେହୁ ଅବା ଜାଲବାହି ମାଛ ଯେ ମାଇଲେ
ଜାଲିଆ କେଉଟ ବୋଲି ନାମ ଭଣାଇଲେ
କେହୁ ବା ଚୁଡ଼ା କୁଟିଣ ବେପାର ଯେ କଲେ
ଚୁଡ଼ା କୁଟା କଇବର୍ତ୍ତ ସେହୁ ବୋଲାଇଲେ ।।'

ଯେପରି ଭାବରେ ବୃତ୍ତି ଅନୁଯାୟୀ ବିଭିନ୍ନ କୈବର୍ତ୍ତ ସଂପ୍ରଦାୟ ସୃଷ୍ଟି ହେଲେ ଠିକ୍ ସେହିପରି ଈଶ୍ୱରଙ୍କ ଆଦେଶରେ କଳ୍ପବଟର ଅଗ୍ରଭାଗରୁ ନୌକା, ଛଣପଟରୁ ଜାଲ ବିଶ୍ୱକର୍ମାଙ୍କ ନିର୍ମାଣରେ ଡିଙ୍ଗି ତଥା ବିଷ୍ଣୁ, ଶିବ ଓ ପାର୍ବତୀଙ୍କ ପ୍ରଚେଷ୍ଟାରୁ ଚୁଡ଼ାର ସୃଷ୍ଟି ହେଲା । ଏହା ପରେ ବିଷ୍ଣୁଙ୍କର ଆଶୀର୍ବାଦରେ ଦାସ ରାଜା ସିଂହଳ ଦ୍ୱୀପରେ ରାଜତ୍ୱ କରିବା ନିମିତ୍ତ ବର୍ହିଗତ ହେଲେ । ଶ୍ରୀହରି ମଧ୍ୟ ଦାସ ରାଜାଙ୍କ ସହିତ ନୌକାରେ ସିଂହଳ ଦ୍ୱୀପକୁ ଯାତ୍ରା କଲେ । କିନ୍ତୁ ସମୁଦ୍ର ତୀରସ୍ଥ ପଟୁରେ ପାଦ ଗଳି ଯାଇଥିବାରୁ ଗମନ ନିମିତ୍ତ ଅସୁବିଧା ହେଲା । ତେଣୁ ପରମ ବିଷ୍ଣୁଙ୍କ ଆଜ୍ଞାରେ କଳ୍ପବଟ ଅଶ୍ୱରୂପ ଧାରଣ କଲା । ସେହି ଅଶ୍ୱ ଆରୋହଣ କରି ଦାସ ରାଜା ସିଂହଳ ଦ୍ୱୀପରେ ପ୍ରବେଶ କଲେ–

'ଦାସ ରାଜା ସଂଗେ ଘେନି ବସିଲୁଂ ଅଶ୍ୱରେ
ଶୀଘ୍ରେଣ ଆସିଣ ଅଶ୍ୱ ମିଳିଲା କୂଳରେ
ଚଇତ୍ର ପୂର୍ଣ୍ଣିମା ଗୁରୁବାର ଯେ ଅଟଇ
ବାସେଳି ବୋଲିଣ ନାମ ଦେଲଇଂ ଯେ ମୁଁଇଂ
ଜନମ ଦିନ ଯେ ତା'ର ନାହିଁ ଖୋଜିବାକୁ
ଦାସ ରାଜେ ଦେଲୁଂପୁଣି ସେ ମାଇ ଅଶ୍ୱକୁ ।।'

ବିଧାତାଙ୍କର ନିର୍ଦ୍ଦେଶ ଅନୁସାରେ ସେହି ଅଶ୍ୱ ଦାସ ରାଜାଙ୍କର ବାହନ ରୂପେ କାର୍ଯ୍ୟ କରିଲା ଏବଂ ଅନେକ ସମ୍ବତ୍ସର ଅନ୍ତରେ ଅଷ୍ଟମୀ ଗୁରୁବାର ତିଥିରେ ସେହି ଅଶ୍ୱ ପ୍ରାଣତ୍ୟାଗ କରି ଲକ୍ଷ୍ମୀ ସ୍ୱରୂପିଣୀ ଏକ ସୁନ୍ଦରୀ ରମଣୀରେ ପରିଣତ ହେଲା ଏବଂ ବିଧାତାଙ୍କର ନିର୍ଦ୍ଦେଶରେ ସେହି ନାରୀ ସ୍ୱରୂପିଣୀ ଅଶ୍ୱରୂପା ଅଶ୍ୱିନୀ ବାସେଳୀ ନାମରେ ପରିଚିତ ହେଲେ ଏବଂ ଏହା କୈବର୍ତ୍ତ ସଂପ୍ରଦାୟର ଇଷ୍ଟଦେବୀ ଭାବରେ ପୂଜିତା ହେଲେ ।

'ଆଗତ ଭବିଷ୍ୟ ଏବେ ଦାସରାଜା ଶୁଣ
କାଷ୍ଠ ଭିଆଇଣ କର ବାସେଳୀ ନିର୍ମାଣ
ଏ ବାସେଳୀ ଇଷ୍ଟ ତୋର ବଂଶରେ ରହିବ
ଚଇତ୍ର ପୂର୍ଣ୍ଣିମାଦିନ ପୂଜା ସେ ପାଇବ ।'

ଏହିପରି ଭାବରେ କୈବର୍ତ୍ତ ଗୀତାକୁ ମାନ୍ୟତା ପ୍ରଦାନ କରି ଜୀବିକା ଭାବରେ ଯେଉଁ ନୌକାକୁ ସେମାନେ ବ୍ୟବହାର କରି ଆସିଛନ୍ତି ତାକୁ ଚୈତ୍ର ପୂର୍ଣ୍ଣିମା ତିଥିରେ ଶ୍ରଦ୍ଧା ସହକାରେ ପୂଜନ କରୁଛନ୍ତି । ଓଡ଼ିଶା ଜନ ଜୀବନକୁ ଓଡ଼ିଶାର ନୌସଂପଦ କେତେ ପ୍ରଭାବିତ କରିଛି, ତାହା ଏଥିରୁ ପ୍ରମାଣିତ ହୋଇଥାଏ ।

**୩. କାର୍ତ୍ତିକ ପୂର୍ଣ୍ଣିମା ବୋଇତ ବନ୍ଦାଣ–** କେଉଁ ଆବହମାନ କାଳରୁ ଓଡ଼ିଶାର ନୌବାଣିଜ୍ୟର ମହାନ ସ୍ମୃତିକୁ ଉଜ୍ଜୀବିତ କରି ରଖିବା ପାଇଁ ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ବୋଇତ ବନ୍ଦାଣ ଉତ୍ସବ ପାଳିତ ହୋଇ ଆସୁଅଛି । କଟକର ବାଲିଯାତ୍ରା ସହିତ ଓଡ଼ିଶାର ପାରାଦ୍ୱୀପ ବନ୍ଦର, ଗୋପାଳପୁର, ବାଲୁଗାଁ, ରମ୍ଭା, ଚିର୍ଚ୍ଚୋଲ, ମାଲୁଦ ଆଦି ପୁରାତନ ଐତିହ୍ୟସଂପନ୍ନ ବନ୍ଦରମାନଙ୍କରେ ଏହି ଉତ୍ସବ ପାଳନ କରାଯାଉଛି । ଏଥିସହିତ ସାଧାରଣ ଜନତା ମଧ୍ୟ ବିଭିନ୍ନ ନଦୀର ଘାଟ ବା ପୁଷ୍କରିଣୀମାନଙ୍କରେ ସୁସଜ୍ଜିତ କଦଳୀ ପାଟୁକାର ଡଙ୍ଗା ବା ସୋଲ ତିଆରି ଡଙ୍ଗାମାନ ଭସାଇ ଏହି ବୋଇତ ବନ୍ଦାଣ ଉତ୍ସବ ପାଳନ କରିଥାନ୍ତି ଏବଂ ଆ, କା, ମା, ବୈ(ଭୈ) ଶବ୍ଦ ଉଚ୍ଚାରଣ କରିଥାନ୍ତି । ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖିଲେ ଏହାର ପ୍ରତୀକାତ୍ମକ ଅର୍ଥ ହେଉଛି–ଆ–ଆଷାଢ଼, କା–କାର୍ତ୍ତିକ, ମା–ମାର୍ଗଶିର, ବୈ–ବୈଶାଖ ଏହି ଚାରିମାସକୁ ବୁଝାଇଥାଏ । ପ୍ରାଚୀନ ତଥ୍ୟ ଅନୁଯାୟୀ ଏହି ଚାରିମାସରେ ଓଡ଼ିଆ ସାଧବମାନେ ବିଶେଷ ଭାବରେ ଯାତ୍ରା କରୁଥିଲେ । ଏହି ଯାତ୍ରା ବିଶେଷ ଭାବରେ କାର୍ତ୍ତିକ ମାସରୁ ହିଁ ଆରମ୍ଭ ହୋଇଥାଏ ।

ବର୍ଷା ସରି ଯାଇଥାଏ । ଝଡ଼ ବତାସର ପ୍ରାୟ ସମୁଦ୍ରରେ ସଂଭାବନା ନଥାଏ । ସମୁଦ୍ର ଆପାତତଃ ଶାନ୍ତ ଥାଏ । ଅନ୍ୟାନ୍ୟ ଚାଷବାସ କାର୍ଯ୍ୟ ମଧ୍ୟ କାର୍ତ୍ତିକ ମାସରେ ବିଶେଷ ନଥାଏ ବୋଲି ଏହାକୁ ଧର୍ମ ମାସ ଭାବରେ ଓଡ଼ିଶାର ଜନସାଧାରଣ ପାଳନ କରିଥାନ୍ତି । ତେଣୁ ଏହି ସମୟରେ ଜଳଯାତ୍ରା ପାଇଁ ଅନୁକୂଳ ପରିବେଶ ଥାଏ । ଏହାକୁ ଜଳବାୟୁ ମଧ୍ୟ ସାହାଯ୍ୟ କରିଥାଏ । କାର୍ତ୍ତିକ ମାସରେ ଦକ୍ଷିଣ–ପଶ୍ଚିମ ମୌସୁମୀ ବାୟୁ ଦୁର୍ବଳ ହୋଇ ଯାଇଥାଏ । ଉତ୍ତରପୂର୍ବ ମୌସୁମୀ ବାୟୁ ସକ୍ରିୟ ହୋଇଥାଏ । ତେଣୁ ଓଡ଼ିଶା ଉପକୂଳରୁ ଦକ୍ଷିଣକୁ ଯିବା ସହଜ ହୋଇଥାଏ । କାର୍ତ୍ତିକ ମାସରେ ପୂର୍ଣ୍ଣିମା ଦିନ ସମୁଦ୍ରର ଜୁଆର ଜଳ ନଦୀ ମୁହାଁଣକୁ ଆସୁଥିବାରୁ ଜଳର ଗଭୀରତା ବଢ଼ିଥାଏ । ଏହା ଜାହାଜର ପ୍ରବେଶ ଓ ପ୍ରସ୍ଥାନ ପାଇଁ ଅନୁକୂଳ ହୋଇଥାଏ । ତେଣୁ ଏହି ସମୟରେ ଓଡ଼ିଆ ବଣିକଗଣ ଜାଭା, ସୁମାତ୍ରା, ସିଂହଳ, ବୋର୍ଣ୍ଣିଓ ଆଦି ଦେଶକୁ ଯାତ୍ରା କରିପାରୁଥିଲେ । ଏହି ସ୍ମୃତିରେ ଆଜି ବୋଇତ ବନ୍ଦାଣ ଉତ୍ସବ କାର୍ତ୍ତିକ ପୂର୍ଣ୍ଣିମାରେ ପାଳିତ ହେଉଛି ।

ଏହା ବ୍ୟତୀତ ଓଡ଼ିଶାର ଉପକୂଳବର୍ତ୍ତୀ ଅଂଚଳରେ ବୋଇତ ଯାତ୍ରା ସ୍ମୃତିକୁ ଉଦ୍‌ଜୀବିତ କରି ଖୁଦୁରୁକୁଣୀ ଓଷା, ଦୀପାବଳୀ, ସତ୍ୟପୀର ପୂଜା ଆଦି ପାଳନ କରାଯାଇଥାଏ । ଏହି ପରଂପରା କେବଳ ଓଡ଼ିଶାର ଜନସାଧାରଣଙ୍କର ଏକ ସ୍ମୃତିଚାରଣ ମାତ୍ର ନୁହେଁ । ଏହା ଏକ ଆହ୍ୱାନ । ଉତ୍କଳୀୟ କଳା, ସଂସ୍କୃତି, ଧର୍ମାଚାର ଶିଳ୍ପ ବୈଭବ ଦିନେ ସମଗ୍ର ପୃଥିବୀ ଉପରେ ବିଛାଡି ହୋଇ ପଡିରହିଥିଲା । ଆଜି ତା'ର ପୁନର୍ବିନ୍ୟାସର ଅପେକ୍ଷାରେ ରହିଛି ଉତ୍କଳ ଜନନୀ ।

ନରେନ୍ଦ୍ରକୋଣ, ପୁରୀ

# ଦୀପାବଳି

ଡକ୍ଟର ସୁକାନ୍ତି ତ୍ରିପାଠୀ

ଆଲୋକର ପର୍ବ ଅଟେ ଦୀପାବଳି
ଆସେ କାର୍ତ୍ତିକ ମାସରେ
ରାମଚନ୍ଦ୍ର ଅଭିଷେକ ହୋଇଥିଲେ
ପୁରାଣ ମତାନୁସାରେ ।

ପିତୃପୁରୁଷଙ୍କ ସନ୍ତୋଷ ନିମନ୍ତେ
କରାଯାଏ ଦୀପଦାନ
ଜ୍ୱଳନ୍ତ ବଳିତା, ଆଖୁ, କାଉଁରିଆ
କାଠି କରି ପ୍ରଦର୍ଶନ
ଏକାଠି ହୋଇଣ ବଡ ବଡୁଆଙ୍କୁ
ଡାକୁଥାନ୍ତି ଆନନ୍ଦରେ ।

ନାରକା ସୁରକୁ ନାଶୀ କୃଷ୍ଣ ଦେଲେ
ତା' ପୁତ୍ରକୁ ସିଂହାସନ
ନାରୋକ ଉତ୍ସବ ବୋଲି ଦିନଟିକୁ
କରନ୍ତି ଅଭିନନ୍ଦନ

ଦୀପାବଳି ପର୍ବ କାଳୀପୂଜା ରୂପେ
ପୂଜନ୍ତି ମାତା ପୟରେ ।

ଗୁରୁତ୍ୱ ଏହାର ଅବିସ୍ମରଣୀୟ
ପ୍ରଭୁ ଯେ ଜଗତ କର୍ତ୍ତା
ଜାତୀୟ ପରବ ଦୀପାବଳି ଆମ
ଦିଏ ଆଧ୍ୟାତ୍ମିକ ବାର୍ତ୍ତା
ଅନ୍ଧାରକୁ ଆମେ ଦୂରେଇଣ ଦେବା
ଆଲୋକ ଥିବ ମହୀରେ ।

ଏନ୍–୫/୪୨୮, ଆଇ.ଆର.ସି. ଭିଲେଜ
ଜୟଦେବ ବିହାର, ଭୁବନେଶ୍ୱର

# ଓଡ଼ିଶାର ଧର୍ମୀୟ ପରମ୍ପରାରେ ବଡ଼ଓଷା

**ଡକ୍ଟର ସର୍ବେଶ୍ୱର ସେଣ**

ଦେବଦେବ ଶ୍ରୀଜଗନ୍ନାଥଙ୍କ ଭୂମି ଓଡ଼ିଶା । ସାରା ଭାରତବର୍ଷରେ ଏହା ପୁଣ୍ୟତମ ଭୂମି ଭାବେ ଅଭିହିତ । ଓଡ଼ିଆମାନଙ୍କର ଜାତୀୟ ଜୀବନ, ସାମାଜିକ ପରମ୍ପରା, ଧର୍ମ, ସାହିତ୍ୟ, ସଂସ୍କୃତି – ସବୁ ମୁଣ୍ଡ ଟେକିଛି ସେଇ ଜଗନ୍ନାଥଙ୍କୁ ନେଇ । କ୍ରମବର୍ଦ୍ଧମାନ ସମୟ । ଜୈନ, ବୌଦ୍ଧ, ତାନ୍ତ୍ରିକ, ଶୈବ, ବୈଷ୍ଣବ, ଶାକ୍ତ, ଗାଣପତ୍ୟ, ସୌର ଆଦି ନାନା ଧର୍ମ ମୁଣ୍ଡ ଟେକିଛି । ମାତ୍ର ସବୁ ଧର୍ମୀୟ ବିଶ୍ୱାସ, ଉପାସନା ପଦ୍ଧତି ଜଗନ୍ନାଥଙ୍କ ଉପରେ ଆରୋପିତ । ଜଗନ୍ନାଥ ଧର୍ମ ଏକ ବହୁମତ, ବହୁବାଦ ସମନ୍ୱିତ ଧର୍ମ । ତାଙ୍କରି ପୀଠରେ ପାଳିତ ବାରମାସରେ ତେର ଯାତ । ଏଥି ସହିତ ପର୍ବପର୍ବାଣି, ଓଷା, ବ୍ରତ ବି । ଏ ସମସ୍ତ ଓଡ଼ିଶା ଧର୍ମଧାରାର ଅଂଶବିଶେଷ । ସବୁ ପର୍ବପର୍ବାଣିର ମଧ୍ୟ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ । ଉକ୍ତ ଦିବସଗୁଡ଼ିକ



ପବିତ୍ର ଦିବସ ରୂପେ ଗଣ୍ୟ । ଓଷାବ୍ରତ, ପର୍ବପର୍ବାଣିର ଦିନ, ବାର, କାଳ ପଂଜିକା ଦ୍ୱାରା ନିର୍ଦ୍ଧାରିତ । ପୁରୀ ମୁକ୍ତିମଣ୍ଡପର ପଣ୍ଡିତ ସଭା, ମହାନ ଜ୍ୟୋତିର୍ବିଦ୍‌ଙ୍କର ସହମତି ରହେ, ପଂଜିକା ପ୍ରସ୍ତୁତ ହୁଏ । ତିଥି ବାର, ଗ୍ରହ, ନକ୍ଷତ୍ର, ମାହେନ୍ଦ୍ର, ଅମୃତବେଳା, ଅଶୁଦ୍ଧିକାଳ – ସବୁ ପଂଜିକାରେ ନିର୍ଦ୍ଧାରିତ । ତଦନୁଯାୟୀ ପର୍ବପର୍ବାଣି ପାଳିତ । ଯାତ୍ରା ଏକ ପର୍ବ ପାଳନର ପରିପ୍ରକାଶ । ଓଷାବ୍ରତ ମଧ୍ୟ ପର୍ବପାଳନର ଏକ ଅଭିବ୍ୟକ୍ତି । ଏହାର ପରମ୍ପରା ଅତି ପ୍ରାଚୀନ । ବୈଦିକ ଯୁଗରୁ ଓଷା, ବ୍ରତ ପାଳିତ ହୋଇଆସୁଛି । କାର୍ଯ୍ୟସିଦ୍ଧି, ମନସ୍କାମନା ପୂର୍ଣ୍ଣ, ଏଥିପାଇଁ ଦେବଦେବୀଙ୍କ ନିକଟରେ ବିଭିନ୍ନ ପ୍ରକାର ମାନସିକ କରାଗଲା । ଓଷାବ୍ରତ ପାଇଁ ବିଧି ବିଧାନ ବ୍ୟବସ୍ଥା ହେଲା । ଆର୍ଯ୍ୟ, ଆର୍ଯ୍ୟେତର ଉଭୟ ଜାତିଙ୍କ ଦେବତା ଓଷାବ୍ରତରେ ଉପାସିତ ହେଲେ । ଓଡ଼ିଶାରେ ବି ନାନାଦି ଓଷାବ୍ରତ ପାଳିତ । ଖୁଦୁରୁକୁଣୀ ଓଷା, ଜନ୍ମାଷ୍ଟମୀ ଓଷା, ମାଣଓଷା, ବୁଧେଇ ଓଷା, ଶନି ଓଷା ବା ତୋଟା ଓଷା, ଷଠୀ ଓଷା, ଚାଉଳଭଜା ଓଷା, କରମା ଓଷା, ଜହ୍ନି ଓଷା, ଦୂତିବାହନ ଓଷା, ଭାଇ ଜିଉନ୍ତିଆ ଓଷା, ନିଶା ମଙ୍ଗଳବାର ଓଷା, କାଂଜି ଅଁଳା ଓଷା, ଦାଣ୍ଡ ପହଁରା ଓଷା –

ଏମିତି ନାନା ଓଷା । ତନ୍ମଧ୍ୟରୁ ଧବଳେଶ୍ୱର ଓଷା (ବଡ଼ଓଷା) ଅତୀବ ଗୁରୁତ୍ୱପୂର୍ଣ୍ଣ । ଏଇ ଓଷା ମୁଖ୍ୟତଃ କଟକ, ଢେଙ୍କାନାଳ ଜିଲ୍ଲାରେ ପାଳିତ ହୁଏ । ବାବା ଧବଳେଶ୍ୱର ଏହାର ଉପାସ୍ୟ ଦେବତା । ସାଧାରଣତଃ ଶିବ ସଂହାରକର୍ତ୍ତା ଭାବେ ଗୃହୀତ । ଏହା ସତ୍ତ୍ୱେ ସେ ମଙ୍ଗଳ ପ୍ରଦାୟୀ, ଅଭୟ ଦାୟୀ । ଧର୍ମ, ଅର୍ଥ, କାମ, ମୋକ୍ଷ– ଏଇ ଚଉବର୍ଗ ଫଳ ସେ ପ୍ରଦାନ କରନ୍ତି । ଶିବ ମହାପ୍ରତାପୀ, ଯୋଗୀ ଶ୍ରେଷ୍ଠ । ତାଙ୍କୁ ନେଇ ଲିଙ୍ଗ ଉପାସନା । ଭାରତର ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ତନ୍ମଧ୍ୟରୁ ଧବଳେଶ୍ୱର ଅନ୍ୟତମ । ତାଙ୍କରି ପୀଠରେ ବଡ଼ଓଷା ପାଳିତ ହୁଏ । ଏହା ଧବଳେଶ୍ୱର ଓଷା ଭାବେ ଖ୍ୟାତ । କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ତିଥି । ଏହି ଦିନଟି ବଡ଼ଓଷା ପାଇଁ ନିର୍ଦ୍ଧାରିତ ।

ଓଷା ଶବ୍ଦଟି ଉପବାସ ଶବ୍ଦରୁ ଆନୀତ । ଉପାସ ଶବ୍ଦର ଅର୍ଥ (ଉପ ନିକଟରେ) ବାସ (ବାସ କରିବା) । ଓଷେଇତି, ବ୍ରତଚାରୀ ବା ବ୍ରତଚାରିଣୀ ନିଜର ଆରାଧ୍ୟ ଦେବତାଙ୍କ ନିକଟରେ ବାସ କରନ୍ତି । ଇଚ୍ଛା ପୂରଣ ପାଇଁ ପ୍ରାର୍ଥନା କରନ୍ତି । ସେତେବେଳେ ଏହାକୁ ଉପବାସ କୁହାଯାଏ । ଏହା ଏକ ଧାର୍ମିକ ବିଧି । ଉପବାସର ନାନାଦି ସୋପାନ । ଯଥା – ଉପବସ୍ତୁ, ଉପକ୍ଷୋଷିତ, ଉପପୋଷଣ, ଔପବସର୍ଥ୍ୟ ଇତ୍ୟାଦି । ପୁରାଣ ଯୁଗରୁ ଓଷାବ୍ରତର ନୀତି ନିୟମ ବର୍ଣ୍ଣିତ । କଳିକା ପୁରାଣ, ଦେବୀ ଭାଗବତ, ଭବିଷ୍ୟ ପୁରାଣ, ଶିବ ପୁରାଣ, ମହାଭାରତ, ରାମାୟଣ – ଏଥିରେ କେତେକ ଓଷା ବ୍ରତ କଥା ବର୍ଣ୍ଣିତ । ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ, ସୌର ଆଦି ବିଭିନ୍ନ ସମ୍ପ୍ରଦାୟ, ଆପଣା ଆପଣା ଇଷ୍ଟଦେବଙ୍କ ଉଦ୍ଦେଶ୍ୟରେ ବ୍ରତ ପାଳନ୍ତି । ଓଷା ଦୁଇପ୍ରକାର – (୧) ସକାମ, (୨) ନିଷ୍କାମ । ସବୁ ଓଷା ପ୍ରାୟତଃ ସକାମ । ଅଳ୍ପ କେତେ ନିଷ୍କାମ ପର୍ଯ୍ୟାୟଭୁକ୍ତ । ବଡ଼ଓଷା ସକାମ ପର୍ଯ୍ୟାୟ ଅନ୍ତର୍ଭୁକ୍ତ । ଶିବଙ୍କର ମହାତ୍ମ୍ୟ ଏଥିରେ ପ୍ରତିପାଦିତ । ବଡ଼ଓଷା – ଏଇଟି ଶିବ ଉପାସନା କୈନ୍ଦ୍ରିକ । ଶିବ ଉପାସନା ହିଁ ଲିଙ୍ଗ ଉପାସନା । ଧବଳେଶ୍ୱର ମଧ୍ୟ ଲିଙ୍ଗ ରୂପେ ପୂଜିତ ।

ଲିଙ୍ଗ ଉପାସନା ଶୈବ ଧର୍ମର ସ୍ୱାତନ୍ତ୍ର୍ୟ । ଅନ୍ୟ ଧର୍ମରେ ଦେବଦେବୀଙ୍କ ସମ୍ପୂର୍ଣ୍ଣ ଅବା ଅର୍ଦ୍ଧ ଅବୟବ ପୂଜିତ । କିନ୍ତୁ ଶିବଙ୍କ ସର୍ବାବୟବ ବିଶିଷ୍ଟ ପୂଜା ଅତୀବ ବିରଳ । ଭାରତର ସମସ୍ତ ଶିବ ମନ୍ଦିର ଲିଙ୍ଗ ମୂର୍ତ୍ତିର ଆଳୟ । ଲିଙ୍ଗ ପ୍ରଜନନ ଶକ୍ତିର ପ୍ରତୀକ । ଈଶ୍ୱରଙ୍କ ପ୍ରଜନନ ଶକ୍ତି ବା ସର୍ଜନ ଶକ୍ତି, ଶିବ ଉପାସନାର ମାହାତ୍ମ୍ୟ । ଏଇଟି ଲିଙ୍ଗ ଉପାସନାର ମୂଳତତ୍ତ୍ୱ । ସୃଷ୍ଟିକର୍ତ୍ତା ରୂପେ ଲିଙ୍ଗରୂପୀ ଶିବ କୀର୍ତ୍ତିତ । ଏ ତତ୍ତ୍ୱ ମହାଭାରତ, ଲିଙ୍ଗ ପୁରାଣ, ଶିବପୁରାଣ, ନନ୍ଦି ପୁରାଣ, ବାମନ ପୁରାଣ, ମତ୍ସ୍ୟ ପୁରାଣ ଆଦିରେ ବର୍ଣ୍ଣିତ । ଧର୍ମ ସଂହିତା, ବାୟବୀୟ ସଂହିତା, ସୁତ ସଂହିତା ପ୍ରଭୃତି ଗ୍ରନ୍ଥରେ ଲିଙ୍ଗ ଉପାସନା ତଥ୍ୟ ମଧ୍ୟ ପ୍ରଦତ୍ତ । ଲିଙ୍ଗାର୍ଚ୍ଚନ ତନ୍ତ୍ର, ମହାନିର୍ବାଣ ତନ୍ତ୍ର, ନାରଦ ପଂଚରାତ୍ର, ଶୈବ ସିଦ୍ଧାନ୍ତସାର – ଏ ସମସ୍ତ ଗ୍ରନ୍ଥରେ ଶିବ–ମହିମା ଚର୍ଚ୍ଚିତ । ପ୍ରାଚୀନ ଓଡ଼ିଶାର କେକେତ ସଂସ୍କୃତ ଗ୍ରନ୍ଥ, ଏଥିରେ ଶିବ–ଲିଙ୍ଗ ମହିମା ବର୍ଣ୍ଣିତ । ଏଗୁଡ଼ିକ ମଧ୍ୟରେ ଏକାମ୍ର ପୁରାଣ, ଏକାମ୍ର ଚନ୍ଦ୍ରିକା, ସ୍ୱର୍ଣ୍ଣାଦି ମହୋଦୟ, କପିଳ ସଂହିତା, ତୀର୍ଥ ଚିନ୍ତାମଣି ଆଦି ପ୍ରସିଦ୍ଧ । ସୃଷ୍ଟିର ରହସ୍ୟ, ଲିଙ୍ଗପୂଜା ପଦ୍ଧତି, ଲିଙ୍ଗରାଜଙ୍କ ପର୍ବପର୍ବାଣି ସମ୍ପର୍କରେ ନାନାତଥ୍ୟ ଏଥିରୁ ମିଳେ । ଓଡ଼ିଆ ଭାଷାର ମହାକାବ୍ୟ 'ମହାଭାରତ' । ଏହାର ରଚୟିତା ସାରଳା ଦାସ । ସେ ପଂଚଦଶ ଶତାବ୍ଦୀର କବି । ଶାକ୍ତଧର୍ମ, ଶୈବଧର୍ମ – ଏ ଦୁଇର ମିଶ୍ରଣ ସାରଳା ଦାସଙ୍କ ସମୟକୁ ହୋଇ ସାରିଥିଲା । ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତିଃ ଭବତୁଂ / ନ ତେ ଦେବଂ ଦେବୋ ନ ଖଳୁ କୁଶଳଃ ସ୍ପନ୍ଦିତୁ ମତି । ଏ ତଥ୍ୟ ପ୍ରତିପାଦିତ ହୋଇ ସାରିଥିଲା । ଭୁବନେଶ୍ୱରର ଲିଙ୍ଗରାଜଙ୍କର ପ୍ରାଚୀନତା, ପ୍ରସିଦ୍ଧି, ଏକାମ୍ର କ୍ଷେତ୍ରର ପବିତ୍ରତା, ଏ ସମ୍ପର୍କରେ ବହୁ ଆବେଗମୟ ବର୍ଣ୍ଣନା ସାରଳା ମହାଭାରତରେ ସ୍ଥାନିତ । ଏତଦ୍‌ଭିନ୍ନ ଯମେଶ୍ୱର, କେଦାରେଶ୍ୱର, ମୁକ୍ତେଶ୍ୱର, ସୂକ୍ଷ୍ମେଶ୍ୱର, ହିରଣ୍ୟେଶ୍ୱର, ଈଷାନେଶ୍ୱର, ସୁରେଶ୍ୱର, ବ୍ରହ୍ମେଶ୍ୱରୀ, ସେମାନଙ୍କ ସମ୍ପର୍କରେ ଅଳ୍ପବହୁତ ଚିତ୍ର ମଧ୍ୟ ଦେଇଛନ୍ତି । ସାରଳା ଦାସ ମଧ୍ୟ ପୁରୀ, ଯାଜପୁରର କେତେକ ଶିବ ଲିଙ୍ଗଙ୍କର କଥା ବର୍ଣ୍ଣନା କରିଛନ୍ତି । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ, ଏ ସମୟରୁ ଓଡ଼ିଶାରେ ଲିଙ୍ଗ ଉପାସନା ଆରମ୍ଭ ହୋଇ ସାରିଥିଲା । ବାଲୁକା ଲିଙ୍ଗ ଉପାସନା ଓଡ଼ିଶାର ଏକ ସ୍ୱତନ୍ତ୍ର ପରମ୍ପରା । ନେତ ଓଷା, ବାଲି ତୃତୀୟା, ଦ୍ୱିତୀୟା ଓଷା, ବାଟ ଓଷା, ଓଡ଼ିଶାର ନାରୀମାନେ ଏଥିରେ ବାଲୁକାଲିଙ୍ଗ ପୂଜନ୍ତି । ଓଡ଼ିଶାର ନଦୀ ତୀର, ପୁଷ୍କରିଣୀ ତଟ, ସମୁଦ୍ରକୂଳ, ବନ–ପର୍ବତ, ଗ୍ରାମ ସର୍ବତ୍ର ଶିବଲିଙ୍ଗ ପରିଦୃଷ୍ଟ । ଜଗନ୍ନାଥଙ୍କ

ଜ୍ୟେଷ୍ଠଭ୍ରାତ ବଳଦେବ, ଓଡ଼ିଶା ସଂସ୍କୃତିରେ ସେ ଶିବ ରୂପେ ପରିକଳ୍ପିତ। କୋଣାର୍କ ଗାତ୍ରରେ ଦୁର୍ଗା, ଶିବଲିଙ୍ଗଙ୍କ ସହ ଜଗନ୍ନାଥଙ୍କ ମୂର୍ତ୍ତି ଖୋଦିତ। ଏଠାରେ ବଳଭଦ୍ର ଶିବ, ଦୁର୍ଗା, ସୁଭଦ୍ରାଙ୍କ ପ୍ରତିନିଧିତ୍ୱ କରନ୍ତି। ମନ୍ଦିର ବାହାରେ ମଧ୍ୟ ଶିବ ପୂଜାର ପ୍ରତିବନ୍ଧକ ନାହିଁ। ସାମ୍ପ୍ରତିକ ଯୁଗରେ ଶିବପୂଜା କହିଲେ ଲିଙ୍ଗ ପୂଜାକୁ ବୁଝାଏ। ଧବଳେଶ୍ୱର ଶିବଙ୍କର ପ୍ରତିମୂର୍ତ୍ତି ନୁହଁନ୍ତି। ସେ ଲିଙ୍ଗ ରୂପେ ଅଧିଷ୍ଠିତ। ସେ ବଳଦେବଙ୍କ ପ୍ରତୀକ। ବଳଦେବ ଜଗନ୍ନାଥଙ୍କ ବଡ଼ଭାଇ। ତାଙ୍କରି ଓଷା ବା ଧବଳେଶ୍ୱର ଓଷା। ଏହା ବଡ଼ଓଷା।

ମଙ୍ଗଳଦାୟକ ଶିବ ବହୁ ଭାବରେ ବିଦିତ। ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ, କାଶୀ ବିଶ୍ୱନାଥ, ଅମରନାଥ, ଶ୍ରୀଲୋକନାଥ, ଲିଙ୍ଗରାଜ ଆଦି ପ୍ରସିଦ୍ଧ ଶୈବପୀଠ। ସେହିପରି ଧବଳେଶ୍ୱର ପୀଠ। ଓଡ଼ିଶାରେ ପ୍ରବାହିତ ପୁଣ୍ୟତୋୟା ମହାନଦୀ, ଏହାର କୂଳେ କୂଳେ ଅନେକ ଶିବ ମନ୍ଦିର। ତନ୍ମଧ୍ୟରୁ ପୁଣ୍ୟପୀଠ ଧବଳେଶ୍ୱର ଅନ୍ୟତମ। ତାଙ୍କୁ ନେଇ ବଡ଼ଓଷା ପର୍ବ। ଲକ୍ଷଲକ୍ଷ ଓଡ଼ିଆଙ୍କ ଧର୍ମୀୟ ଭାବନାର ଏହା ପ୍ରତୀକ। କଟକ ଜିଲ୍ଲା, ଆଠଗଡ଼ ଉପଖଣ୍ଡ। ମହାନଦୀ କୂଳରେ ମଂଚେଶ୍ୱର ଗ୍ରାମ। ତତ୍ ସନ୍ନିକଟ ମହାନଦୀ ପଠା, ବିରାଜମାନ ଶିବଲିଙ୍ଗ ଧବଳେଶ୍ୱର। କଟକ ମହାନଗରଠାରୁ ମାତ୍ର ୨୭ କି.ମି. ଦୂର। ଚଉଦ୍ୱାର ଦେଇ ଯିବାକୁ ହୁଏ। ମହାନଦୀର ଚହଟାଘାଟ, ସେଠାରୁ ଲଂଚ ଫେରି ବୋଟ୍ ଯୋଗେ ପୀଠକୁ ଯିବା ସୁବିଧା ରହିଛି। ମଂଚେଶ୍ୱର ଗ୍ରାମ ନଦୀ ତଟରୁ, ଧବଳେଶ୍ୱର ପୀଠ, ତନ୍ମଧ୍ୟରେ ମହାନଦୀ। ମହାନଦୀ ଉପରେ ନିର୍ମିତ ଗୋଟେ ଝୁଲା ପୋଲ। ଏହାର ଦୈର୍ଘ୍ୟ ୨୪୫ ଫୁଟ୍। କେବଳ ପାଦରେ ଯିବାକୁ ହୁଏ। ଯାନବାହାନ ଚଳାଚଳ ପାଇଁ ଏହା ଉଦ୍ଦିଷ୍ଟ ନୁହେଁ। ଷୋଡ଼ଶ ଶତାବ୍ଦୀରେ ଧବଳେଶ୍ୱର ମନ୍ଦିରଟି ନିର୍ମିତ। ରାଜା ପ୍ରତାପରୁଦ୍ର ଦେବ ଏ ଦେଉଳ ତୋଳିଛନ୍ତି। ଏ କଥାଟି କେହି କେହି କହନ୍ତି। ମାତ୍ର ଏହା ୧୦ମ/୧୧ଶ ଶତାବ୍ଦୀରେ ନିର୍ମିତ। ଉ୍ୱିକିପିଡ଼ିଆ ଏ ତଥ୍ୟଟି ପ୍ରଦାନ କରେ। ଆଜିର ଧବଳେଶ୍ୱର ମନ୍ଦିର ସମ୍ପର୍କିତ ଐତିହାସିକ ତଥ୍ୟଟେ। ଖୋର୍ଦ୍ଧାରାଜା ବୀରକିଶୋର, ଏକଦା ଶିକାରରେ ବାହାରିଲେ। ସାଥିରେ ସୈନ୍ୟସାମନ୍ତ। ରାଜା ଶିକାର ପଛରେ ଧାବିତ। ଆଖିରେ ପଡ଼ିଲା ଭଗ୍ନପ୍ରାୟ ମନ୍ଦିରଟେ। ମନ୍ଦିରର ପୁନରୁଦ୍ଧାର ପାଇଁ ନିର୍ଦ୍ଦେଶ ଦେଲେ। ତିନିଶହ ଚଉଦ ଏକର ଜମି ଖଞ୍ଜା କରିଦେଲେ। ଜଣେ ମାଳି ମନ୍ଦିର ଦାୟିତ୍ୱରେ ରହିଲେ। ସେ ମାଳିଙ୍କର ପରିବାର, ପରବର୍ତ୍ତୀ ସମୟରେ ମାଳିସାଇ ଭାବେ ପରିଚିତ। ମନ୍ଦିର ଯିବା ରାସ୍ତାରେ ଏ ସାଇଟି ଆଖିରେ ପଡ଼େ। ମନ୍ଦିରଟିର ପୁନରୁଦ୍ଧାର କାଳ ୧୧୫୩ ଶାକ ଏରା (୧୨୩୨ ଖ୍ରୀ.ଅ.)।

ଧବଳେଶ୍ୱର ମନ୍ଦିର ଉଚ୍ଚତା ୭୫ ଫୁଟ୍। ମହାନଦୀ ଟାପୁରେ ଏହା ନିର୍ମିତ। ଗର୍ଭଗୃହରେ ଅନନ୍ତ ନାଗ, ଧବଳେଶ୍ୱର ସ୍ୱୟମ୍ଭୁଲିଙ୍ଗ, ଦ୍ୱାରଦେଶରେ ବୃଷଭ, ପଶ୍ଚାତ୍ ଭାଗରେ ନନ୍ଦୀ, ମହାକାଳ। ମନ୍ଦିର ପରିସରରେ ଶ୍ରୀରାମ, ଶ୍ରୀକୃଷ୍ଣ ମନ୍ଦିର, ବେଢ଼ାକାଳୀ ମନ୍ଦିର ମଧ୍ୟ ବିରାଜିତ। ପୀଠରେ ପୂର୍ବରୁ ଅନନ୍ତ ବାସୁଦେବଙ୍କ ପୂଜାର୍ଚ୍ଚନା ହେଉଥିଲା। ପ୍ରତ୍ୟହ ଜୟମଙ୍ଗଳ ଆରତି। ତା'ପରେ ଠାକୁରଙ୍କ ମାଜଣା, ଦି' ପ୍ରହରରେ ଅନ୍ନଭୋଗ, ପହୁଡ଼। ଅପରାହ୍ଣରେ ଟେରାପଣା, ସନ୍ଧ୍ୟାରେ ଆଳତି। ରାତିରେ ବଡ଼ସିଂହାର ଭୋଗ। ଏସବୁ ପୀଠରେ ନିତ୍ୟ ନୈମିତ୍ତିକ ଉପାସନା ରୀତିନୀତି।

ଧବଳେଶ୍ୱର ମନ୍ଦିର ସମ୍ପର୍କିତ ନାନାଦି ଲୋକକଥା, କିମ୍ବଦନ୍ତୀ। ପୁରାଣ କାହାଣୀ ବି ଲୋକମୁଖରେ ଉଜ୍ଜୀବିତ। କଥାଟି ଅତିରୋଚକ। ଶଚିପତି ଇନ୍ଦ୍ର। ଦୁର୍ଦ୍ଦାନ୍ତ ରାକ୍ଷସଟେ। ତାଙ୍କ ସହ ସ୍ୱର୍ଗରେ ଘୋର ରଣ କଲା। ଇନ୍ଦ୍ର ତାଙ୍କୁ ବଧ କଲେ। ରାକ୍ଷସ ହତ୍ୟା ଅପରାଧ ଯୁକ୍ତ ହେଲେ। ବ୍ରହ୍ମା ଅଭିଶାପ ଦେଲେ। ଇନ୍ଦ୍ର ହରାଇଲେ ତାଙ୍କର ସମସ୍ତ ଶକ୍ତି, ସାମର୍ଥ୍ୟ। ଇନ୍ଦ୍ର ଦେବଗୁରୁଙ୍କୁ ଭେଟିଲେ। ତାଙ୍କ ଦ୍ୱାରା ଆଦିଷ୍ଟ ହେଲେ। ମହାନଦୀର ଉତ୍ତର ତଟ, ସେଇଠାରେ ମହାନଦୀ ସ୍ନାନ କଲେ। ତାଙ୍କ ପାତକ ନାଶ ହେଲା। ଫେରି ପାଇଲେ ପୂର୍ବଶକ୍ତି। ଭକ୍ତିପୂର୍ବକ ଶିବଲିଙ୍ଗଟିଏ ସ୍ଥାପନ କଲେ। ତାହା ଐନ୍ଦ୍ର ଶିବଲିଙ୍ଗ। ଏକ ଶିଳାଖଣ୍ଡ ଉପରେ ବିରାଜିତ। ବହୁ ବର୍ଷ ବିତିଲା। ଲିଙ୍ଗ ଉପରେ ମାଟିକୁଦ ପାଲଟିଗଲା। ଗଉଡ଼ର ଗାଇଟେ। ନିତି ପଠାକୁ ଯାଏ ଚରିବାକୁ। ତା' ପହ୍ନାରୁ ସ୍ରବେ ଦୁଗ୍ଧ, ତାହା ପୁଣି ସମାଧିସ୍ଥ ଲିଙ୍ଗ ଉପରେ। ଗାଟିର ମହିମା ଗଉଡ଼ ବୁଝିଲା। କ୍ରମେ ସମ୍ବାଦ ଚହଟି ଗଲା। ରାଜା ପ୍ରତାପରୁଦ୍ରଦେବ, ସେ ସ୍ଥାନ ଖୋଳାଇଲେ। ଶିବଲିଙ୍ଗ ଆବିଷ୍କାର କଲେ। ଗଢ଼ିଲେ ମନ୍ଦିରଟେ। ପୂଜାର୍ଚ୍ଚନା ଆରମ୍ଭ କଲେ। ଏ କଥାଟି କିମ୍ବଦନ୍ତୀ

ପ୍ରାୟ ମନେ ହୋଇଥାଏ । ଧବଳେଶ୍ୱରଙ୍କ ବଡ଼ଓଷା ପ୍ରସଙ୍ଗ । ଏଥିରେ ମଧ୍ୟ ସ୍ମରଣୀୟ ତଥ୍ୟଟେ ନିହିତ । ରାଜା କ୍ରତୁଙ୍କ ବିବାହ କଲେ ନାଗ ରାଜକନ୍ୟା ହରପ୍ରିୟା । ଉଭୟ ରତି ସୁଖରେ ବିଭୋର ହେଲେ । ରାଜ୍ୟରେ ଅରାଜକତା ସୃଷ୍ଟି ହେଲା । ରାଜ୍ୟକୁ ଶତ୍ରୁରାଜା ଅଧିକାର କଲେ । ଉଭୟ ରାଜାରାଣୀ ବନବାସ କଲେ । ଶିବ ଚତୁର୍ଦ୍ଦଶୀ ତିଥି । ସନ୍ନ୍ୟାସୀ ଜଣେ ରାଜାଙ୍କୁ କେତକୀ ଫୁଲ ଦେଲେ । ଶିବଙ୍କୁ ଲାଗି କରିବାକୁ କହିଲେ । ମଦମତ୍ତ ରାଜା, କେତକୀ ଫୁଲ ଖୋସିଦେଲେ ରାଣୀଙ୍କ ଗଭାରେ । ସନ୍ନ୍ୟାସୀ ଅଭିଶାପ ଦେଲେ । ରାଜା ହେଲେ ଚଳିତ କୁଷ୍ଠ ବ୍ୟାଧିଗ୍ରସ୍ତ । ତାଙ୍କର ଚେତନା ଉଦୟ ହେଲା । ସମୟକ୍ରମେ ଆଉ ଜଣେ ସନ୍ନ୍ୟାସୀ ଦେଖାହେଲେ । ବଡ଼ଓଷା କରିବାକୁ ରାଜାଙ୍କୁ ଉପଦେଶ ଦେଲେ । ରାଜା ବିଧି ମତେ ତାହା ପାଳନ କଲେ । କାର୍ତ୍ତିକ ଚତୁର୍ଦ୍ଦଶୀରେ ଧବଳେଶ୍ୱର ପୀଠରେ ବୁଡ଼ ପକାଇଲେ । ଶିବଙ୍କ କୃପା ବର୍ଷିଲା । ରାଜାହେଲେ ବ୍ୟାଧିମୁକ୍ତ । ରାଜ୍ୟ ଫେରି ପାଇଲେ, ସୁଖରେ ଯୁଗ ରାଇଜ କଲେ ।

ଧବଳେଶ୍ୱରଙ୍କ ନାମକୁ ନେଇ ଆଉ ଏକ କିମ୍ବଦନ୍ତୀ । ଜଣେ ବ୍ରାହ୍ମଣର ଥାଏ କଳା ମଚମଚ ଅଣ୍ଡିରା ବାଛୁରୀଟେ । ତା' ପ୍ରତି ବାଟୋଇର ଲୋଭ ବଳିଲା । ଗାମୁଛାକାନୀରେ ବାଛୁରୀ ବେକକୁ ବାନ୍ଧିଦେଲା । ଚୋରି କରି ନେଇଗଲା । ପଛରେ ଗ୍ରାମବାସୀଙ୍କ ହୋ ହାଲ୍ଲା । ଚୋର ବାଛୁରୀକୁ ମନ୍ଦିର ଭିତରେ ରଖି କବାଟ କିଳିଦେଲା । ବାହାରେ ଜନଗହଳି, ବାଛୁରୀଟି ହମ୍ବା ରଡ଼ି କଲା । ଚୋରର ହୋସ୍ ଉଡ଼ିଲା । ପ୍ରଭୁଙ୍କୁ କାତର ନିବେଦନ କଲା । ଅନ୍ତର୍ଯ୍ୟାମୀ ଭୋଳାନାଥ । ତା' ଦୟିନୀ ଶୁଣିଲେ । ସନ୍ନ୍ୟାସୀ ବେଶରେ ଉଭା ହେଲେ । ମନ୍ଦିର ମଧ୍ୟରୁ ବାଛୁରୀକୁ ଅଣାଗଲା । ସମସ୍ତେ ଆଚମ୍ବିତ । କଳାନୁହେଁ ବାଛୁରୀ ବର୍ଣ୍ଣ ଧଳା । ସନ୍ନ୍ୟାସୀ ଅଦୃଶ୍ୟ ହେଇଗଲେ । ଚୋରଟି ସବୁକଥା ବଖାଣିଲା । ଶେଷ ଜୀବନ ଯାଏଁ ପ୍ରଭୁଙ୍କ ସେବା କଲା । ଫି'ସନ ବିପଦ ଗଂଜନ ଶମ୍ଭୁନାଥଙ୍କ ମେଳା ଆରମ୍ଭ କଲା । ଶିବଶମ୍ଭୁ ଧବଳେଶ୍ୱର ନାମ ବହିଲେ । ଏ ପ୍ରସଙ୍ଗଟି ଧବଳେଶ୍ୱର ମେଳା ପୁସ୍ତିକାର ଅଂଶବିଶେଷ – ଧନ୍ୟ ଧବଳେଶ୍ୱର ନାମ / ଅତି ପବିତ୍ର ପୁଣ୍ୟ ଧାମ । ମହିମାବଳେ ଅବତରି / କଳାଗୋରୁକୁ ଧଳା କରି, ନାମ ହୋଇଲା ଧବଳେଶ୍ୱର / ସୁଯଶ ହୋଇଛି ବିସ୍ତାର । ଏବେ ବି ରିଷ୍ଟ ଖଣ୍ଡନ ପାଇଁ ଗାଁ ଗାଁରେ ଧବଳେଶ୍ୱର ମେଳା, ଏହାର ପ୍ରସିଦ୍ଧି ଅତୁଟ ରହିଛି ।

ଧବଳେଶ୍ୱର ପୀଠ । ଏହାର ମହିମା ଚୌଦିଗେ ଖ୍ୟାତ । ମହାଶିବରାତ୍ରି, ପୁଷ ପୂର୍ଣ୍ଣିମା, ଦୋଳ ପୂର୍ଣ୍ଣିମା, କାର୍ତ୍ତିକ ପୂର୍ଣ୍ଣିମାରେ ପୀଠଟି ହୁଏ ଉତ୍ସବମୁଖର । ମାତ୍ର ବଡ଼ଓଷାର ପ୍ରସିଦ୍ଧି ଅତି ଗୁରୁତ୍ୱପୂର୍ଣ୍ଣ । ପୁଣ୍ୟ ମାସ କାର୍ତ୍ତିକ । ମାସସାରା ସାତ୍ତ୍ୱିକ ଆହାର । ମାସର ଦଶମୀରୁ ପଂଚମୀ, ପଂଚୁକବ୍ରତ ପାଳିତ ହୁଏ । ଆକାଶଦ୍ୱୀପ ବସେ, ଚଉରା ପିଣ୍ଡିରେ ପଂଚୁବର୍ଣ୍ଣ ମୁରୁଜ, କୁମାରୀମାନେ ନାନାଦି ଚିତ୍ର ଆଙ୍କନ୍ତି । ପ୍ରାତଃସ୍ନାନ, ନାମ ସଂକୀର୍ତ୍ତନ । ଗାଁ ଠାକୁରାଣୀ, ବିଭିନ୍ନ ଦେବଦେବୀ ପୀଠ ଉଚ୍ଛୁଳି ଉଠେ । କାର୍ତ୍ତିକ ପଂଚମୀ 'ବକ ପଂଚମୀ', ବଗବଗୁଲୀ ବି ମୀନ ସ୍ପର୍ଶ କରନ୍ତିନି । କାର୍ତ୍ତିକ ତ୍ରୟୋଦଶୀ, ଓଷେଇତି ହବିଷ୍ୟ କରନ୍ତି । ଶିବଙ୍କ ଉଦ୍ଦେଶ୍ୟରେ ନୈବେଦ୍ୟ ବାଢ଼ନ୍ତି । ସେତିକି ମାତ୍ର ପ୍ରସାଦ ସେବନ । ସେଇଠାରୁ ଉପବାସ । ତା' ପରଦିନ ବଡ଼ଓଷା । ଧବଳେଶ୍ୱରରେ ନାହିଁ ନଥିବା ଭକ୍ତଙ୍କ ଭିଡ଼ । ଶିବଲିଙ୍ଗରେ ୧୦୮ ଗରା ଜଳ, ୧୦୮ ବେଲପତ୍ର ଲାଗି କରାଯାଏ । ଧବଳ ଅରଖ, ଧବଳ ଗାଈକ୍ଷୀର ଭୋଳାନାଥଙ୍କ ଅତି ପ୍ରିୟ । ଶ୍ରଦ୍ଧାଳୁମାନେ ଧବଳେଶ୍ୱର ମନ୍ତ୍ରଜପ କରନ୍ତି । ପ୍ରଭୁଙ୍କୁ ଷୋଡ଼ଶ ଉପଚାରରେ ଆରାଧନା କରାଯାଏ ।

ବଡ଼ଓଷାର ବିଧି ବିଧାନ । ସବୁ 'ବଡ଼ଓଷା କଥା'ରେ ବର୍ଣ୍ଣିତ – ଆଷାଢ଼ ମାସ ଶୁକ୍ଳପକ୍ଷ / ଚତୁର୍ଦ୍ଦଶୀ ଦିନକୁ ଲକ୍ଷ୍ୟ / ବିଶୁଦ୍ଧ ଜଳସ୍ନାନ କରି / ନାରିକେଳ ଗୋଟିଏ ଧରି, ସଂକଳ୍ପ କରିବ ଯେ ମନେ / ଶିବଙ୍କୁ ସୁମରି ସେ ସ୍ଥାନେ / ସେହି ଦିନୁ ପ୍ରତିମାସରେ / ସୋମବାରକୁ ସୋମବାର, କାର୍ତ୍ତିକ ମାସରେ ଯେ ପୁଣ / ଶୁକ୍ଳ ଚତୁର୍ଦ୍ଦଶୀ ଯେ ଜନ, ରାତ୍ରରେ ବଡ଼ଓଷା କରି/ ଉଦ୍‌ଯାପନ ସେ ଦିନ ଧରି । କାର୍ତ୍ତିକ ତ୍ରୟୋଦଶୀ, ଚତୁର୍ଦ୍ଦଶୀର ସନ୍ଧିକ୍ଷଣ । ମାହେନ୍ଦ୍ର ମୁହୂର୍ତ୍ତ । ପ୍ରଭୁ ଧବଳେଶ୍ୱରଙ୍କୁ ଗଜଭୋଗ ଲାଗି କରାଯାଏ । ଅରୁଆ ଚାଉଳ ଚୂନା, ଗୁଡ଼, ନଡ଼ିଆ, ଛେନା, ମୁଗ ପୂରରେ ମଣ୍ଡା ଗଢ଼ାଯାଏ । ଗଜର ଗଠନ ଲିଙ୍ଗାକୃତି । ଗଜ ଭୋଗଟିକକ ପାଇଁ ବ୍ରତଚାରୀଏ ଚାତକ ପରି ଚାହିଁ ଥାଆନ୍ତି । ଠାକୁରଙ୍କୁ ଭୋଗ ଲାଗିହୁଏ । ଓଷେଇତିମାନେ ପ୍ରସାଦ ସେବନ କରନ୍ତି । ବନ୍ଧୁବାନ୍ଧବ, ଜ୍ଞାତିକୁଟୁମ୍ବଙ୍କୁ ପ୍ରଦାନ କରନ୍ତି । ଏଥିରୁ ମହାପୁଣ୍ୟ ପ୍ରାପ୍ତ ହୁଏ ।

ଧବଳେଶ୍ୱର ପୀଠରେ ମୁଖ୍ୟତଃ ବଡ଼ଓଷା ହୁଏ । ପୀଠ ହୋଇଯାଏ ଲୋକାରଣ୍ୟ । ଲକ୍ଷଲକ୍ଷ ବ୍ରତଚାରୀ, ବ୍ରତଚାରିଣୀ । ବିଭିନ୍ନ ପ୍ରାନ୍ତରରୁ ଆସନ୍ତି ଭକ୍ତମାନେ । ଏଥି ସହ ଟୁରିଷ୍ଟମାନଙ୍କର ଭିଡ଼ ଜମେ । ରାତ୍ର ଉଜାଗର ରହିବା, ଶିବ ସହସ୍ର ନାମ ଜପ, ନାମ ସଂକୀର୍ତ୍ତନ । ଏକ ଅଭିନବ ଭାକ୍ତିକ ପରିବେଶ ସୃଷ୍ଟି ହୁଏ । ସରିସରି ଆସେ ଚତୁର୍ଦ୍ଦଶୀ । ଶ୍ରଦ୍ଧାଳୁମାନେ ଯେଝାଷ୍ଥାନ ଚାଲିଯାଆନ୍ତି । ମାତ୍ର ବଡ଼ଓଷା ଏକ ସାର୍ବଜନୀନ ପର୍ବ । ଧବଳେଶ୍ୱରଙ୍କଠାରେ ମୁଖ୍ୟତଃ ଏହା ପାଳିତ ହୁଏ । ମାତ୍ର ଓଡ଼ିଶାର ବିଭିନ୍ନ ଶିବମନ୍ଦିର ସେଦିନ ଉତ୍ସବ ମୁଖର । କେହି କେହି ଶ୍ରଦ୍ଧାଳୁ ମାନସିକ କରି ଥାଆନ୍ତି । ନିଜ ଘରେ ରହି ଓଷା ପାଳନ କରନ୍ତି । ଓଷାର ନିୟମ ପ୍ରାୟତଃ ଏକା ପ୍ରକାର । ବ୍ରତଚାରୀଏ ଆସ୍ଥାନଟେ ଯତ୍ନେ କରନ୍ତି । ଶକ୍ତି ରୂପକ ପାନ, ଏହାର ଉପରେ ଥାପନା କରନ୍ତି । ପାନ ଉପରେ ଅକ୍ଷୁଣ୍ଣ ସୁପାରି, ଶିବଲିଙ୍ଗର ପ୍ରତୀକ । ତ୍ରିଶାଖା ବେଲପତ୍ର, ଧୂପ, ଅଗରୁ ଚନ୍ଦନ, ପ୍ରଦାନ କରାଯାଏ । ଧବଳେଶ୍ୱରଙ୍କ ପୂଜା ଆରାଧନା ହୁଏ । ଧବଳେଶ୍ୱର ଅନୁରୂପ ନୈବେଦ୍ୟ ଲାଗିହୁଏ । ଗଜ ଭୋଗ ସହ, ଅଟକାଳି । ଅଟକାଳି ଏକ ସ୍ୱତନ୍ତ୍ର ପ୍ରକାର ପ୍ରସାଦ । ଅରୁଆ ଚାଉଳ ଚୂନା, ଗୁଡ଼, କୋରା ନଡ଼ିଆ, କ୍ଷୀରରେ ପ୍ରସ୍ତୁତ ହୁଏ । ଏ ପ୍ରସଙ୍ଗଟି ବଡ଼ଓଷା କଥାରେ ବର୍ଣ୍ଣିତ – କାର୍ତ୍ତିକ ମାସରେ ଯେ ପୁଣ୍ୟ / ଶୁକ୍ଳ ଚତୁର୍ଦ୍ଦଶୀ ଯେ ଦିନ / ରାତ୍ରରେ ବଡ଼ଓଷା କରି / ଉତ୍ଥାପନ ଦିନ ଧରି / ଆତପ ତଣ୍ଡୁଳ ଯେ ଚୂନା / ଗୁଡ଼ ନାରିକେଳ ଯେ ଛେନା/ (କିମ୍ୱା) ମୁଗ ଖେସାରି ପୂର କରି / ଚଉଦ ଗୋଟି ମଣ୍ଡା କରି / ନିଜେ ସେ ଶୁଦ୍ଧପୂତ ହୋଇ / ଷଡ଼ାକ୍ଷର ମନ୍ତ୍ରକୁ ଗାଇ / ଶିବଙ୍କୁ ସମର୍ପିବ ନେଇ / ସୁବିଜ୍ଞ ବ୍ରାହ୍ମଣ ଡକାଇ । ଓଡ଼ିଶାର ପୁରପଲ୍ଲୀରେ ବଡ଼ ଓଷା ଅତି ନିଷ୍ଠାରେ ପାଳନ କରାଯାଏ । ଓଷା ପାଳିଲେ ଯଶ, କୀର୍ତ୍ତି ଖ୍ୟାତି ପ୍ରାପ୍ତିର ସୁଯୋଗ ଆସେ, ପରିବାରର ହିତସାଧିତ ହୁଏ– ନର ନାରୀ କଲେ ଏ ବ୍ରତ / ହୁଅନ୍ତି ବହୁ ଭାଗ୍ୟବନ୍ତ / ନିରୋଗ ତାଙ୍କ ପୁତ୍ର କନ୍ୟା / ସଂସାରେ ହୋନ୍ତି ସେହୁ ଧନ୍ୟା / ନିର୍ଦ୍ଧନ ଲଭେ ବହୁ ଧନ / ଅପୁତ୍ରକୁ ମିଳେ ସନ୍ତାନ, ଶତ୍ରୁ ଭୟ ଯେ ଅଗ୍ନିଭୟ / ନପଡ଼େ ସେହୁ ହୁଏ ନିର୍ଭୟ, ରାଜଦ୍ୱାରେ ସେ ଲଭେ ଯଶ / ଯେ ଓଷାରେ ଲଭେ ସନ୍ତୋଷ । ମହାରୁଦ୍ର ଶ୍ରୀ ଶ୍ରୀ ଧବଳେଶ୍ୱର ସଭିଙ୍କ ମନୋବାଂଛା ପୂର୍ଣ୍ଣ କରନ୍ତି ।

ହିନ୍ଦୁ ଧର୍ମରେ ଶିବପୂଜାର ଏକ ବିଶିଷ୍ଟ ସ୍ଥାନ ରହିଛି । ଏହି ପୂଜାରେ ମୂର୍ତ୍ତି ନୁହେଁ, ପ୍ରତୀକକୁ ଉପାସନା କରାଯାଏ । ଅବଶ୍ୟ ପ୍ରତ୍ୟେକ ମୂର୍ତ୍ତି ଏକ ଏକ ପ୍ରତୀକ, ଶିବ ମନ୍ଦିରରେ ବିଗ୍ରହ ନୁହେଁ, ଲିଙ୍ଗ ତଥା ଯୋନିର ପୂଜା କରାଯାଏ । ଲିଙ୍ଗ, ଯୋନି ପୃଥକ୍ ରହି ନଥାଆନ୍ତି । ଯୋନିର ମଧ୍ୟ ଦେଶରେ ଲିଙ୍ଗ ପ୍ରବିଷ୍ଟ ହୋଇଥାଏ । ଏପରି ଏକ ମିଳନର ପ୍ରତୀକ ଲିଙ୍ଗ ଉପାସନା । ଶିବ, ଶକ୍ତି ବିନା ଶବ । ସେ ଶକ୍ତିଯୁକ୍ତ ହେଲେ ହୋଇଯାଆନ୍ତି ମହାବଳଶାଳୀ । ଶିବ ଲିଙ୍ଗ ଉପାସନା ଭିତରେ ଶକ୍ତି ଆରାଧନା ବିଜଡ଼ିତ । ତାଙ୍କରି ଉଦ୍ଦେଶ୍ୟରେ ନାନାଦି ଓଷାବ୍ରତ ପାଳିତ । ତହିଁରେ ଧବଳେଶ୍ୱର ଓଷା (ବଡ଼ଓଷା) ଏକ ମହାନ ପର୍ବ, ଶୈବ ଉପାସନାର ଏକ ଅନନ୍ୟ ନିଦର୍ଶନ ।

ସା/ପୋ– ପୁରୁଷୋତ୍ତମପୁର
ଭାୟା–କରିଲୋପାଟଣା
କେନ୍ଦ୍ରାପଡ଼ା – ୭୫୪୨୨୩



# ଶିଶୁଦିବସ ଓ ଶିଶୁସାହିତ୍ୟ

**କୁଞ୍ଜ ବିହାରୀ ସାହୁ**

ବିଶ୍ୱର ଭିନ୍ନଭିନ୍ନ ଦେଶରେ ବିଭିନ୍ନ ତାରିଖରେ ଶିଶୁଦିବସ ପାଳନ କରାଯାଇଥାଏ । ଏହାର ଉଦ୍ଦେଶ୍ୟ ଥିଲା ପୃଥିବୀର କୋଣଅନୁକୋଣରେ ଥିବା ସମୂହ ପିଲାମାନଙ୍କ ଭିତରେ ଅନ୍ତର୍ଜାତୀୟ ଏକତା, ସଚେତନତା ତଥା କଲ୍ୟାଣକାରୀ ପଦକ୍ଷେପ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଜନ୍ମଦିବସକୁ ମନେ ରଖିବା ପାଇଁ ଭାରତରେ ପ୍ରତିବର୍ଷ ନଭେମ୍ବର ୧୪ ତାରିଖକୁ ଶିଶୁଦିବସରୂପେ ପାଳନ କରାଯାଇଥାଏ ।

ଶିଶୁଦିବସଟି ଜବାହରଲାଲ ନେହେରୁଙ୍କ ପ୍ରତି ସମ୍ମାନବୋଧ ହୋଇଥିବାରୁ ନେହେରୁଙ୍କ ବିଷୟରେ ସଂକ୍ଷିପ୍ତ ଆଲୋଚନାଟିଏ ରଖିବା ସମୀଚୀନ ମନେହୁଏ । ଆହ୍ଲାବାଦର ଆନନ୍ଦ ଭବନରେ ଥିବା ବିରାଟ ଉଦ୍ୟାନରେ ବିଚରଣ କରିବା, ଜଳାଶୟରେ ସନ୍ତରଣ ଶିକ୍ଷା ଲାଭକରିବା ଏପରିକି ଅଶ୍ୱଶାଳାରେ ଅଶ୍ୱାରୋହଣ ଶିକ୍ଷା ନେବାର ଭିତ୍ତିଭୂମି ତିଆରି ହୋଇଥିଲା ଶିଶୁ ଜବାହରଲାଲଙ୍କର ।

ଶୈଶବରେ ଜବାହରଲାଲ ଘରୋଇ ଶିକ୍ଷା କରିଥିଲେ । ସେ ୟୁରୋପୀୟ ଶିକ୍ଷକ ଏଫ୍.ଟି.ବ୍ରୁକ୍ସଙ୍କ ଦାୟିତ୍ୱରେ ରହି ଅନେକ ଇଂରେଜ ଲେଖକ ଯଥା ସ୍କଟ୍, ଡିକେନସ୍, ଥ୍ୟାକ୍ରେ, ଏଚ୍.ଜି.ଓ୍ୱେଲସ, ମାର୍କଙ୍କର ଉଚ୍ଚକୋଟୀର ଲେଖା ପଢ଼ିବାର ସୁଯୋଗ ପାଇଥିଲେ । ମାତ୍ର ୧୫ ବର୍ଷ ବୟସରେ ଇଂଲଣ୍ଡର ହ୍ୟାରୋ ସ୍କୁଲରେ ଅଧ୍ୟୟନ କରିଥିଲେ । ଧୀଶକ୍ତିସମ୍ପନ୍ନ ଜବାହରଲାଲ ଭାରତରେ ସଂଘଟିତ ଜାତୀୟ ଆନ୍ଦୋଳନ ସମ୍ବନ୍ଧୀୟ ସମସ୍ତ ତଥ୍ୟାବଳୀ ଉପରେ ଉପାଦେୟ ସମ୍ବାଦ



ସଂଗ୍ରହ କରୁଥିଲେ । ବୋଧହୁଏ ମନ ଭିତରେ ଉଙ୍କିମାରୁଥିଲା ଜାତୀୟବାଦର ଉଚ୍ଚାଙ୍ଗ ସ୍ୱର ।

କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କଲେ ଜବାହରଲାଲ । ବିଲାତରେ ବାରିଷ୍ଟରୀ ପାସ୍ କଲାପରେ ମାଟି ମା'ର ଆକର୍ଷଣରେ ସ୍ୱଦେଶ ଭାରତକୁ ଫେରିଆସିଲେ ।

୧୯୨୧ ମସିହାରେ ମହାତ୍ମା ଗାନ୍ଧୀଙ୍କ ଅହିଂସା ଆନ୍ଦୋଳନ ଡାକରାରେ ଉଦ୍‌ବୁଦ୍ଧ ହୋଇ ଆନ୍ଦୋଳନର ମଙ୍ଗ ଧରିଥିଲେ ଜବାହରଲାଲ । ପରେ ପରେ ଜାତୀୟ କଂଗ୍ରେସର ସଭାପତି ପଦ ଅଳଙ୍କୃତ କରିଥିଲେ । ୧୯୪୨ ମସିହାରେ

ଭାରତଛାଡ ଆନ୍ଦୋଳନରେ ମଜ୍ଜିଯାଇଥିଲେ ଆପଣାଛାଏଁ । ଜାତୀୟ ସଂଗ୍ରାମରେ ଅବିଚଳିତ ଢଙ୍ଗରେ ନିଜର ସ୍ୱାଧୀନପଣିଆ ଜାହିର କରି ଇଂରେଜ ଶାସନ ବିରୋଧରେ ସ୍ୱର ଲମ୍ୱେଇଥିଲେ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନତା ଲାଭ କଲା । ସେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ହେବାର ଅଲିଭା ଚିତ୍ର ଆଙ୍କି ଦେଇଥିଲେ ସମସ୍ତ ଭାରତୀୟଙ୍କ ହୃଦୟ କାନଭାସ୍‌ରେ ।

ଆଖିରେ ଆଖିଏ ସ୍ୱପ୍ନ । ସରଳ ହୃଦୟରେ ଅସୁମାରୀ ଢେଉ । ଗର୍ବ–ଅହଂକାରକୁ ପଛରେ ପକାଇ ସ୍ୱଦେଶ ଚିନ୍ତା, ମାନବ ଜାତିର ସୁମଙ୍ଗଳ ଭାବନାକୁ ହୃଦେ ହୃଦେ ଅନୁଭବ କରୁଥିଲେ । ସାଧୁତା, ନିଷ୍କପଟତା ଥିଲା ଜୀବନର ବ୍ରତ ।

୧୯୫୦ ମସିହାରେ ଛୋଟ କନ୍ୟାଟିଏ ନେହେରୁଙ୍କୁ ଗୋଲାପ ଫୁଲଟିଏ ଉପହାର ଦେଇଥିଲା । ନେହେରୁ ଆଗ୍ରହ ସହକାରେ ଗ୍ରହଣ କରିଥିଲେ । ସେ ବୁଝିଥିଲେ ଯେ, ଗୋଲାପ ଫୁଲ ନିରୀହ ଓ ପ୍ରେମର, ଭଲ ପାଇବାର ପ୍ରତୀକ । ପିଲାମାନେ ଭାରତର ଭବିଷ୍ୟତ । ସେମାନେ ଗୋଲାପ ଫୁଲ ପରି ସରଳ, ନିରୀହ ଓ ଦେବତୁଲ୍ୟ । ପିଲାମାନଙ୍କର ସର୍ବାଙ୍ଗୀନ ଉଚ୍ଚତର ଶିକ୍ଷା ଓ ଅଧିକାରକୁ ସାଉଁଟି ଆଣିବାକୁ ସଦାସର୍ବଦା ଚେଷ୍ଟିତ ଥିଲେ । ଫୁଲ ଫୁଟିଲେ ବଗିଚା ବାସେ । ପିଲାଏ ହସିଲେ ଦୁନିଆ ବାସେ ବୋଲି ସେ ବିବେଚନା କରୁଥିଲେ । ପିଲାମାନେ ହିଁ ଦେଶର ସ୍ପନ୍ଦନ ଓ ତାଙ୍କ ହୃଦୟ ସ୍ପନ୍ଦନ । ଗୋଲାପ ଫୁଲକୁ ପିଲାଙ୍କ ସହ ତୁଳନା କରି ସେ ସଦାସର୍ବଦା ନିଜ ଜାମାରେ ଗୋଲାପ ଫୁଲଟିଏ ଖୋସୁଥିଲେ ।

ମହାତ୍ମା ଗାନ୍ଧୀଙ୍କୁ ବାପୁଜୀ ବୋଲି ସମ୍ବୋଧନ କରାଯାଉଥିଲା । ପିଲାମାନେ ଖୁସି ମଉଜରେ ବି ନେହେରୁଙ୍କୁ ଚାଚା ବୋଲି ସମ୍ବୋଧନ କଲେ । କାଳକ୍ରମେ ସେ ଚାଚା ନେହେରୁ ନାମରେ ସମଗ୍ର ଦେଶରେ ପରିଚିତ ହେଲେ । ଚାଚା ନେହେରୁ ଏକ ଆବେଗଭରା, ମଧୁଝରା ନାଁ ।

ଶିଶୁଦିବସରେ ଶିଶୁସାହିତ୍ୟର ଏକ ନିଛକ ସଂଯୋଗ ରହିଛି । କାରଣ ଶିଶୁ ହିଁ ସମ୍ଭାବନାର ଚିର ସ୍ୱାକ୍ଷର । ଶିଶୁଟିଏ କଳିକା ପରି ମୁକୁଳିତ ହୋଇ ବିକଶିତ ହୁଏ ଓ ବିଭୋରପଣରେ ଚତୁର୍ଦ୍ଦିଗକୁ ମହକାଇଦିଏ । ସେ ସବୁବେଳେ ବିଶୁଦ୍ଧ । କଳୁଷ–କାଳିମା ତା'ର ସରଳ ହୃଦୟକୁ ଛୁଇଁପାରେନା । ଓଡ଼ିଆ ଶିଶୁସାହିତ୍ୟର ସାମାଜିକ ପୃଷ୍ଠଭୂମିରେ ଡଃ ମହେଶ୍ୱର ମହାନ୍ତି ଶିଶୁମାନଙ୍କୁ ନେଇ ବଖାଣିଛନ୍ତି – 'ଶିଶୁ ହେଉଛି ମାନବ ସୃଷ୍ଟିରେ ଅଙ୍କୁର । ଅସୀମ ଶକ୍ତି, ଅନନ୍ତ ସମ୍ଭାବନା ଓ ପ୍ରତିଶ୍ରୁତିକୁ ନେଇ ଜନ୍ମଲାଭ କରେ । ସେ ହେଉଛି ଅତୀତର ଦାୟାଦ, ଆଗାମୀର ବାର୍ତ୍ତାବହ ଓ ଭାବୀକାଳର ପ୍ରତିନିଧି ।'

ଶିଶୁସାହିତ୍ୟ ଶିଶୁ ପାଇଁ ଯାଦୁକରରେ କୁହୁକ ପେଡ଼ିଟିଏ । ତା'ରି ଭିତରେ ଲୁଚେଇ ରଖିଥାଏ ଅସରନ୍ତି ମନଲାଖି ସାମାଜିକ, ବୌଦ୍ଧିକ ବିକାଶର ମନଛୁଆଁ ଖେଳ । ଶିଶୁ ଆଗାମୀ କାଲିର ନାଗରିକ । ସେ ହସେ ଦରୋଟି ଓଠରେ । ଶିଶୁକୁ ସମସ୍ତେ ଭଲପାଆନ୍ତି ତା'ର ଅନାବିଳ ହୃଦୟ ପାଇଁ । ସେଥିପାଇଁ ଶିଶୁ ସାହିତ୍ୟକୁ ସୃଷ୍ଟି କରୁଥିବା ସାହିତ୍ୟିକମାନେ ଧନ୍ୟ ମନେକରନ୍ତି । ଶିଶୁସାହିତ୍ୟ ସରଳ, ତରଳ, ନିଷ୍କପଟ, ପବିତ୍ରର ଏକ ଚିତ୍ରିତ ବର୍ଣ୍ଣାଳୀ । ଶିକ୍ଷକ ତଥା ବିଶିଷ୍ଟ ଶିଶୁସାହିତ୍ୟିକ ରମେଶ ଚନ୍ଦ୍ର ଭଞ୍ଜଙ୍କ ଭାଷାରେ– 'ମଶାଲଟିଏ ଜଳାଇ ରଖିବା ସହଜ, ଦୀପଟିଏ ତେଜି ରଖିବା କଷ୍ଟକର । ବୟସ୍କ ବୃକ୍ଷ ଜଳସେଚନର ଆବଶ୍ୟକତା ରଖେନାହିଁ ଜଳ ଓ ଯତ୍ନର ଚାହିଦାକୁ ଚାହିଁ ରହିଥାଏ ଛୋଟ ବୀଜ ଅଙ୍କୁରଟିଏ । ତେଣୁ ମାଳୀର ଦାୟିତ୍ୱ ଓ ଧାଇତ୍ୱ ତାହା ପାଇଁ ଅଧିକ । ତାହାର ସଫେଇ ଦେବାର ପ୍ରୟୋଜନୀୟତା ନାହିଁ ।' ସେଥିପାଇଁ ତ ଶିଶୁ ହିଁ ମୂଳତଃ ସଭିଙ୍କର ଆପଣାର । ତା' ଉପରେ ଏକ ସୁନ୍ଦର ଭବିଷ୍ୟତଟିଏ ଛିଡ଼ାହୁଏ ।

କହିବାକୁ ଗଲେ, ଶିଶୁକୁ ଭଲ ପାଇବାରେ ଅନନ୍ୟ ଭୂମିକା ନେଇଥିଲେ ପଣ୍ଡିତ ଜବାହରଲାଲ ନେହେରୁ । ଶିଶୁମାନଙ୍କୁ ଅହେତୁକ ଭଲ ପାଇବାର ନିଦର୍ଶନ ହେଲା ଶିଶୁସାହିତ୍ୟ । ନିଜ ଜନ୍ମଦିନ ନଭେମ୍ବର ଚଉଦ ତାରିଖକୁ ସ୍ମୃତିମୟ କରିବାପାଇଁ ସାରା ଭାରତବର୍ଷରେ ଶିଶୁଦିବସ ରୂପେ ଗୃହୀତ କରି ଶିଶୁସାହିତ୍ୟିକମାନଙ୍କୁ ପରୋକ୍ଷଭାବେ ପରିପୁଷ୍ଟ କରିପାରିଥିଲେ । ଶିଶୁଦିବସରେ ପ୍ରତ୍ୟେକ ଶିଶୁ ନିଜର ଆକାଂକ୍ଷା ଜାହିର କରିଥାଏ । ଶିଶୁସାହିତ୍ୟିକଟିଏ ଶିଶୁ ଦିବସରେ ଆପଣାର ସୃଜନ ପ୍ରତିଭାକୁ ବିକଶିତ କରିବାକୁ ଆଗଭର ହୋଇପଡ଼େ । ଲେଖନୀକୁ ଗତିଶୀଳ କରାଏ କଅଁଳ ହୃଦୟକୁ

ବିସ୍ତାର କରି । ଲେଖିଚାଲେ ଅନେକ ମନନଶୀଳ କାହାଣୀ, କବିତା ଓ ଆନୁଷଙ୍ଗିକ ସୃଜନାତ୍ମକ ରଚନା । ସେଥିପାଇଁ ଶିଶୁଦିବସ ଓ ଶିଶୁସାହିତ୍ୟର ଯତିପାତ ଖୁବ୍ ଗ୍ରହଣୀୟ ଓ ପାଠକୀୟ ।

ବିଦ୍ୟାଳୟମାନଙ୍କରେ ଶିଶୁଦିବସ ଜାକଜମକରେ ପାଳିତ ହୁଏ । ପିଲାମାନେ ସକାଳେ ବିଦ୍ୟାଳୟକୁ ଆସି ପ୍ରିୟ ଚାଚାଜୀଙ୍କ ଫଟୋରେ ପୁଷ୍ପମାଲ୍ୟ ଅର୍ପଣ କରନ୍ତି । ଧୂପ, ଦୀପ, ଚନ୍ଦନରେ ଚାଚାଜୀଙ୍କୁ ପୂଜାକରି ସ୍ମରଣ କରିଥାନ୍ତି । ସେମାନେ ଚାଚାଜୀଙ୍କ ଜୀବନକୁ ଆଧାର କରି ତର୍କସଭା, ବକ୍ତୃତା, କବିତାପାଠ, କବିତା ଲିଖନ, ଚିତ୍ର ଅଙ୍କନ, ନୃତ୍ୟରେ ଅଂଶଗ୍ରହଣ କରି ନିଜକୁ ଭାଗ୍ୟବାନ ମନେକରନ୍ତି । କୌତୁକିଆ ପୋଷାକ ପ୍ରତିଯୋଗିତାରେ ଭାଗ ନେଇ ନିଜେ ଖୁସି ମନାଇବା ସହ ଅନ୍ୟକୁ ଖୁସି ବିତରି ଦିଅନ୍ତି । ପିଲାମାନଙ୍କ ପାଇଁ ଏହା ଏକ ଖୁସିବାସିର ଦିନ । ଏହି ଦିନ ବିଦ୍ୟାଳୟର ଶିକ୍ଷକ, ଶିକ୍ଷୟିତ୍ରୀମାନେ ପିଲାମାନଙ୍କୁ ନେଇ ସାଂସ୍କୃତିକ କାର୍ଯ୍ୟକ୍ରମମାନ କରାଇଥାନ୍ତି । ଶିଶୁମାନଙ୍କର ଶିକ୍ଷା ଓ ଅଧିକାରକୁ ସାବ୍ୟସ୍ତ କରିବାର ବାଟ ଦେଖାଇଥାନ୍ତି । ଏଭଳି କାର୍ଯ୍ୟକ୍ରମ ଚାଲୁ ରହିଥିବା ବେଳେ ମନେହୁଏ ସତେ ଅବା ଚାଚାଜୀ ପିଲାଙ୍କ ଗହଣରେ ରହି ପିଲାଙ୍କୁ ଶୁଭାଶୀର୍ବାଦ ଦେଉଛନ୍ତି । ମନେପଡ଼ିଯାଏ ବରିଷ୍ଠ ଶିଶୁସାହିତ୍ୟିକ ଶ୍ରୀ ଚିତ୍ତ ରଞ୍ଜନ ପଟ୍ଟନାୟକଙ୍କ କବିତା 'ଆମକୁ ଆଗେଇ ନିଅ'ର କେତୋଟି ମନଛୁଆଁ ପଦ –

ଆସ ଆସ ଚାଚା ସରଗପୁରରୁ ଚଳି
ଶିଶୁଦିବସରେ କୋଟି ଶିଶୁଙ୍କର ଅଳି ।
ଗୋଲାପ ଫୁଲରେ ଶରଧା, ସେନେହ ଭାରି
ସେହି ଫୁଲେ ଚାଚା ଗଳା ହେଉ ମାଳାଧାରୀ ।
ଶିଶୁଙ୍କ ପରଶ ଛୁଇଁଥିଲା ମନ–ପ୍ରାଣେ
ଶିଶୁ ଜୟଗୀତି ଗାଇଥିଲେ ଜାତି କାନେ ।
ସରଗରୁ ଆସି କଇଲାଣ ବାଂଟିଦିଅ
ଭଲ ବାଟେ ଚାଚା ଆମକୁ ଆଗେଇ ନିଅ ।

ସତରେ ଚାଚାଜୀ କେତେ ଭଲ ପାଉଥିଲେ ପିଲାମାନଙ୍କୁ !

ବିଦ୍ୟାଳୟରେ ପଢୁଥିବା ଛାତ୍ରଛାତ୍ରୀମାନଙ୍କ ଭିତରେ ଶିଶୁଦିବସର ମାଧୁରିମା ସୀମିତ ହୋଇ ରହେନାହିଁ । ଏପରିକି ବେସରକାରୀ ସଂସ୍ଥାର କର୍ମକର୍ତ୍ତାମାନେ ଏହି ପବିତ୍ର ଦିବସରେ ଅନାଥ ଆଶ୍ରମକୁ ଯାଇ ନିରାଶ୍ରୟ ପିଲାମାନଙ୍କୁ ଭେଟନ୍ତି । ସେମାନଙ୍କୁ ଆବଶ୍ୟକୀୟ ପୋଷାକ, ପୁସ୍ତକ, ଖାଇବା ସାମଗ୍ରୀ, ଖେଳନା ଦେଇ ସେମାନଙ୍କର ମନ ଜିଣିଥାନ୍ତି । ଆଖିରୁ ଲୁହ ପୋଛି ଆଗକୁ ଯିବାର ବାଟ ବତାନ୍ତି । ନେହେରୁଙ୍କ ପରି ଉଚ୍ଚଶିକ୍ଷିତ ମଣିଷଟିଏ ହେବାରେ ରାହା ଦେଖାନ୍ତି । ଶିଶୁଦିବସ ଯେ ଶିକ୍ଷାନୁଷ୍ଠାନରେ ପାଳିତ ହୁଏ ତା' ନୁହେଁ, ବିଭିନ୍ନ ଲାଇବ୍ରେରୀ, କ୍ଲବରେ ବି ପାଳିତ ହୋଇଥାଏ । ପରିବାର ଲୋକେ ନିଜର ପାଠପଢୁଆ ପିଲାଙ୍କ ପାଇଁ ସୁନ୍ଦର ସୁନ୍ଦର ଉପହାର ଦିଅନ୍ତି । ନେହେରୁଙ୍କ ଜୀବନୀର ରୋଚକ କଥା କହି ଭଲ ମଣିଷ ହେବାର ଆଶୀର୍ବାଦ ଦିଅନ୍ତି ।

ଶେଷରେ ଶିଶୁସାହିତ୍ୟିକର ମନନେଇ ଭାବିଲାବେଳକୁ ମୋ କବିତା ସଂକଳନ 'କବିତା କଳିକା'ର କବିତା 'ଆମେରେ କଅଁଳ କଳିକା'ରୁ କିଛି ପଦ ଏଠି ଉଦାହରଣ ରୂପେ ନିଆଯାଇପାରେ, ଯାହାକି ପଣ୍ଡିତ ଜବାହରଲାଲ ନେହେରୁଙ୍କ ପ୍ରତି ଅଜସ୍ର ପ୍ରଣାମ ଓ ସମ୍ମାନବୋଧ–

ଆମେରେ କଅଁଳ କଳିକା
ପାଖୁଡ଼ା ମେଲିବୁ ମହକ ବୋଳିବୁ
ଦିଶିବୁରେ ଭଳିଭଳିକା ।
ନାହିଁ କେହି ଆମ ପରିକି
ନାଲି, ନେଳି, ଧଳା, ଗୋଲାପି, ଶାଗୁଆ,
ରଙ୍ଗରେ ହେବାକୁ ସରିକି ।
ଜବାହରଲାଲ ନେହେରୁ
ଗୋଲାପ ଫୁଲକୁ ଭଲପାଉଥିଲେ
କାଢୁ ନ ଥିଲେ ସେ ଦେହରୁ ।
ଦୁନିଆର ଶିଶୁସାଥିଟି
ଟିକିଟିକି କଢ଼ କାଲି ହେବ ବଡ଼
କରମରେ ରଖି ମତିକି ।
ହାତ ମିଳେଇବା ଖୁସିରେ
ପ୍ରିୟ ଚାଚାଜୀଙ୍କ ଜନମ ଦିନରେ
ଖେଳିବା ଏକାଠି ମିଶିରେ ।

ଏଲ. ଆଇ.ଜି– ୧୫
ନୟାପଲ୍ଲୀ, ବ୍ରୀଟ୍ କଲୋନୀ, ଭୁବନେଶ୍ୱର
ପିନ୍– ୭୫୧୦୧୨

# ଅମର ସହିଦ୍ ବୀର ବିର୍ସାମୁଣ୍ଡା

ପଣ୍ଡିତ ତ୍ରିଲୋଚନ ମିଶ୍ର

ବିଦେଶୀ ଇଂରେଜମାନଙ୍କ କବଳରୁ ଜନ୍ମଭୂମି ଭାରତମାତାଙ୍କୁ ମୁକ୍ତ କରିବା ପାଇଁ ଯେଉଁ ବୀର ଯବାନମାନେ ଆଜୀବନ ସଂଗ୍ରାମ କରି ସହିଦ୍ ହୋଇଥିଲେ, ସେମାନଙ୍କ ମଧ୍ୟରେ ବୀର ସହିଦ୍ ବିର୍ସା ମୁଣ୍ଡାଙ୍କୁ ସ୍ୱତନ୍ତ୍ର ସ୍ଥାନ ଦିଆଯାଇଛି । ସଂଗ୍ରାମ କରି ସ୍ୱାଧୀନତା ହାସଲ କରିବାର ମନ୍ତ୍ର ସେ ଶିଖାଇ ଥିଲେ । ଆଶା ହରାଇଥିବା ବନବାସୀମାନଙ୍କୁ ତାଙ୍କ ଗରିଲା ଯୁଦ୍ଧ ପରିଚାଳନାକୁ ଇଂରେଜମାନେ ମୁକାବିଲା କରିବାକୁ ଅସମର୍ଥ ହେଲେ । ଅସହାୟ ଇଂରେଜମାନେ ତାଙ୍କୁ କଳେ ବଳେ କୌଶଳେ ଧରି ମାରିଦେବା ପାଇଁ ଷଡଯନ୍ତ୍ର ରଚନା କଲେ ଏବଂ ବାରମ୍ବାର ଯୁଦ୍ଧରେ ହାରିବା ପରେ ବନବାସୀଙ୍କ ସମସ୍ତ ଦାବି ପୂରଣ ହେବା ଘୋଷଣା କରି ଶାନ୍ତି ଚୁକ୍ତି ବାହାନାରେ ବିର୍ସାଙ୍କୁ ଡକାଇ ବନ୍ଦୀ କଲେ ଓ ମାରିଦେଲେ । ମାତ୍ର ବିଶ୍ୱାସଘାତକ ଇଂରେଜମାନଙ୍କ ଚକ୍ରାନ୍ତ ବୀର ବିର୍ସା ମୁଣ୍ଡାଙ୍କୁ ସ୍ୱଦେଶ ମୁକ୍ତି ସଂଗ୍ରାମର ଅମର ସହିଦ୍ କରିଦେଲା । ସେ କାଳ କାଳକୁ ବନବାସୀଙ୍କ ଭଗବାନ ହୋଇ ରହିଗଲେ ।

ବନ ପାହାଡ ଘେରା ସୁନ୍ଦରଗଡ ମୁଲକର ଉପାନ୍ତ ଗ୍ରାମ 'ଉଲିହାତୁ'ରେ ୧୮୭୫ ନଭେମ୍ବର ୧୫ ତାରିଖ ଦିନ ଜନ୍ମ ନେଇଥିଲେ ଅମର ସହିଦ୍ ବୀର ବିର୍ସାମୁଣ୍ଡା । ତାଙ୍କ ପିତା ସୁଗନା ମୁଣ୍ଡା ଓ ମାତା କରମୀ ମୁଣ୍ଡା । ପିଲାଟି ଅତ୍ୟନ୍ତ ବୁଦ୍ଧିମାନ ଥିବାରୁ ପିତା ତାଙ୍କୁ ଚାଇଁବସା ମିଶ୍‌ନାରି ସ୍କୁଲରେ ପାଠ ପଢାଇଲେ । ଶୈଶବରୁ ଆରମ୍ଭ ହୋଇଗଲା ଶିଶୁ ବିର୍ସାଙ୍କ ସଂଗ୍ରାମୀ ଜୀବନ । ମୁଣ୍ଡା ପିଲାଙ୍କୁ ଏକାଠି କରି ସେ ଗଢ଼ିଲେ ବାନର ସେନା । ଗାଁକୁ ଗାଁ ବୁଲି ବିଦେଶୀ ଇଂରେଜମାନଙ୍କୁ ଦେଶରୁ ବିଦା କରିବା ମନ୍ତ୍ର ପଢ଼ାଇଲେ । ଇଂରେଜ ସରକାର ଓ ଗ୍ରାମ ଜମିଦାରମାନଙ୍କୁ ଖଜଣା ନଦେବା, ବେଠି ବେଗାରି ନଖଟିବା, ମାଟିରେ ଖଟି ଖଟି ପାଇଥିବା ଉତ୍ପାଦନର ମୂଲ୍ୟ ଭାଗ ରାଜସ୍ୱ ଭାବେ ନଦେବା ଦେଖି ଇଂରେଜମାନେ ବିର୍ସା ଓ ତାଙ୍କ ସହଯୋଗୀଙ୍କୁ ଖୋଜି ବୁଲିଲେ । ମୁଣ୍ଡାମାନଙ୍କ ମୁରବି ନରସିଂହ ମୁଣ୍ଡା, ଗୟା ମୁଣ୍ଡା, ସଗୁନ ମୁଣ୍ଡା, ସୁରେ ମୁଣ୍ଡା, ଢେଙ୍ଗା ମୁଣ୍ଡା ବିର୍ସାଙ୍କୁ ସମର୍ଥନ ଜଣାଇ ଇଂରେଜମାନଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମ ଘୋଷଣା କଲେ । ଚାହୁଁ ଚାହୁଁ ସୁନ୍ଦରଗଡ, ବଣାଇଗଡ, ରାମଗଡ, ଷଢ଼େଇକଳା, ଖରସୁଆଁ, ଚକ୍ରଧରପୁର, ଶାଳବଣୀ, ସରଣ୍ଡା, ରାଞ୍ଚି, ଚାଇଁବସା, ରାମପୁର ଭଳି ବନବାସୀ ଅଞ୍ଚଳକୁ ଏ ସଂଗ୍ରାମ ବ୍ୟାପିଗଲା । ଚାଇଁବସା ଇଂରେଜ ଛାଉଣୀ ଦଖଲ କରି ଇଂରେଜ ଅଧିକାରୀମାନଙ୍କୁ ବନ୍ଦୀ କରି ରଖିଲେ ବିର୍ସାଙ୍କ ଗରିଲା ବାହିନୀ । ରାଞ୍ଚିରେ ଡେରା ପକାଇଥିବା ଇଂରେଜ ସେନାପତି ନିରୁପାୟ ହୋଇ ବନବାସୀଙ୍କ ସମସ୍ତ ଦାବି ମାନିନିଆଗଲା । ଘୋଷଣା କରି ଶାନ୍ତି ପ୍ରସ୍ତାବ ପାଇଁ ବିର୍ସାଙ୍କୁ ଡକାଇ ପଠାଇଲେ । ମାତ୍ର ବିର୍ସା ପହଞ୍ଚିବା କ୍ଷଣି ବିଶ୍ୱାସଘାତକ ଫିରିଙ୍ଗି ବାହିନୀ ତାଙ୍କୁ ବନ୍ଦୀ କରି ନେଲେ । ଏ ଖବର ପାଇ ହଜାର ହଜାର ବନବାସୀ ସମଗ୍ର ରାଞ୍ଚି ସହରକୁ ଘେରିଗଲେ । ଫିରିଙ୍ଗି ସେନାପତି ଭୟଭୀତ ହୋଇ ବିନା ସର୍ତ୍ତରେ ବିର୍ସାଙ୍କୁ ମୁକ୍ତ କରିଦେଲେ । ବନବାସୀ ସର୍ଦ୍ଦାରମାନେ ବୀର ବିର୍ସାଙ୍କୁ ବୀରବାଦ୍ୟ ବଜାଇ ପାଛୋଟି ନେଲେ । ସ୍ୱାଧୀନ ମୁଣ୍ଡା ରାଜ୍ୟ ସ୍ଥାପନ ହେବା ଘୋଷଣା କରି ତାଙ୍କୁ ସ୍ୱାଧୀନ ରାଜ୍ୟର ପରିଚାଳନା ଦାୟିତ୍ୱ ଦେଲେ । ଏହା ଥିଲା ବୀର ବିର୍ସା ମୁଣ୍ଡାଙ୍କୁ ବିଂଶତମ ଜନ୍ମ ଦିବସର ଭେଟି । ଠିକ୍ ସେହିବର୍ଷ ଛୋଟନାଗପୁର ଅଞ୍ଚଳରେ ମରୁଡି ପଡିଥିବାରୁ ମହାମାରୀ

ବ୍ୟାପିଗଲା । ମାତ୍ର ବୀର ବିର୍ସା ପାହାଡର ଝରଣା ପାଣି ବନ୍ଧାଇ ବିଲକୁ ପାଣି ଯୋଗାଇ ପୁନଃ ଫସଲ ଅମଳର ବାଟ ଖୋଲିଦେଲେ । ବନବାସୀଙ୍କୁ ମୃତ୍ୟୁମୁଖରୁ ବଞ୍ଚାଇ ଥିବାରୁ ସମସ୍ତେ ତାଙ୍କୁ ବନବାସୀଙ୍କ ଭଗବାନ ମାନିଲେ । ବିର୍ସାଙ୍କ ଜନାଦୃତ ଇଂରେଜମାନଙ୍କ ପାଇଁ ଭୟର କାରଣ ଥିଲା । ସେମାନେ ଗୁପ୍ତରେ ନାଗପୁର, ଗୋଆଲିୟର ଶିବିରରୁ ଗୋରା ସୈନ୍ୟଙ୍କୁ ଆଣି ବିର୍ସା ରହୁଥିବା ଗ୍ରାମକୁ ମଧ୍ୟରାତ୍ରରେ ଘେରି ୭ ଦିନ ସଂଗ୍ରାମ ପରେ ତାଙ୍କୁ ବନ୍ଦୀ କରିନେଲେ । ଏ ଯୁଦ୍ଧରେ ୪୦୦ ମୁଣ୍ଡା ସଂଗ୍ରାମୀ ସହିଦ୍ ହେଲେ ଓ ୫୭ ଜଣ ଗୋରା ଫୌଜ ମଲେ । ବିର୍ସାଙ୍କୁ ରାଞ୍ଚି ଜେଲରେ ରଖିବା ସହ ତାଙ୍କର ୧୭ ଜଣ ସହଯୋଗୀଙ୍କୁ କଳାପାଣି ପଠାଇ ଦେଲେ । ବନବାସୀମାନେ ପୁନଃ ସଂଗଠିତ ହେବା ସମ୍ବାଦ ପାଇ ୧୯୦୦ ମସିହା ଜୁନ୍ ୯ ତାରିଖ ଦିନ ବୀର ବିର୍ସା ମୁଣ୍ଡାଙ୍କ ଜୀବନର ଅନ୍ତ ଘଟାଇଲେ ବିଶ୍ୱାସଘାତକ ଇଂରେଜମାନେ । ଭାରତ ମୁକ୍ତି ସଂଗ୍ରାମର ଅମର ସହିଦ୍ ବୀର ବିର୍ସା ମୁଣ୍ଡାଙ୍କ କୀର୍ତ୍ତିଗାଥା ମା'ମାନେ ଆଜି ମଧ୍ୟ ଆମ ବନବାସୀ ଅଞ୍ଚଳରେ ପିଲାଙ୍କୁ କହି ଶୁଆଇ ଦେବା ଦେଖାଯାଏ । ଦେଶର ସବୁ ପିଲାଙ୍କ ପାଖରେ ଏ ବୀରତ୍ୱର ଗାଥା ପହଞ୍ଚାଇବା କ'ଣ ଆମର କର୍ତ୍ତବ୍ୟ ନୁହେଁ ?

ପ୍ରକୃତିବନ୍ଧୁ ଭବନ, କାକଟପୁର, ପୁରୀ

# ସାଧବ ପୁଅ

**ଅଧ୍ୟାପିକା ସୌଦାମିନୀ ବେହେରା**

ସାଧବ ପୁଅର ବୋଇତ ବନ୍ଦାଣ
ଓଡିଆର ଇତିହାସ
ଯାଉଥିଲେ ଦିନେ ଦୂର ବିଦେଶକୁ
ଫୁଟାଇ ମୁହଁରେ ହସ
ଜାଭା ସୁମାତ୍ରା ବାଲିଦ୍ୱୀପ ପୁଣି
ସିଂହଳ ଦ୍ୱୀପକୁ ଯାଇ
ବାଣିଜ୍ୟ ବେପାର କରି ଫେରୁଥିଲେ
ହସ ହସ ମନ ନେଇ
ପ୍ରତ୍ନତାତ୍ତ୍ୱିକର ବିବରଣୀ କୁହେ
କଥା ସାଧବ ପୁଅର
ମିଶର ଚୀନ୍ ଆଫ୍ରିକା, ଗ୍ରୀସ୍
ରୋମକୁ ମିଆଁମାର
ବାଙ୍ଗଲାଦେଶକୁ ଆହୁରି କେତେଯେ
ନୂଆ ନୂଆ ଜାଗା ଯାଇ
ବେପାର ବଣିଜ କରୁଥିଲେ ବସି
ଓଡିଶା ରାଇଜ ପାଇଁ

ସ୍ଥଳ ଯାତ୍ରାଠାରୁ ଜଳଯାତ୍ରା ଥିଲା
କେତେ ଯେ କଠିନ କାମ
ସାହସୀ ଓଡିଆ କରୁଥିଲେ ତାହା
ସାଧବ ଯାହାର ନାମ
ସୁମରଣା କରି ମଙ୍ଗଳା ମାଆଙ୍କୁ
ପାଣିରେ ବୋଇତ ନେଇ
ଉତ୍କଳୀୟ ପ୍ରୀତି ରଖି ଚାଲୁଥିଲେ
ସବୁ ଝଡ ଝଞ୍ଜା ସହି
ସେହି ପରଂପରା ଭୁଲିନି ଓଡିଆ
ବୋଇତ ବନ୍ଦାଣ କରେ
ପ୍ରତି ବରଷର କାର୍ତ୍ତିକ ପୂର୍ଣ୍ଣମୀ
ସାଧବର କଥା ଧରେ ।

ଏସ୍.ଏସ୍.ବି.ଡି, ମହିଳା ମହାବିଦ୍ୟାଳୟ
କନ୍ତିଆ, ଜଟଣୀ, ଖୋର୍ଦ୍ଧା



# କାର୍ତ୍ତିକ ବ୍ରତର ମାହାତ୍ମ୍ୟ ଓ ରାସଲୀଳା

ପଣ୍ଡିତ ରାମକୃଷ୍ଣ ମିଶ୍ର

ସମାଜରେ ହିନ୍ଦୁ ବିଧବା ନାରୀମାନଙ୍କ ପାଇଁ କାର୍ତ୍ତିକ ବ୍ରତର ବାଧ୍ୟତା ରହିଛି । ବ୍ରତ ପାଳନର ପ୍ରଥମ ଦିନ ସଂକଳ୍ପ କରାଯାଏ । ଏଥିରେ ବ୍ରତ ପାଳନ ସମୟରେ ପ୍ରତ୍ୟହ ପ୍ରାତଃ ସ୍ନାନ, ଅର୍ଘ୍ୟଦାନ, ଶ୍ରୀନାରାୟଣ ନାମ ଜପ, ଅଷ୍ଟ ଦଶାକ୍ଷର ଗୋପାଳ ମନ୍ତ୍ର ଜପ, ରାଧାଦାମୋଦର ପୂଜା, ଚଉରାମୂଳେ ବା ତୀର୍ଥରେ ଦାମୋଦରାଷ୍ଟକ ପଠନ ଓ ଶ୍ରବଣ, ସନ୍ଧ୍ୟା ସମୟେ ଆକାଶଦୀପ ଦାନ ଓ ନିଶି ଜାଗରଣ ଆଦି ପାଇଁ ସଂକଳ୍ପ କରାଯାଏ ।

କାର୍ତ୍ତିକ ବ୍ରତ ପାଳନର ଦୁଇଟି ଧାରା ରହିଛି । କେତେକ କାର୍ତ୍ତିକ ବ୍ରତୀମାନେ ଆଶ୍ୱିନ ଶୁକ୍ଳ ପକ୍ଷ ଏକାଦଶୀଠାରୁ କାର୍ତ୍ତିକ ରାସ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ଏକମାସ ପାଞ୍ଚଦିନ ଏହି ବ୍ରତ କରିଥାନ୍ତି । ଅନ୍ୟ କେତେକ କାର୍ତ୍ତିକ କୃଷ୍ଣପକ୍ଷ ପ୍ରତିପଦଠାରୁ ରାସ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ଏକ ମାସ ଏହି ବ୍ରତ କରିଥାନ୍ତି । ପୁରାଣ ଅନୁସାରେ ବ୍ରତ ଓ ରାଧାଦାମୋଦର ପୂଜା ଏକମାସ କରିବା ବିଧେୟ । ବିଶେଷତଃ ଗ୍ରାମ ଅଞ୍ଚଳର ବ୍ରତୀମାନେ ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ ବ୍ରତ ପାଳନ କରି କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଏକମାସ ରାଧାଦାମୋଦର ପୂଜା କରିପାରିଥାନ୍ତି । କିନ୍ତୁ କାର୍ତ୍ତିକ କୃଷ୍ଣ ପ୍ରତିପଦଠାରୁ ବ୍ରତ ପାଳନ କରୁଥିବା ବ୍ରତୀମାନଙ୍କର ରାଧାଦାମୋଦର ପୂଜା ସମ୍ପୂର୍ଣ୍ଣ ଏକ ମାସ ହୋଇନଥାଏ । କାରଣ କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ରାସ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ପଞ୍ଚକ ପାଞ୍ଚଦିନ ରାଧାଦାମୋଦର ପୂଜା ଓ ବେଶ ହୋଇନଥାଏ । ଏହି ସମୟରେ ଭକ୍ତଙ୍କ ଦର୍ଶନ ପାଇଁ ମହାପ୍ରଭୁ ତ୍ରିକଚ୍ଛ ପରିଧାନ କରି ରାଧାଦାମୋଦର ବେଶ ହୋଇଥାନ୍ତି । ରାଧା ଦାମୋଦର ବେଶ ଥାଇ ଗୋପାଳବଲ୍ଲଭ ଓ ବାଳଭୋଗ ହୋଇଥାଏ । ପରମ୍ପରା ଅନୁଯାୟୀ ବଡ଼ଛତା ମଠ ରାସର ଅଙ୍ଗ ବାଦ୍ୟ ଓ ପାରମ୍ପରିକ ସଙ୍ଗୀତ ଆୟୋଜନ କରନ୍ତି । ରାଧାକାନ୍ତ ମଠ ରାସର ଅନ୍ୟ ଏକ ଅଙ୍ଗ ସଂକୀର୍ତ୍ତନ ଆୟୋଜନ କରନ୍ତି ।

କାର୍ତ୍ତିକ ଶୁକ୍ଳ ଦେବୋତ୍ଥାପନ ଏକାଦଶୀଠାରୁ ପଞ୍ଚକ ଆରମ୍ଭ ହୋଇଥାଏ । ଏହିଦିନ ମହାପ୍ରଭୁ ଚତୁଃମାସ୍ୟା ଶୟନ ତ୍ୟାଗ କରିଥାନ୍ତି । ଏହାକୁ ଦେବୋତ୍ଥାପନ କୁହାଯାଏ । ଏହି ବର୍ଷ ଭୀଷ୍ମପଞ୍ଚକ ପାଞ୍ଚଦିନ ପଡୁଥିବାରୁ ମହାପ୍ରଭୁଙ୍କର ପାଞ୍ଚୋଟି ଯାକ ବେଶ ଅନୁଷ୍ଠିତ ହେବ । କାର୍ତ୍ତିକ ଶୁକ୍ଳ ଏକାଦଶୀ ବା ଦେବୋତ୍ଥାପନ ଏକାଦଶୀ ତିଥିରେ ମହାପ୍ରଭୁଙ୍କର ଲକ୍ଷ୍ମୀନାରାୟଣ ବେଶ ଅନୁଷ୍ଠିତ ହେବ । ଦ୍ୱାଦଶୀ ତିଥିରେ ବାଙ୍କଚୂଡ଼ା ବେଶ, ତ୍ରୟୋଦଶୀ ତିଥିରେ ତ୍ରିବିକ୍ରମ ବା ଆଡ଼କିଆ ବେଶ, ଚତୁର୍ଦ୍ଦଶୀ ତିଥିରେ ଲକ୍ଷ୍ମୀ ନୃସିଂହ ବେଶ ଓ ରାସ ପୂର୍ଣ୍ଣମୀରେ ରାଜରାଜେଶ୍ୱର ବେଶ ବା ସୁନାବେଶ ଅନୁଷ୍ଠିତ ହେବ । ଶ୍ରୀଭୁଜରେ ସୁବର୍ଣ୍ଣ ନଳିଭୁଜ, ଶ୍ରୀପୟର, ସୁବର୍ଣ୍ଣ କୁଣ୍ଡଳ, କିରୀଟ, ହଳ ଓ ମୂଷଳ, ସ୍ୱର୍ଣ୍ଣଚକ୍ର, ରୌପ୍ୟଶଙ୍ଖ, ତଡ଼ଗୀ, ଚିତା, ଚନ୍ଦ୍ରସୂର୍ଯ୍ୟ ଓ ଓଡ଼ିଆଣୀ ଆଦି ତିନି ଠାକୁରଙ୍କର ଯେଉଁ ଯେଉଁ ପ୍ରକାରେ ଅଳଙ୍କାର ସହ ବାରଲାଗିପାଟ, ଫୁଟା, ପହରଣ ଓ ଶିର କପଡ଼ା ଆଦି ବସ୍ତ୍ରରେ ଓ ପୁଷ୍ପାଳଙ୍କାରରେ ମଣ୍ଡିତ ହୁଅନ୍ତି ।

ମାସାନାଂ କାର୍ତ୍ତିକ ଶ୍ରେଷ୍ଠୋ ଦେବାନାଂ ମଧୁସୂଦନମ୍ ।
ତୀର୍ଥଂ ନାରାୟଣାଖ୍ୟଂ ହି ତ୍ରିତୟଂ ଦୁଲର୍ଭଂ କଲୌ ॥
(ସ୍କନ୍ଦ ପୁରାଣ)

ଏହି ମାସରେ ବିଷ୍ଣୁ ଦାମୋଦର ନାମରେ ରାଧାଙ୍କ ସହ ପୂଜିତ ହୁଅନ୍ତି । କାର୍ତ୍ତିକ ମାହାତ୍ମ୍ୟ ରଚୟିତା ମହାଦେବ ଦାସ ଗ୍ରନ୍ଥ ଆଦ୍ୟରେ ଦାମୋଦରଙ୍କୁ ପ୍ରଣାମ କରି ଗ୍ରନ୍ଥ ଆରମ୍ଭ କରିଛନ୍ତି ।

ନମଇ ପ୍ରଭୁ ଦାମୋଦର । ଯା' ନାମ ଶରଣ ସୋଦର ।
ଅଶେଷ ବ୍ରହ୍ମାଣ୍ଡର ନାଥ । ଯା'ର ଚରିତ ପୁଣ୍ୟ ପଥ ।
(କାର୍ତ୍ତିକ ମାହାତ୍ମ୍ୟ ପୋଥି - ପ୍ରଥମ ଅଧ୍ୟାୟ)

ନମସ୍ତେ ଦେବ ଦାମୋଦର । ଯା' ନାମ ଚରଣ ସୋଦର ।

(କାର୍ତ୍ତିକ ମାହାତ୍ମ୍ୟ ପୁସ୍ତକ - ପ୍ରଥମ ଅଧ୍ୟାୟ)

ଶ୍ରୀମନ୍ଦିର ପତ୍ରିକାରେ ଲେଖକଙ୍କର ପ୍ରକାଶିତ ଲେଖାରେ ଏପରି ପଦ ରହିଛି । କିନ୍ତୁ ପୋଥିରେ ରହିଥିବା ପଦ ବିଶେଷ ଶୁଦ୍ଧ ବୋଲି ମନେହୁଏ । ପୋଥି ଆମର ପୁରାତନ ସଂସ୍କୃତି ଯାହାକି ଗ୍ରହଣୀୟ । ପରେ ପୁସ୍ତକରେ ଅନେକ ଅପଭ୍ରଂଶ ହୋଇଛି ।

କାର୍ତ୍ତିକ ମାସେ କନିଅର । ପୂଜା ନକରି ଗଦାଧର ।।୬୭।।
(କାର୍ତ୍ତିକ ମାହାତ୍ମ୍ୟ ପୋଥି - ତୃତୀୟ ଅଧ୍ୟାୟ)

କାର୍ତ୍ତିକ ମାସରେ କନିଅର ପୁଷ୍ପରେ ବିଷ୍ଣୁଙ୍କୁ ପୂଜା କରିବ ବୋଲି ପୁସ୍ତକରେ ଉଲ୍ଲେଖ ଥିଲେ ମଧ୍ୟ ପୋଥିରେ କନିଅର ପୁଷ୍ପରେ ପୂଜା କରାଯିବ ନାହିଁ ବୋଲି ଉଲ୍ଲେଖ ରହିଛି । କିନ୍ତୁ ପୋଥି ଆମର ପୁରାତନ ସଂସ୍କୃତି ହେତୁ ବିଶେଷ ରୂପେ ଗ୍ରହଣୀୟ ।

ବାର ମାସ ମଧ୍ୟରେ କାର୍ତ୍ତିକ ମାସ ସାର ।
କାର୍ତ୍ତିକ ସ୍ନାନରେ ମିଳେ ବଇକୁଣ୍ଠ ପୁର ।।

କାର୍ତ୍ତିକ ମାହାତ୍ମ୍ୟ ଚତୁର୍ଥ ଅଧ୍ୟାୟରେ ବିଷ୍ଣୁଙ୍କ ପ୍ରତି ବ୍ରହ୍ମାଙ୍କର ଏପରି ଉକ୍ତି ବର୍ଣ୍ଣିତ ହୋଇଛି -

କାର୍ତ୍ତିକ ମାସ ଆଗମନେ । ଜଣାଇ ବିଷ୍ଣୁ ସନ୍ନିଧାନେ ।
ବୋଲନ୍ତି ଏ କାର୍ତ୍ତିକ ମାସ । ତୁମ୍ଭେ କରିବ ଜଳେ ବାସ ।
ଯେବଣ ଜନ ପ୍ରାତଃ କାଳେ । ସ୍ନାନ କରିବ ଯାଇ ଜଳେ ।।
ପାଇବେ ପରମ ମୁକତି । ଏ ଆଜ୍ଞା ଦିଅ ଲକ୍ଷ୍ମୀପତି ।।
(କାର୍ତ୍ତିକ ପୁରାଣ - ୪ର୍ଥ ଅଧ୍ୟାୟ)

ତୁ ଦେବ ଦାମୋଦର ମୂର୍ତ୍ତି । କାର୍ତ୍ତିକ ମାସେ ଜଳେ ସ୍ଥିତି ।।
(କାର୍ତ୍ତିକ ପୁରାଣ - ୪ର୍ଥ ଅଧ୍ୟାୟ)

ବ୍ରହ୍ମାଙ୍କର ପ୍ରାର୍ଥନା ଅନୁସାରେ ଧର୍ମମାସ କାର୍ତ୍ତିକରେ ମହାପ୍ରଭୁ ଜଳରେ ନିବାସ କରୁଥିବାରୁ ଭକ୍ତମାନେ ପ୍ରାତଃ କାଳରେ ଶ୍ରୀକ୍ଷେତ୍ର ପଞ୍ଚତୀର୍ଥ ଜଳରେ ସ୍ନାନ କରନ୍ତି ।

ଦ୍ୱାପର ଯୁଗରେ ବ୍ୟାସଦେବ ସମସ୍ତ ବେଦ ଶାସ୍ତ୍ରାଦି ଓ ଅଷ୍ଟାଦଶ ପୁରାଣ ରଚନା କଲା ପରେ ମଧ୍ୟ ତାଙ୍କ ମନ ଅଶାନ୍ତ ରହିଲା । ସେ ମହର୍ଷି ନାରଦଙ୍କ ପରାମର୍ଶରେ ସେହି ଯୁଗର ଶ୍ରୀକୃଷ୍ଣ ରୂପୀ ନାରାୟଣଙ୍କ ଅବତାରର ପ୍ରେମଲୀଳା ବିଷୟରେ ଶ୍ରୀମଦ୍ ଭାଗବତ ରଚନା କଲେ ।

ଭାଗବତରେ ଶ୍ରୀକୃଷ୍ଣଙ୍କର ପ୍ରେମଲୀଳାର ନିଦର୍ଶନ ରୂପେ ଗୋଟିଏ ଗୁପ୍ତ ରାମଲୀଳା ସହିତ ଆଉ ତିନିଗୋଟି ରାସଲୀଳା ଅନୁଷ୍ଠିତ ହୁଏ । ଶ୍ରାବଣ ମାସ ଶୁକ୍ଳ ଦଶମୀ ତିଥିରୁ ଗହ୍ମା ପୂର୍ଣ୍ଣମୀ ପର୍ଯ୍ୟନ୍ତ ପ୍ରାବୃଟ ବା ବର୍ଷାକାଳୀନ ରାସ । କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ପଞ୍ଚକରେ ଶରତ ରାସ ଓ ଫାଲଗୁନ ଶୁକ୍ଳ ଦଶମୀ ତିଥିରୁ ଦୋଳ ପୂର୍ଣ୍ଣମୀ ପର୍ଯ୍ୟନ୍ତ ବସନ୍ତ ରାସ ଅନୁଷ୍ଠିତ ହୋଇଥାଏ । ବୈଶାଖ ଶୁକ୍ଳ ଅକ୍ଷୟ ତୃତୀୟା ତିଥିରେ ଗ୍ରୀଷ୍ମ ରାସ ଚନ୍ଦନ ଯାତ୍ରା ଅନୁଷ୍ଠିତ ହୁଏ । ଶ୍ରୀଗୁଣ୍ଡିଚା ରଥଯାତ୍ରାରେ ମହାପ୍ରଭୁ ନୀଳାଚଳରୁ ଯାତ୍ରାକରି ଶ୍ରୀଗୁଣ୍ଡିଚା ମନ୍ଦିର ଗୁପ୍ତ ବୃନ୍ଦାବନରେ ମହାରାସ ବେଦୀରେ ଗୁପ୍ତ ପ୍ରାବୃଟ (ବର୍ଷାକାଳୀନ) ରାସ ଚରନା କରି ପୁନଃ ବାହୁଡ଼ା ବିଜେ ପରେ ଐଶ୍ୱର୍ଯ୍ୟପୀଠ ନୀଳାଚଳରେ ମୁକ୍ତିମଣ୍ଡପଠାରେ ସୁସଜ୍ଜିତ ଝୁଲଣ ମଣ୍ଡପରେ ପ୍ରକାଶ୍ୟ ପ୍ରାବୃଟ ରାସ କରନ୍ତି । ଝୁଲଣ ପର୍ବ ରାସଲୀଳାର ଏକ ଅଂଶ ।

ଦ୍ୱାପର ଯୁଗରେ ମାତା ଯଶୋଦା ଶ୍ରୀକୃଷ୍ଣଙ୍କ ନିଦ୍ରା ନଭାଙ୍ଗିବା ପାଇଁ ତାଙ୍କୁ ଝୁଲାଇ ଦେଇ ଘରକାମ କରୁଥିଲେ । ମହାପ୍ରଭୁ ଶ୍ରୀଜଗନ୍ନାଥ ଆଷାଢ ଶୁକ୍ଳ ଏକାଦଶୀ (ଶୟନ ଏକାଦଶୀ)ଠାରୁ ନିଦ୍ରା ଯାଇଥାନ୍ତି । ଦୀର୍ଘ ଏକମାସ ପରେ ତାଙ୍କ ନିଦ୍ରା ନଭାଙ୍ଗିବା ପାଇଁ ସେହି ପୂର୍ବ ରୀତିରେ ଭକ୍ତମାନେ ମହାପ୍ରଭୁଙ୍କୁ ରାଧାକୃଷ୍ଣ ରୂପରେ ଝୁଲାଇଥାନ୍ତି ।

ପ୍ରାବୃଟ ଓ ବସନ୍ତ ରାସରେ ଦୋଳିକ୍ରୀଡ଼ା ଓ ଶରତ ରାସରେ ନୃତ୍ୟ ଗୀତର ପ୍ରାଧାନ୍ୟ ରହିଛି । କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ଓ ତ୍ରୟୋଦଶୀ ଦୁଇଦିନ ମହାପ୍ରଭୁଙ୍କର ଶରତ ରାସ ନୀତି ଅନୁଷ୍ଠିତ ହୁଏ । ଶ୍ରୀମଦନମୋହନ ଆଜ୍ଞାମାଳ ପାଇ ରାସନୀତି ନିମନ୍ତେ ଜଗମୋହନରେ ଥିବା ଖଟ ଉପରେ ବିଜେ ହୁଅନ୍ତି । ସେଠାରେ ଭୋଗ ଓ ବନ୍ଦାପନା ନୀତି ପରେ ଦକ୍ଷିଣ ଘରକୁ ବାହୁଡ଼ନ୍ତି । ଲୀଳାମୟ ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କ ଦିବ୍ୟ ରାସଲୀଳା ମାଧୁର୍ଯ୍ୟମୟ । ଶ୍ରୀକୃଷ୍ଣ ଓ ଗୋପାଙ୍ଗନାଙ୍କର

ରାସଲୀଳା ତତ୍ ଓ ତ୍ୱମ୍‌ର ମିଳନ କାମକ୍ରୀଡ଼ା ବ୍ରହ୍ମ ଓ ଜୀବର ସଂଯୋଗ ।

ଭାଗବତର ଦଶମ ସ୍କନ୍ଧ (ଗୋପଲୀଳା) ତ୍ରିଂଶ ଅଧ୍ୟାୟଠାରୁ ଚତୁଃତ୍ରିଂଶ ଅଧ୍ୟାୟ ପର୍ଯ୍ୟନ୍ତ ରାସଲୀଳାର ବର୍ଣ୍ଣନା କରାଯାଇଛି । ଏହା ପାଞ୍ଚ ଅଧ୍ୟାୟ ହୋଇଥିବାରୁ ରାସ ପଞ୍ଚାଧ୍ୟାୟ ନାମରେ ନାମିତ ହୋଇଅଛି । ବେଣୁ ସ୍ୱନରେ ଗୋପୀମାନଙ୍କ ଶରୀରରେ ରତିଶାସ୍ତ୍ର ଅନୁସାରେ ବେପଥୁ ବା କମ୍ପନ ଜାତ ହୋଇଅଛି ।

କର ଚରଣ ନ ଚଳଇ । ମଦନେ କମ୍ପୁଅଛି ଦେହୀ ।
ନାଦେ ମୋହିଲେ ବନମାଳୀ । ଷୋଳସହସ୍ର ଗୋପବାଳୀ ।
(ଭାଗବତ ଗୋପଲୀଳା – ତ୍ରିଂଶ ଅଧ୍ୟାୟ)

ଏହା ଅପ୍ରାକୃତ ପ୍ରେମଲୀଳାର ନିଦର୍ଶନ । କବି ଅଭିମନ୍ୟୁ ସାମନ୍ତସିଂହାର ତାଙ୍କ ବିଦଗ୍ଧ ଚିନ୍ତାମଣି କାବ୍ୟରେ ପ୍ରଥମ ଛାନ୍ଦ ମଙ୍ଗଳାଚରଣରେ ଏହି ଅପ୍ରାକୃତ ପ୍ରେମଲୀଳାର ଅବତାରଣ କରିଛନ୍ତି ।

ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧାହରି ।
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ହେ ।
ଆଦି ଅନାଦି – କାରଣ ନିର୍ଗୁଣ ସଗୁଣ
ଆତ୍ମାରାମ ସନାତନ ବ୍ରହ୍ମ ନିରୂପଣ ହେ ।

ଭଗବାନ ଶ୍ରୀକୃଷ୍ଣ ଯମୁନା କୂଳରେ ବୃନ୍ଦାବନର ଲତାକୁଞ୍ଜରେ ତିନୋଟି ରାସ ରଚନା କରିଥିଲେ । ପ୍ରାବୃଟ ବା ବର୍ଷାକାଳୀନ ରାସ, ଶରତ ରାସ ଓ ଋତୁରାଜ ବସନ୍ତରେ ଦୋଳାରୋହଣ କ୍ରୀଡ଼ା ଏବଂ କଦମ୍ବ ମୂଳରେ ଗୋପୀମାନଙ୍କ ସହ ପରିବେଷ୍ଟିତ ହୋଇ ରଙ୍ଗ ଅବିରରେ କ୍ରୀଡ଼ା । ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରାବୃଟ ରାସରେ ଝୁଲଣ, କାର୍ତ୍ତିକ ମାସରେ ରାଧାଦାମୋଦର ରାସୋତ୍ସବ, ପ୍ରାବୃଟ ଓ ବସନ୍ତ ରାସରେ ଦୋଳନ ଓ ଶରତ ରାସରେ ନୃତ୍ୟ, ଗୀତ, ସଂକୀର୍ତ୍ତନ ଓ ବେଶର ବୈଶିଷ୍ଟ୍ୟ ରହିଛି ।

କେଶବଂ ମାର୍ଗଶିର୍ଷେ ତୁ ପୌଷେ ନାରାୟଣଂ ବିଦୁଃ ।
ମାଧବଂ ମାଘମାସେ ତୁ ଗୋବିନ୍ଦମଥ ଫାଲ୍‌ଗୁନେ ।
ଚୈତ୍ରେ ବିଷ୍ଣୁଂ ତଥା ଦଦ୍ୟାତ୍ ବୈଶାଖେ ମଧୁସୂଦନମ୍ ।
ତ୍ରିବିକ୍ରମଂ ତଥା ଜ୍ୟେଷ୍ଠେ ଆଷାଢେ ବାମନଂ ବିଦୁଃ ।
ଶ୍ରାବଣେ ଶ୍ରୀଧରଂ ବିଦ୍ଧି ହୃଷୀକେଶଂ ତୁ ଭାଦ୍ରବେ ।
ଆଶ୍ୱିନେ ପଦ୍ମନାଭଂ ଚ ଊର୍ଜେ ଦାମୋଦରଂ ବିଦୁଃ ।
(ପଦ୍ମପୁରାଣ)

ବିଷ୍ଣୋର୍ଦ୍ୱାଦଶ ନାମାନି ଯଃ ପଠେତ୍ ପ୍ରୟତଃ ଶୁଚିଃ ।
ସର୍ବପାପ ବିନିର୍ମୁକ୍ତୋ ବିଷ୍ଣୁଲୋକଂ ସ ଗଚ୍ଛତି ॥

ଓଡ଼ିଆ ପଞ୍ଜିକା ଅନୁସାରେ ମହାବିଷୁବ ସଂକ୍ରାନ୍ତି ବୈଶାଖ ମାସରୁ ନୂତନ ବର୍ଷର ଆରମ୍ଭ ହୋଇଥାଏ । ତେଣୁ ବୈଶାଖ ମାସରୁ ଆରମ୍ଭ କରି ମାସ କ୍ରମରେ କାର୍ତ୍ତିକ ହେଉଛି ସପ୍ତମ ମାସ । ଏହି ମାସର ଆରାଧ୍ୟ ଦେବ 'ଦାମୋଦର' । ବାର ମାସର ଅଧିପତି ବିଷ୍ଣୁ ବାରଟି ସ୍ୱତନ୍ତ୍ର ନାମରେ ନାମିତ । ବୈଶାଖରେ ମଧୁସୂଦନ, ଜ୍ୟେଷ୍ଠରେ ତ୍ରିବିକ୍ରମ, ଆଷାଢ଼ରେ ବାମନ, ଶ୍ରାବଣରେ ଶ୍ରୀଧର, ଭାଦ୍ରବରେ ହୃଷୀକେଶ, ଆଶ୍ୱିନରେ ପଦ୍ମନାଭ, କାର୍ତ୍ତିକରେ ଦାମୋଦର, ମାର୍ଗଶିରରେ କେଶବ, ପୌଷରେ ନାରାୟଣ, ମାଘରେ ମାଧବ, ଫାଲ୍‌ଗୁନରେ ଗୋବିନ୍ଦ ଓ ଚୈତ୍ରରେ ବିଷ୍ଣୁ ନାମରେ ଶାସ୍ତ୍ରରେ ସେ ନାମିତ ହୋଇଛନ୍ତି ।

**ଗୋପୀଙ୍କ ପୂର୍ବ ଜନ୍ମ ବୃତ୍ତାନ୍ତ**

ଏହା ତ୍ରେତାଯୁଗର ରାମାୟଣର କଥାବସ୍ତୁ ଉପରେ ଆଧାରିତ । ଶ୍ରୀରାମଚନ୍ଦ୍ର ଦଣ୍ଡକାରଣ୍ୟରେ ଭ୍ରମଣ କରୁଥିବା ସମୟରେ ଋଷିମାନେ କୋଟି–କନ୍ଦର୍ପ–ସମିଶ୍ରିତ ଲାବଣ୍ୟ ମୂର୍ତ୍ତି ଦେଖି ବିଚାରିଲେ ଯେବେ ବିଧାତା ଆମ୍ଭଙ୍କୁ ନାରୀ କରିଥାନ୍ତେ ଓ ଏ ପୁରୁଷ ଆମ୍ଭର ସ୍ୱାମୀ ହୋଇଥାନ୍ତେ, ତେବେ ବ୍ରହ୍ମପଦବୀର ଆବଶ୍ୟକ ନାହିଁ । ଏପରି ଭାବନାରେ ତାଙ୍କର ଶରୀର ପୁଲକିତ ହୋଇ ସାତ୍ତ୍ୱିକ ବିକାରମାନ ଓ କମ୍ପନ ଜାତ ହେବାରୁ ଅଚେଷ୍ଟା ଭାବରେ ବୃକ୍ଷକୁ ଆଉଜିଲେ ।

ବିଧାତା ଆମ୍ଭଙ୍କୁ କରନ୍ତା ନାରୀ ।
ବର ହୁଅନ୍ତେ ଏ କୋଦଣ୍ଡଧାରୀ ।
ବ୍ରହ୍ମପଦବୀ ଫଳ ହେବ କିସ ।
ବହିବା କି କରି କାମିନୀ ବେଶ ।
ବିଚାରୁ, ପୁଲକିତ ଶରୀରେ ।
ବେପଥୁ ଜନ୍ମି ଆଉଜି ବୃକ୍ଷରେ ।
(ବୈଦେହୀଶ ବିଳାସ – ଏକବିଂଶ ଛାନ୍ଦ)

ଋଷିମାନଙ୍କ ମନରେ କାମ ବିକାର ଜାତ ହେବାରୁ ସେମାନେ ତଦ୍‌ଜନିତ ଚିତ୍ତବିଭ୍ରମବଶତଃ ସଖାମାନଙ୍କୁ ସଖୀ ବୋଲି ସମ୍ବୋଧନ କଲେ । ହସ୍ତରେ ଧରିଥିବା ଲାଉତୁମ୍ବୀକୁ ବକ୍ଷରେ ରଖି ତାହାକୁ ନିଜର ସ୍ତନ ବୋଲି ବିଚାରି ଆନନ୍ଦିତ ହେଲେ । ମସ୍ତକରେ ଲମ୍ବିଥିବା ଜଟାକୁ ବେଣୀ ବୋଲି ବିଚାରି ତହିଁରେ ନାନା ପ୍ରକାର ପୁଷ୍ପ ମଣ୍ଡନ କଲେ ।

ବିଭ୍ରମ ଉପୁଜିଗଲା ମାନସ ।
ବୋଇଲେ ସଖାଙ୍କୁ ସଖୀ ଗୋ ଆସ ।
ବହିବା ତୁମ୍ବୀକି ଉରରେ ରଖି ।
ବକ୍ଷୋରୁହ ହେଲା ଭାବରେ ସୁଖୀ ।
ବେଣୀ ଏ, ଭାବି ଜଟା ଲମ୍ବାଇ ।
ବିବିଧ କୁସୁମ ମଣ୍ଡିଲେ ନେଇ ।
(ବୈଦେହୀଶ ବିଳାସ – ଏକବିଂଶ ଛାନ୍ଦ)

ସେମାନଙ୍କର ଏପରି ବିରହଚେଷ୍ଟା ଓ ରାମଚନ୍ଦ୍ରଙ୍କୁ କଣେଇ ଚାହିଁବା ଦେଖି ରାମଚନ୍ଦ୍ର ତାଙ୍କୁ ଈପ୍‌ସିତ ବର ପ୍ରଦାନ କଲେ ।

ବଲ୍ଲବୀ ତୁମ୍ଭେ ହୋଇବ ଦ୍ୱାପରେ ।
ବ୍ରଜେ ରହିବୁ ଆମ୍ଭେ କଂସଡ଼ରେ ।
ବୃନ୍ଦାବନରେ ହେବ ରାସ–କେଳି ।
ବଲ୍ଲଭୀ ଏକା ଏ ଦେହେ, ମୈଥିଳୀ ।
(ବୈଦେହୀଶ ବିଳାସ – ଏକବିଂଶ ଛାନ୍ଦ)

ରାମଚନ୍ଦ୍ର କହିଲେ, ତୁମ୍ଭେମାନେ ଦ୍ୱାପର ଯୁଗରେ ଗୋପାଳୁଣୀ ସ୍ୱରୂପ ଗୋପପୁରରେ ଜାତ ହେବ । ଆମ୍ଭେ କୃଷ୍ଣାବତାର ହୋଇ କଂସ ଭୟରେ ବ୍ରଜପୁରରେ ବାସ କରିବୁ । ବୃନ୍ଦାବନରେ ତୁମ୍ଭର ଆମ୍ଭର ରାସକ୍ରୀଡ଼ା ହେବ । ଏ ଅବତାରରେ ଆମ୍ଭର ଏକପତ୍ନୀ ବ୍ରତ ରହିଛି । କୃଷ୍ଣାବତାରରେ ଆମ୍ଭେ ଗୋପୀନାଥ ନାମ ଧାରଣ କରି ତୁମ୍ଭ ସହ ରାସକ୍ରୀଡ଼ା କରିବୁ ।

ଦଶମ ସ୍କନ୍ଧ ଗୋପଲୀଳାରେ ରାଜା ପରୀକ୍ଷିତ ଶୁକ ମୁନିଙ୍କଠାରୁ ରାସଲୀଳା ବିଷୟ ଶ୍ରବଣ କରି ଶ୍ରୀକୃଷ୍ଣଙ୍କର ଏଭଳି ଅନୀତି କାର୍ଯ୍ୟ ଜାଣି ଅତ୍ୟନ୍ତ ବିସ୍ମିତ ହୋଇ ମୁନିଙ୍କୁ ପଚାରିଲେ–

ଧର୍ମ ପାଳନ ନରହରି ।
ସେ କିମ୍ପା ଅଧର୍ମ ଆଚରି ।
ଜଗତ ଜନ ଗୁରୁ ପିତା ।
ନୀତି ଅନୀତି ଅଧିଷ୍ଠାତା ।
ଯା' ନାମ ମୁକତ ପସରା ।
ସେ କିମ୍ପା କଲେ ପରଦାରା ।
ମହାନିଶାରେ ଜଳେ ପଶି ।
କ୍ରୀଡ଼ା କଲେକ ବ୍ରହ୍ମରାଶି ।
ବେଦ ବିରୋଧୀ କର୍ମ କରି ।
ନିଷେଧବନ୍ଧ ପରିହରି ।
(ଚତୁଃତ୍ରିଂଶ ଅଧ୍ୟାୟ)

ଏହି ପ୍ରଶ୍ନରେ ଶୁକମୁନିଙ୍କ ଉକ୍ତି ବ୍ରହ୍ମଜ୍ଞାନ ଭଳି ।

ଏହାଙ୍କ କର୍ମ ବିପରୀତ । ଯେଣୁ ଏ ତେଜେ ବଳବନ୍ତ ।
ତେଣୁଟି ଦୋଷଗୁଣ ନାହିଁ । ଅଗ୍ନି ଯେସନେ ସର୍ବ ଦହି ।
ସତ୍ୟ ପୁରୁଷ ଆତ୍ମାରତ । ଆବୋରି ଅଛଇ ଜଗତ ।
ତୁ ଅବା ବେଦ କର୍ମ କହୁ । ବେଦପାଦରୁ ଜନ୍ମ ଯେହୁ ।
(ଚତୁଃତ୍ରିଂଶ ଅଧ୍ୟାୟ)

ଶ୍ରୀଶ୍ରୀ ଜଗନ୍ନାଥାଷ୍ଟକମ୍‌ରେ ପ୍ରେମଲୀଳାର ଯଥାକ୍ରମେ (୧) ଓ (୬)ର ପଦମାନ ଯଥା –'ମୁଦାଭୀରୀ ନାରୀ ବଦନ କମଳ। ସ୍ୱାଦମଧୁପଃ' ଓ 'ରସାନନ୍ଦୋ ରାଧା ସରସବପୁରାଲିଙ୍ଗନସୁଖୋ' ଅପ୍ରାକୃତ ପ୍ରେମର ନିଦର୍ଶନ ।

ପଞ୍ଚକ ଛଅଦିନ ପଡ଼ିଲେ ମଳ ତିଥିରେ ନାଗାର୍ଜୁନ ବେଶ ହୋଇଥାନ୍ତି। ୧୯୬୬, ୧୯୬୭, ୧୯୬୮, ୧୯୯୩ ଓ ୧୯୯୪ ମସିହାରେ ଏହି ବେଶ ଅନୁଷ୍ଠିତ ହୋଇଥିଲା। ସେ ସମୟରୁ ଏବେ ଯାଏଁ ନାଗାର୍ଜୁନ ବେଶ ଆଉ ହୋଇନାହିଁ।

ଏ.ଏଲ୍– ୫୩, ବୀର ସୁରେନ୍ଦ୍ରସାଏ ନଗର
ଭୁବନେଶ୍ୱର



# ‘କୋଣାର୍କେ’ କାବ୍ୟରେ ନୀଳକଣ୍ଠଙ୍କ ଜାତୀୟତାବୋଧ ଓ ସ୍ୱଦେଶପ୍ରୀତି

ସୁଚିତ୍ରା ବେହେରା

ସତ୍ୟବାଦୀ ସାହିତ୍ୟ ସାଧକମାନଙ୍କ ମଧ୍ୟରେ କ୍ରିୟାଶୀଳ ଜାତୀୟବାଦୀ କବି ଭାବରେ ପଣ୍ଡିତ ନୀଳକଣ୍ଠ ଦାସ ଏକ ଅନନ୍ୟ ପ୍ରତିଭା । ତାଙ୍କର ସାହିତ୍ୟ ସାଧନା ସୁପରିବ୍ୟାପ୍ତ, ସୁସମୃଦ୍ଧ ଓ ସ୍ୱଜାତି ମମତ୍ୱବୋଧରେ ପୁଷ୍କଳ । ୧୮୮୪ ମସିହା ଅଗଷ୍ଟ ୫ ତାରିଖରେ ପୁରୀ ଜିଲ୍ଲାର ଶ୍ରୀରାମଚନ୍ଦ୍ରପୁରଠାରେ ପଣ୍ଡିତ ନୀଳକଣ୍ଠ ଜନ୍ମଗ୍ରହଣ କରିଥିଲେ । ଉତ୍କଳମଣି ଗୋପବନ୍ଧୁଙ୍କର ପ୍ରେରଣା ଓ ଆଦର୍ଶରେ ସେ ଉତ୍ସାହିତ ହୋଇଥିଲେ । ଅସହଯୋଗ ଆନ୍ଦୋଳନର ସେ ଥିଲେ ଅନ୍ୟତମ ମାନ୍ତ୍ରିକ । ଓଡ଼ିଶାର ତତ୍କାଳୀନ ସାହିତ୍ୟିକ ଓ ରାଜନୈତିକ ପରିବେଶକୁ ଜାତୀୟଭାବାପନ୍ନ କରିବାର ଲକ୍ଷ୍ୟ ନେଇ ନୀଳକଣ୍ଠ ରଚନା କରିଛନ୍ତି ଅନେକ କାବ୍ୟକବିତା । ଜାତୀୟତାବାଦ କେବଳ ଆବେଗ ନୁହେଁ, ଏକ ଇଚ୍ଛାକୃତ ସୃଷ୍ଟି । ଏହା ତାଙ୍କର ଆତ୍ମବିଶ୍ୱାସଭିତ୍ତିକ । ସ୍ୱଦେଶପ୍ରୀତି ଓ ଜାତିପ୍ରୀତିର ସ୍ୱର ଓ ସ୍ୱାକ୍ଷର ଦ୍ୱିବିଧ ଭାବଧାରାରେ ସମୃଦ୍ଧ । ତାଙ୍କର ‘କୋଣାର୍କେ’ (୧୯୧୯) କାବ୍ୟ ଦୁଇଟି ପର୍ଯ୍ୟାୟଭୁକ୍ତ । ପ୍ରଥମ ପର୍ଯ୍ୟାୟରେ ‘ରାମଚଣ୍ଡୀରେ ରାତି ଓ ସକାଳ’ ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ‘ମାୟାଦେବୀ’ କବିତା ସନ୍ନିବେଶିତ ।

‘ରାମଚଣ୍ଡୀରେ ରାତି ଓ ସକାଳ’ ଜାତୀୟତାଭାବ ସୃଷ୍ଟି ଦିଗରୁ ବେଶ୍ ସଫଳ ଓ ସାର୍ଥକ । ‘କୋଣାର୍କେ’ ହେଉଛି ଐତିହ୍ୟପ୍ରବଣ ଜାତିର ମହିମାମୟ କୀର୍ତ୍ତି, ଯାହାର ନିଃଶେଷିତ ଅବଶେଷ ହିଁ ଜାତି ଅନ୍ତରକୁ କାରୁଣ୍ୟର ତୀବ୍ର ଆବେଗରେ ଗଭୀରଭାବେ ସ୍ପର୍ଶ କରିଥାଏ । ଜାତିପ୍ରୀତିର ଏକ ଅଫୁରନ୍ତ ଆବେଗରେ କବି ଅତୀତର ସମୃଦ୍ଧମୟ ଗୌରବର ଅକ୍ଳାନ୍ତ ପ୍ରକ୍ଷାପନ କରିଛନ୍ତି । ତାଙ୍କର ସ୍ୱପ୍ନପ୍ରବଣ ମାନସିକତାରେ ଜାତିର ସମୃଦ୍ଧମୟ ଐକ୍ୟ, ଶିଳ୍ପ, ବାଣିଜ୍ୟ, ଧର୍ମ ଓ ବୀରତ୍ୱ ଛାତ୍ରଙ୍କ ସମକ୍ଷରେ ବର୍ଣ୍ଣିତ । ସେ ଭାସିଯାଇଛନ୍ତି ବିଭିନ୍ନ ଦ୍ୱୀପକୁ ପୂର୍ବକାଳୀନ ଯୁଗପୁରୁଷମାନଙ୍କ ସାନ୍ନିଧ ଲାଭ ପାଇଁ । ତାଙ୍କ ବର୍ଣ୍ଣନାରେ –

‘କାହିଁ ଜାଭା କାହିଁ ବୋର୍ଣ୍ଣିଓ
କାହିଁ ମସଲା ଦ୍ୱୀପେ
ଯିବ ଭାସି ସୁଖ ସ୍ୱପନେ
ମଣିବ ହେ ସମୀପେ ।’

ଜାତୀୟତାବାଦୀ ନୀଳକଣ୍ଠ ଓଡ଼ିଆ ପ୍ରାଣରେ ଜାତିପ୍ରେମର ଭାବ ସୃଷ୍ଟି ପାଇଁ ଅତୀତ ପ୍ରତି ଅନ୍ତରଙ୍ଗ ଦୃଷ୍ଟିପାତ କରିଛନ୍ତି । ଦଣ୍ଡୀମହାଦେବୀଙ୍କର ଶାସନ, ଓଡ଼ିଶାରେ କେଶରୀବଂଶଙ୍କ ରାଜତ୍ୱ ଓ କୀର୍ତ୍ତି, ଅଞ୍ଜନା ଦେବୀଙ୍କ ପୁରୀ ମନ୍ଦିର ନିର୍ମାଣ ଆଦିକୁ ‘କୋଣାର୍କେ’ କାବ୍ୟରେ ରୂପ ଦେଇ ଆପଣାର ଜାତିପ୍ରୀତିର ନିଦର୍ଶନ ଦେଇଛନ୍ତି । ପୁନଶ୍ଚ ପରାଧୀନ ଉତ୍କଳୀୟଙ୍କ ପ୍ରାଣରେ ଜାତିପ୍ରୀତିର ନବଉନ୍ମାଦନ ସୃଷ୍ଟି କରିବା ପାଇଁ କବି ପଞ୍ଚଦଶ ଶତାବ୍ଦୀର ଗଜପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ଓ ଜଗନ୍ନାଥଙ୍କର ସାହାଯ୍ୟ ଆଦି ଘଟଣାକୁ କାବ୍ୟରେ ରୂପ ଦେଇଛନ୍ତି । ଉତ୍କଳୀୟମାନଙ୍କର ସୁପ୍ତ ଜାତୀୟ ଚେତନାକୁ ଜାଗ୍ରତ କରିବା ପାଇଁ ଇତିହାସକୁ ପ୍ରମୁଖ ମାଧ୍ୟମ କରିଛନ୍ତି । ତେଣୁ ଅତୀତ ପ୍ରୀତି ପ୍ରବଣ କବି ମାନସ ଏକ ଜାତୀୟଭାବ ସମୃଦ୍ଧରେ ନିର୍ବନ୍ଧ ହୋଇ ରାମଚଣ୍ଡୀକୁ ପ୍ରଶ୍ନ କରିଛନ୍ତି–

'କହ ହେ ରାମଚଣ୍ଡୀ କହ ଗୋ
ସାକ୍ଷୀ ଏକା ତ ତୁହି
କେମନ୍ତ ଏ ଭୂମି ଆସିଛି
କାଳ ତରଙ୍ଗେ ବହି' ।

କବିଙ୍କର ଜାତୀୟତାଭାବ ସ୍ୱଦେଶପ୍ରୀତି ନାମରେ ଅତ୍ୟନ୍ତ ଉଗ୍ର ହୋଇପଡ଼ିଛି । ଉତ୍କଳର ଐତିହ୍ୟକୁ ଗୌରାବନ୍ୱିତ କରିଛି । କବି ହୃଦୟର ଜାତିପ୍ରୀତିର ମନ୍ମୟ ଆଲେଖ୍ୟ ନେଇ ସମୀରକୁ ଓଡ଼ିଆ ବୋଇତ ଖବର ଜିଜ୍ଞାସା, ଐତିହାସିକ କାହାଣୀ ବିଭବରେ ରାମଚଣ୍ଡୀଙ୍କର ସ୍ଥାନାନ୍ତର, ଯଯାତିକେଶରୀଙ୍କର ଯାଜପୁରରେ ଯଜ୍ଞ, ଉତ୍କଳ କୃଷକର କୃଷି ଚିତ୍ର, ଉତ୍କଳ ବୀର ରମଣୀର ବୀରତ୍ୱ ବ୍ୟଞ୍ଜନ ଆତ୍ମ ଅଭିବ୍ୟକ୍ତି, ଯାହାକି ଉତ୍କଳ ଜାତିପ୍ରୀତିର ପରିଚାୟକ ।

ଜାତିପ୍ରୀତିରେ ଉଦ୍‌ବୁଦ୍ଧ କବି ଘନ ଅନ୍ଧାର ରଜନୀରେ ସୃଷ୍ଟି ହୋଇଥିବା ପ୍ରବଳ ବତାସୀକୁ ପ୍ରଶ୍ନ ଆଳରେ ପ୍ରାଚୀନ ଉତ୍କଳର କୀର୍ତ୍ତି କାହାଣୀକୁ ସୂଚେଇ ଦେଇଛନ୍ତି । ଉତ୍କଳ ବୀରର ଯଶରାଶି ତାଙ୍କ ବର୍ଣ୍ଣନାରେ ଉଜ୍ଜୀବିତ ହୋଇଛି । ଉତ୍କଳୀୟ ସଂସ୍କୃତିର ପୁଷ୍କଳ ପ୍ରତିଫଳନରେ ସମୃଦ୍ଧ କୋଣାର୍କର ଚାରୁଚିତ୍ରାବଳୀକୁ ଚିତ୍ରଣ କରି ଜାତିପ୍ରୀତିର ଅଖଣ୍ଡ ମମତା ପ୍ରକାଶ କଲାବେଳେ ଗୁରୁଶିଷ୍ୟ ପରମ୍ପରା, ନୃତ୍ୟ, ସଙ୍ଗୀତ ଆଦି ବର୍ଣ୍ଣନା କରିଛନ୍ତି । ଉତ୍କଳ ଜନଜୀବନରେ ନିୟନ୍ତ୍ରଣ ଓ ପୁରାଣ ପରମ୍ପରାର ପ୍ରତିଫଳନ ଭିତରେ କବି ପ୍ରାଣର ଜାତିପ୍ରୀତି ସମୃଦ୍ଧ ।

ନୀଳକଣ୍ଠ ଥିଲେ ଜଣେ ସ୍ୱାଭିମାନୀ ପୁରୁଷ । ତାଙ୍କର ସାଧନାର ସ୍ୱରୂପ ଥିଲା ନିଜସ୍ୱ । କିନ୍ତୁ ଉତ୍କଳ ପ୍ରାଣତା ଥିଲା ତାଙ୍କର ଅନ୍ତିମ ଜାଗ୍ରତ । ଏହାର ସତ୍ୟତା ବହନ କରେ ତାଙ୍କର ବ୍ୟକ୍ତିଗତ ଜୀବନରେ ସଂଘଟିତ ରାଜନୈତିକ ଘଟଣାବଳୀ, ସାଙ୍ଗଠନିକ ଦକ୍ଷତା ଓ ସାହିତ୍ୟ ସାଧନାରେ ଇତିହାସରୁ ଉଦଙ୍କିତ ଏକ ଗଭୀର ଜାତିପ୍ରୀତିର ବାସ୍ନା । କୋଣାର୍କ ଓଡ଼ିଆ ଜାତିର ପରମ ଗୌରବର ସମ୍ପଦ । ଅତୀତ ଗୌରବର ସାକ୍ଷୀ ହେଉଛି କୋଣାର୍କ ମନ୍ଦିର । ତେଣୁ 'କୋଣାର୍କେ' କାବ୍ୟର ପ୍ରଥମ ପର୍ଯ୍ୟାୟରେ କବି ଉତ୍କଳୀୟମାନଙ୍କର ସୁପ୍ତ ଜାତୀୟ ଚେତନା ଜାଗ୍ରତ କରିବା ପାଇଁ ଇତିହାସକୁ ପ୍ରମୁଖ ମାଧ୍ୟମ ଭାବେ ଗ୍ରହଣ କରିଛନ୍ତି । 'କୋଣାର୍କେ' କାବ୍ୟାଂଶରେ 'ରାମଚଣ୍ଡୀରେ ରାତି' ଓ 'ସକାଳ'ରେ ଉତ୍କଳର ଦୃଢ଼ ଓ ସୁପ୍ତ ଗୌରବରାଜିର ଯେଉଁ କମନୀୟ ଚିତ୍ର ବର୍ଣ୍ଣନା କରିଛନ୍ତି, ସେଥିରେ କବିଙ୍କର ଜାତୀୟପ୍ରୀତି ଉତ୍କୀର୍ଣ୍ଣ । ଓଡ଼ିଆ ସାହିତ୍ୟରେ ଏହା ଏକ ମହନୀୟ କାବ୍ୟଭାବେ ବିବେଚିତ । ପ୍ରଣୟ ଏହି କାବ୍ୟର ମୂଳକଥା ହେଲେ ହେଁ ଏହାର ନିଷ୍କର୍ଷ ତୀବ୍ର ଜାତୀୟତାଭାବ ବ୍ୟଞ୍ଜକ । ଉତ୍କଳ ରମଣୀ, ଉତ୍କଳର ଗଜପତି, ଉତ୍କଳ ପ୍ରାଣର ପ୍ରତିଧ୍ୱନି, ଉତ୍କଳ ସୈନ୍ୟର ରଣକୌଶଳ, ଉତ୍କଳର ଐତିହ୍ୟ, ସଂସ୍କୃତି, ଅତୀତ ବିଭବ ବର୍ଣ୍ଣନା ନୀଳକଣ୍ଠଙ୍କ ଦେଶପ୍ରେମକୁ ଗଭୀର ଭାବାବେଗରେ ଆନ୍ଦୋଳିତ କରିଛି ।

ଓଡ଼ିଆ ଜାତିର ଯଥାର୍ଥ ଦାୟାଦ ଭାବେ ତାଙ୍କ କଣ୍ଠରୁ ସୃଷ୍ଟି ହୋଇଛି ଗଭୀର ବ୍ୟଞ୍ଜନା । ଯଥା– 'ରକ୍ତ, ମାଂସ, ପିଣ୍ଡ ବା ଅପରିବର୍ତ୍ତିତ ଭୂଖଣ୍ଡରେ ଜାତୀୟତା ରହେ ନାହିଁ ବରଂ ଜାତୀୟତା ରହେ ଭାବରେ, ଆଦର୍ଶରେ । ଜାତୀୟ ଜୀବନର ମୌଳିକତା ଓ ଶକ୍ତିରେ' । ଜାତୀୟ ଦୃପ୍ତ ଚେତନା ନେଇ ନୀଳକଣ୍ଠ ସ୍ରଷ୍ଟା ମାନସରେ ଯେଉଁ ଆଭିମୁଖ୍ୟ ଓ ଆବେଦନ ସୃଷ୍ଟି ହୋଇଥିଲା, ସେହି ଜାତୀୟତାବାଦକୁ କବି କର୍ମର ଶ୍ରେଷ୍ଠ ସୃଷ୍ଟି ହେଉଛି 'କୋଣାର୍କେ' କାବ୍ୟ ।

ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ ଯୁଗ ସ୍ୱଳ୍ପ କାଳ ମୁଣ୍ଡ ଟେକିଥିଲେ ସୁଦ୍ଧା ଏହାର ଗୁରୁତ୍ୱପୂର୍ଣ୍ଣ ଭୂମିକା ଉଲ୍ଲେଖନୀୟ । ଜାତୀୟ ଚେତନା ଓ ଦେଶାତ୍ମବୋଧ ଜାଗ୍ରତ କରିବା ଉଦ୍ଦେଶ୍ୟରେ ଏହି କାଳର ସାହିତ୍ୟ ରଚିତ । ବାସ୍ତବରେ 'କୋଣାର୍କେ' କାବ୍ୟ ହେଉଛି ସତ୍ୟବାଦୀ ଯୁଗୀୟ ସାରସ୍ୱତ ବିଭବର ସର୍ବଶ୍ରେଷ୍ଠ ପ୍ରତିନିଧି । କୋଣାର୍କ ଦର୍ଶନର ଅନୁଭୂତି ନେଇ ରଚିତ ହୋଇଥିବା ଏହି କାବ୍ୟଟି ନୀଳକଣ୍ଠଙ୍କ ଜାତୀୟତାବୋଧ ଓ ସ୍ୱଦେଶପ୍ରୀତିର ଜୀବନ୍ତ ପ୍ରମାଣ । ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଏହା ହେଉଛି ଏକ ସମୁଜ୍ଜ୍ୱଳ କାବ୍ୟ ରତ୍ନ । ଏଥିରେ ଶତ ଶତ ବର୍ଷ ବ୍ୟାପୀ ଓଡ଼ିଆର ସାଧନା, ସୂକ୍ଷ୍ମ ଚିନ୍ତା, ରଣ ନୈପୁଣ୍ୟ, ଶାସନ ଶୃଙ୍ଖଳା, ବୀରତ୍ୱ ବୈଭବ, କଳା କୌଶଳ ବିଚିତ୍ର ଭାବେ ମୂର୍ତ୍ତିମନ୍ତ । ତେଣୁ ଏହି କାବ୍ୟ ଯଥାର୍ଥରେ ପଣ୍ଡିତ ନୀଳକଣ୍ଠଙ୍କ ସ୍ରଷ୍ଟା ମାନସର କାଳଜୟୀ ସୃଷ୍ଟି ।

---

ପ୍ଲଟ୍ ନଂ–୧୩୬/୮୫୦
ବ୍ରହ୍ମେଶ୍ୱରପାଟଣା, ଭୁବନେଶ୍ୱର–୧୮

# ବିଜୁବାବୁ ପରି କିଏ ହେବ

ବିକ୍ରମ ମହାରଣା

ବିଜୁବାବୁଙ୍କର ୭୯ତମ ଜନ୍ମଦିନରେ ଜଣେ ସାମ୍ବାଦିକ ତାଙ୍କୁ ପ୍ରଶ୍ନ କଲେ କି, 'ସେ କିପରି ମରିବାକୁ ଭଲପାଇବେ ?' ପ୍ରତ୍ୟୁତ୍ପନ୍ନମତି ବିଜୁବାବୁ ପ୍ରତ୍ୟୁତ୍ତରରେ ତୁରନ୍ତ କହିଲେ ଯେ, 'ସେ ବିମାନ ଦୁର୍ଘଟଣା ବା ବହୁକାଳ ପୀଡିତ ରହି ମରିବାକୁ ଚାହିଁବେନି ।' ସେମିତି ପ୍ରାୟ ହେଲା । ନିରେଖି ବୁଝିଲେ ଉକ୍ତ ଉଦ୍ଧୃତାଂଶରେ ତାଙ୍କର ବୃତ୍ତି ପ୍ରତି ନିଷ୍ଠା ଓ ଆତ୍ମବିଶ୍ୱାସ ବାରି ହୋଇପଡୁଥିଲା । ନିର୍ମଳ ମନ ଯୋଗୁ ଦୀର୍ଘକାଳ ଶଯ୍ୟାଶାୟୀ ନହୋଇ ସ୍ୱଳ୍ପ ସମୟରେ ଚାଲିଗଲେ । କି ଶାନ୍ତିରେ ମରଣ ! ଭାଗବତରେ ଅଛି, 'ପ୍ରାଣୀର ଭଲମନ୍ଦ ବାଣୀ–ମରଣ କାଳେ ତାହା ଜାଣି ।' ନା ମରଣର ପରାଭବ ନା କିଛି ଅବସୋସ୍ । ପୁରୀ ସ୍ୱର୍ଗଦ୍ୱାରରେ ତାଙ୍କ ପାର୍ଥିବ ଶରୀରର ସତ୍କାରାର୍ଥେ ଆୟୋଜିତ ଶେଷଯାତ୍ରାରେ ଭୁବନେଶ୍ୱର ବିମାନ ବନ୍ଦରରୁ ପୁରୀ ସ୍ୱର୍ଗଦ୍ୱାର ପର୍ଯ୍ୟନ୍ତ ଅଭୂତପୂର୍ବ ଲୋକାରଣ୍ୟ ସୂଚିତ କରୁଥିଲା ତାଙ୍କର ଅମାପ ଲୋକପ୍ରିୟତା । ସ୍ୱତଃ ପ୍ରମାଣିତ କରୁଥିଲା ଯେ, ସାର୍ଥକ ଥିଲା ତାଙ୍କର ଜନ୍ମ ଓ ଜୀବନ । ସେ ନିଜେ ହସିହସି ଧରାବକ୍ଷରୁ ବିଦାୟ ନେଉଥିଲା ବେଳେ ଜନସମୁଦ୍ରରେ ଭାଙ୍ଗୁଥିଲା ଲୁହର ଲହଡି ।

ଉତ୍କଳ ଜନନୀର 'ବୀରପ୍ରସବିନୀ' ନାମକୁ ଯଥାର୍ଥ ପ୍ରତିପାଦିତ କରିଥିବା ଏହି ସାହସୀ ପୁରୁଷଙ୍କ ଜନ୍ମ ହୁଏ ୧୯୧୬ ମସିହା ମାର୍ଚ୍ଚ ମାସ ୫ ତାରିଖର ଏକ ଅମୃତ ବେଳାରେ, ସଂସ୍କାର ମଣ୍ଡିତ ସଂଭ୍ରାନ୍ତ ପରିବାରରୁ ଆସିଥିବା ସ୍ୱାଭିମାନୀ ପିତା ଲକ୍ଷ୍ମୀନାରାୟଣ ଓ ସ୍ୱାଧୀନତା ସଂଗ୍ରାମୀ ପରିବାରରୁ ଆସିଥିବା ମାତା ଆଶାଲତା ଦେବୀଙ୍କ ଔରସରୁ, କଟକ ତୁଳସୀପୁରସ୍ଥିତ 'ଆନନ୍ଦ ଭବନ'ରେ । ପାରିବାରିକ ଓ ପାରିବେଶିକ ପ୍ରଭାବ ବାଲ୍ୟକାଳରୁ ତାଙ୍କ ମନରେ ଦେଶଭକ୍ତି




ଓ ଜନସେବାର ଭାବନା ଉଦ୍ରେକ କରିବାରେ ସହାୟକ ହୋଇଥିଲା । ୧୯୨୬ ମସିହାରେ ତାଙ୍କୁ ମାତ୍ର ୧୦ ବର୍ଷ ବୟସ ହୋଇଥିବା ସମୟରେ ସେ ବ୍ରିଟିଶ୍ ଅଧିକାରୀଙ୍କୁ ଉଚିତ୍ କଥା କହିବାରେ ପଛେଇଯାଇ ନଥିଲେ । ରେଭେନ୍ସା କଲେଜରେ ପଢୁଥିବା ସମୟରେ ଦୁଇଜଣ ସାଥୀଙ୍କ ସହ ସାଇକେଲ୍‌ରେ କଟକରୁ ସୁଦୂର ପେଶୱାରକୁ ଦୁର୍ଗମ ଅଭିଯାନରେ ଯାଇଥିଲେ । ଉଚ୍ଚଶିକ୍ଷା କାଳରେ ସେ ବୈମାନିକ ହେବାର ସ୍ୱପ୍ନ ଦେଖୁଥିଲେ । ପାଇଲଟ୍ ଟ୍ରେନିଂ ପରେ ରୟାଲ୍ ଇଣ୍ଡିଆ ଏୟାର୍ ଫୋର୍ସ ଓ ଇଣ୍ଡିଆନ୍ ନ୍ୟାସନାଲ୍ ଏୟାର୍‌ୱେଜ୍‌ରେ ଭର୍ତ୍ତି ହୋଇ ପରବର୍ତ୍ତୀ ସମୟରେ ସେ ଜଣେ ସାହସୀ ଓ ସୁଦକ୍ଷ ପାଇଲଟ୍ ଭାବରେ ବହୁ ଅସାଧ କାର୍ଯ୍ୟ ସାଧନ ପୂର୍ବକ ଜାତୀୟ ଓ ଅନ୍ତର୍ଜାତୀୟ

ସ୍ତରରେ ଖ୍ୟାତି ଅର୍ଜନ କରିଥିଲେ । ଭାରତର ବଡଲାଟ୍ ଲର୍ଡ ୱାଭେଲ୍‌ଙ୍କର ସେ ପାଇଲଟ୍ ଥିଲେ । ବଡଲାଟ୍‌ଙ୍କ ଗୁପ୍ତ ଦଲିଲ୍ ସବୁ ସେ ଗୋପନରେ ଗାନ୍ଧିଜୀଙ୍କୁ ଯୋଗାଇ ଦେଉଥିଲେ । ୧୯୪୦ ମସିହାରେ ଜୟପ୍ରକାଶ ନାରାୟଣଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା ଏବଂ ବିଜୁବାବୁ ତାଙ୍କୁ ନିଜର ରାଜନୈତିକ ଗୁରୁ ରୂପେ ଗ୍ରହଣ କରି ନେଇଥିଲେ । ସେହିବର୍ଷ ସେ ପାଇଲଟ୍ ଚାକିରି ଛାଡି ଜାତୀୟ ନେତାମାନଙ୍କ ସଂସ୍ପର୍ଶରେ ଆସିଥିଲେ । 'ଭାରତ ଛାଡ' ଆନ୍ଦୋଳନରୁ ତାଙ୍କର ରାଜନୈତିକ ଜୀବନର ଆୟମାରମ୍ଭ ହୋଇଥିଲା । ୧୯୪୩ ମସିହାରେ ସେ ଦିଲ୍ଲୀରେ ଗିରଫ୍ ହୋଇ ଲାଲ୍‌କିଲ୍ଲାରେ ବନ୍ଦୀ ହୋଇ ରହିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନ, ବର୍ମା ଆକ୍ରମଣ କଲାବେଳେ ବିଜୁବାବୁ ନିଜ ଜୀବନ ବିପନ୍ନ କରି କେତେକ ବ୍ରିଟିଶ୍ ପରିବାରଙ୍କୁ ମୃତ୍ୟୁ ମୁଖରୁ ଉଦ୍ଧାର କରିଥିଲେ । ହିମାଳୟ ଉପରେ ବିମାନ ନେଇ ସେ ଚୀନ୍‌ର ବିପ୍ଳବୀମାନଙ୍କୁ ସାହାଯ୍ୟ କରିଥିଲେ । ଭାରତଛାଡ ଆନ୍ଦୋଳନ ସମୟରେ ଜୟପ୍ରକାଶ ନାରାୟଣ, ଅରୁଣା ଆସଫ୍ ଅଲ୍ଲୀ, ରାମ ମନୋହର ଲୋହିଆ ଓ ଅଚ୍ୟୁତ ପଟ୍ଟବର୍ଦ୍ଧନ ଆଦି ଜାତୀୟ ନେତାମାନଙ୍କୁ ନିଜ ଘରେ ଲୁଚାଇ ରଖିଥିଲେ । ଗୋପନରେ ନେତାଜୀଙ୍କ ପ୍ରଚାରପତ୍ର ବିମାନରୁ ବିତରଣ କରୁଥିଲେ । ୧୯୪୭ରେ ଡଚ୍–ଇଣ୍ଡୋନେସିଆ ଯୁଦ୍ଧ ଚାଲିଥିବାବେଳେ ବିଜୁବାବୁ ପଣ୍ଡିତ ନେହରୁଙ୍କ ନିର୍ଦ୍ଦେଶକ୍ରମେ ଇଣ୍ଡୋନେସିଆର ପ୍ରଥମ ପ୍ରଧାନମନ୍ତ୍ରୀ ସୁଲତାନ୍ ସାହାରିୟାର୍, ମହମ୍ମଦ ହଟ୍ଟା ଏବଂ ଅନ୍ୟ ସ୍ୱାଧୀନତା ସଂଗ୍ରାମୀଙ୍କୁ ଦିଲ୍ଲୀ ନେଇ ଆସିଥିଲେ । ସେ ରାଷ୍ଟ୍ରପତି ସୁକର୍ଣ୍ଣଙ୍କୁ ମଧ୍ୟ ସଂକଟରୁ ରକ୍ଷା କରିଥିଲେ । ତାଙ୍କର ଏହି ଅପୂର୍ବ ସାହସ ଓ ବୀରତ୍ୱ ପାଇଁ ଇଣ୍ଡୋନେସିଆ ସରକାର ତାଙ୍କୁ ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର' ଉପାଧିରେ ଭୂଷିତ କରିଥିଲେ । ଇଣ୍ଡୋନେସିଆ ସ୍ୱାଧିନତା ସଂଗ୍ରାମରେ ସହଯୋଗ ନିମନ୍ତେ କୃତଜ୍ଞତା ସ୍ୱରୂପ ସେ ଦେଶର ସରକାର ୧୯୫୦ ମସିହାରେ ତାଙ୍କୁ ୫୦୦ କୋଟି ଟଙ୍କାର ପୁରସ୍କାର ପ୍ରଦାନ କରିଥିଲେ । କିନ୍ତୁ ବିଜୁବାବୁ ସେହି ଅର୍ଥରାଶିକୁ ଇଣ୍ଡୋନେସିଆବାସୀଙ୍କ କଲ୍ୟାଣ ଉଦ୍ଦେଶ୍ୟରେ ଦାନ କରି ନିଜର ମହାନୁଭବତାର ନିଦର୍ଶନ ରଖିଥିଲେ । ୧୯୪୮ ମସିହାରେ ପାକିସ୍ଥାନର ଭାରତ ଆକ୍ରମଣ କାଳରେ ବିଜୁବାବୁ ସର୍ବପ୍ରଥମେ ଭାରତୀୟ ସୈନ୍ୟମାନଙ୍କୁ ବିମାନରେ ନେଇ ଶ୍ରୀନଗରରେ ପହଞ୍ଚାଇ ଥିଲେ । ୧୯୬୨ ମସିହାରେ ଚୀନ୍ ଆକ୍ରମଣ କାଳରେ ସେ ପଣ୍ଡିତ ନେହରୁଙ୍କ ନିର୍ଦ୍ଦେଶକ୍ରମେ ଗୋପନରେ ଆମେରିକା ଯାତ୍ରା କରିବା ସହ ନେହରୁଙ୍କୁ ପ୍ରତିରକ୍ଷା ସଂକ୍ରାନ୍ତୀୟ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ପରାମର୍ଶ ଦେଉଥିଲେ । ୧୯୬୫ ମସିହାରେ ଭାରତ–ପାକିସ୍ଥାନ ଯୁଦ୍ଧ କାଳରେ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୂର୍ ଶାସ୍ତ୍ରୀ ତାଙ୍କୁ ଇଣ୍ଡୋନେସିଆ ପଠାଇଥିଲେ । ବିଜୁବାବୁଙ୍କ ଉଦ୍ୟମର ଫଳସ୍ୱରୂପ ଇଣ୍ଡୋନେସିଆ ପାକିସ୍ଥାନକୁ ଯୁଦ୍ଧ ବିମାନ ବିକ୍ରୀ ବନ୍ଦ କରିଦେଇଥିଲା ।

୧୯୬୧ ମସିହାରେ ସେ ପ୍ରଦେଶ କଂଗ୍ରେସ ସଭାପତି ଭାବେ ନିର୍ବାଚିତ ହେବା ପରେ କଂଗ୍ରେସ ରାଜନୀତିରେ ଯୁବ ନେତୃତ୍ୱର ଅଭ୍ୟୁଦୟ ହୋଇଥିଲା । ଜୁନ୍ ମାସରେ ଓଡିଶା ବିଧାନସଭାର ମଧ୍ୟବର୍ତ୍ତୀକାଳୀନ ତୃତୀୟ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ନୂତନ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ସେ ସମୟରେ ରାଜ୍ୟର ଶିଳ୍ପ କ୍ଷେତ୍ରରେ ବିକାଶ ପାଇଁ ବହୁ ପ୍ରଗତିଶୀଳ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ସେଥିମଧ୍ୟରେ ପାରାଦୀପ ବନ୍ଦର, ଖଣି ଅଂଚଳକୁ ସଂଯୋଗ ପାଇଁ ଦଇତାରୀ–ପାରାଦୀପ ଏକ୍ସପ୍ରେସ୍ ହାଇୱେ, ବାଲିମେଳା ଜଳ ବିଦ୍ୟୁତ୍ ଯୋଜନା, ତାଳଚେର ଥର୍ମାଲ୍ ପ୍ରକଳ୍ପ, ସୁନାବେଡା ମିଗ୍ ବିମାନ କାରଖାନା, ବଡବିଲ୍ ଲୁହା କାରଖାନା, ନାଲ୍‌କୋ ଆଲୁମିନିୟମ୍ ପ୍ରକଳ୍ପ ଏବଂ ପଂଚାୟତ ସ୍ତରରେ ବହୁ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠା ଆଦି ଉଲ୍ଲେଖଯୋଗ୍ୟ । ବିଜୁବାବୁ ପଂଚାୟତସ୍ତରୀୟ ଶିଳ୍ପର ପ୍ରବର୍ତ୍ତକ । ତାଙ୍କ ଶାସନ କାଳରେ ବିଭିନ୍ନ ନିଗମ ପ୍ରତିଷ୍ଠା, ରାଉରକେଲାଠାରେ ଆଞ୍ଚଳିକ ଇଞ୍ଜିନିୟରିଂ କଲେଜ ଏବଂ ବିଭିନ୍ନ ଅଞ୍ଚଳରେ ବିଜ୍ଞାନ କଲେଜ, ଇଞ୍ଜିନିୟରିଂ ଓ ପଲିଟେକ୍‌ନିକ୍ ଅନୁଷ୍ଠାନଗୁଡ଼ିକ ସ୍ଥାପନ କରାଯାଇଥିଲା । ଶିକ୍ଷାର ପ୍ରସାର ବିଶେଷତଃ ବୈଷୟିକ ଶିକ୍ଷା ପାଇଁ ବ୍ୟାପକ ବ୍ୟବସ୍ଥା କରାଯାଇଥିଲା । ପ୍ରଥମ ଶ୍ରେଣୀଠାରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପ୍ରାଥମିକ ବିଦ୍ୟାଳୟ ପାଠ୍ୟପୁସ୍ତକଗୁଡ଼ିକୁ ଜାତୀୟକରଣ କରାଯାଇଥିଲା । ଚାରିବାଟିଆ ସାମରିକ ବିମାନ ଅବତରଣ କେନ୍ଦ୍ର, ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବୁର୍ଲାଠାରେ ଇଂଜିନିୟରିଂ ଓ ମେଡ଼ିକାଲ କଲେଜ ପ୍ରତିଷ୍ଠା ପ୍ରଭୃତି ବିଜୁବାବୁଙ୍କ ଶାସନର କୃତିତ୍ୱ । ବିଜୁବାବୁ ୧୯୬୩ ଅକ୍ଟୋବର ୧ ତାରିଖ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ରହି ଓଡ଼ିଶାରେ ନିର୍ମାଣ ଯୁଗର ଶୁଭାରମ୍ଭ କରିଥିଲେ । କାମରାଜ ଯୋଜନାରେ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଉଦାହରଣ ରଖିଥିଲେ ।

ବିଜୁବାବୁଙ୍କ ନେତୃତ୍ୱରେ 'ଉତ୍କଳ କଂଗ୍ରେସ' ନାମକ ଏକ ଆଞ୍ଚଳିକ ଦଳ, ପରବର୍ତ୍ତୀ କାଳରେ ୧୯୭୩ରେ ଉତ୍କଳ କଂଗ୍ରେସ, ସ୍ୱତନ୍ତ୍ର ଦଳ, ଜନକଂଗ୍ରେସ ଓ କେତେକ ସ୍ୱାଧୀନ ସଭ୍ୟ ମିଶି ପ୍ରଗତି ଦଳ ଗଠିତ ହୋଇଥିଲା । ୧୯୭୭ ମସିହାରେ ଜରୁରିକାଳୀନ ପରିସ୍ଥିତି କୋହଳ ହେବାପରେ ଜାତୀୟ ସ୍ତରରେ 'ଜନତା ଦଳ' ନାମକ ଏକ ନୂତନ ଦଳ ଗଠନ ହୋଇଥିଲା । ଓଡ଼ିଶାର ସମସ୍ତ ଅଣକମ୍ୟୁନିଷ୍ଟ ବିରୋଧୀ ଦଳକୁ ନେଇ ବିଜୁବାବୁଙ୍କ ନେତୃତ୍ୱରେ ରାଜ୍ୟରେ ଜନତା ଦଳ ଗଠିତ ହୋଇଥିଲା । ପ୍ରଗତି ଦଳରେ ଥାଇ ୧୯୭୩ରେ ସଂକ୍ଷିପ୍ତ ସମୟ, ୧୯୭୪ରୁ ୧୯୭୭ ଓ ୧୯୮୫ରୁ ୧୯୯୦ ପର୍ଯ୍ୟନ୍ତ ଏବଂ ପରେ ୧୯୯୫ରେ ସଂକ୍ଷିପ୍ତ ସମୟ ବିରୋଧୀଦଳ ନେତା ଭାବେ ସେ ରାଜ୍ୟ ବିଧାନସଭାରେ ପ୍ରଭାବଶାଳୀ ସାବ୍ୟସ୍ତ ହୋଇଥିଲେ ।

୧୯୯୦ ଫେବୃଆରୀ ମାସରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଜନତା ଦଳ ବିପୁଳ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା ଓ ମାର୍ଚ୍ଚ ୫ ତାରିଖରେ ବିଜୁବାବୁ ଦ୍ୱିତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିଥିଲେ । ସରକାରର ଅବଧି ମଧ୍ୟରେ ରାଜ୍ୟରେ ବେକାରୀ ଓ ଦାରିଦ୍ର୍ୟ ଦୂରୀକରଣ ପାଇଁ ବହୁ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରାଯାଇଥିଲା । ମହିଳାଙ୍କ ନିଯୁକ୍ତି କ୍ଷେତ୍ରରେ ବୟସସୀମା କୋହଳ କରାଯାଇଥିଲା । ଶ୍ରମିକମାନଙ୍କ ଦୈନିକ ସର୍ବନିମ୍ନ ମଜୁରି ପ୍ରଥମ ଥର ପାଇଁ ଆଖିଦୃଶିଆ ୨୫ ଟଙ୍କାକୁ ବୃଦ୍ଧି କରାଯାଇଥିଲା । ବୃଦ୍ଧ, ଅକ୍ଷମ ଓ ବିଧବା ଭତ୍ତା ୧୦୦ ଟଙ୍କାକୁ ବୃଦ୍ଧି ହୋଇଥିଲା । କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଆର୍ଥିକ ସାହାଯ୍ୟ ଯୋଜନା ଏବଂ ଗ୍ରାମାଞ୍ଚଳ ଦରିଦ୍ର ଲୋକଙ୍କ ବାସଗୃହ ନିର୍ମାଣ ପାଇଁ କଳିଙ୍ଗ କୁଟୀର ଯୋଜନା ଆଦି ପ୍ରବର୍ତ୍ତନ କରାଯାଇଥିଲା । ବିଧବା ଭତ୍ତା ପାଇଁ ହିତାଧିକାରୀମାନଙ୍କ ବୟସସୀମା ଉଚ୍ଛେଦ ହୋଇଥିଲା । ରାଜ୍ୟରେ ମହିଳା ବିକାଶ ନିଗମ, ମହିଳା ବ୍ୟାଙ୍କ ଓ ରାଜ୍ୟ ମହିଳା କମିଶନ ପ୍ରତିଷ୍ଠା କରାଯାଇଥିଲା । ରାଜ୍ୟରେ ଲୋକାଭିମୁଖୀ ପ୍ରଶାସନ ନିମନ୍ତେ ଜିଲ୍ଲା ପୁନର୍ଗଠନ କରାଯାଇ ଜିଲ୍ଲା ସଂଖ୍ୟା ୧୩ରୁ ୩୦କୁ ବୃଦ୍ଧି କରାଯାଇଥିଲା । ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରାଯାଇଥିଲା । ଛଅଟି ଜିଲ୍ଲାରେ ସଂପୂର୍ଣ୍ଣ ସାକ୍ଷରତା ଯୋଜନା ଆରମ୍ଭ କରାଯାଇଥିଲା ।

କେନ୍ଦ୍ରରେ ମିଳିତ ସାମ୍ମୁଖ୍ୟ ସରକାର ଗଠନରେ ସେ ଥିଲେ କର୍ଣ୍ଣଧାର । ୧୯୭୭ରୁ ୧୯୭୯ ଜଣେ ସାଂସଦ ଓ କେନ୍ଦ୍ରମନ୍ତ୍ରୀ, ୧୯୮୦ ମସିହାରେ ପୁନଶ୍ଚ ସାଂସଦ ଓ ୧୯୯୬ରୁ ଶେଷନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ସାଂସଦ ରୂପେ ତାଙ୍କର ଭୂମିକା ଦେଶ ଜାତିର ହିତ ନିମନ୍ତେ ଉଦ୍ଦିଷ୍ଟ ଥିଲା । ସ୍ୱାଭିମାନ ଓ ଆତ୍ମବିଶ୍ୱାସ ଥିଲା ତାଙ୍କ ପ୍ରେରଣାର ଉତ୍ସ । ସ୍ପଷ୍ଟବାଦିତା ଥିଲା ତାଙ୍କର ସ୍ୱଭାବସିଦ୍ଧ ଗୁଣ । ପ୍ରଶାସନ କ୍ଷେତ୍ରରେ ଦୁର୍ନୀତି ନିବାରଣ ସହ ସଂସ୍କାର ଓ ଦକ୍ଷତା ବୃଦ୍ଧି ପାଇଁ ସେ ସତତ ଉଦ୍ୟମ କରୁଥିଲେ । ସରକାରୀ କଳରେ ଅପବ୍ୟୟ ରୋକିବା ପାଇଁ ସେ ବହୁ କଟକଣା ଜାରି କରିଥିଲେ । ଛୁଟି ଦିନରେ ସରକାରୀ ଗାଡ଼ି ବ୍ୟବହାର ସମ୍ପୂର୍ଣ୍ଣ ନିଷିଦ୍ଧ ହୋଇଥିଲା । ବୟସର ଅପରାହ୍ନରେ ନିଜେ ରିକ୍ସା ଓ ସାଇକେଲରେ ସଚିବାଳୟ ଆସି ଅନ୍ୟ ପାଇଁ ମିତବ୍ୟୟତାର ଉଦାହରଣ ସୃଷ୍ଟି କରିଥିଲେ । ସୁଦୀର୍ଘ ଶରୀର ସହ ବାହାରକୁ ଅତ୍ୟନ୍ତ କଠୋର ଜଣା ପଡୁଥିଲେ ମଧ୍ୟ ତାଙ୍କର ହୃଦୟ ଥିଲା ଅତି କୋମଳ । ବିଜୁବାବୁଙ୍କ ଜୀବନ ଥିଲା ଯେତିକି ଆଭିଜାତ୍ୟପୂର୍ଣ୍ଣ, ସେତିକି ସରଳ ଓ ନିରାଡ଼ମ୍ବର । ରାଜ୍ୟର ହିତ ପାଇଁ ସରକାରୀ ପଦାଧିକାରୀଙ୍କ ନିକଟକୁ ଚାଲିଆସି ନଥିର ପ୍ରକ୍ରିୟା ତ୍ୱରାନ୍ୱିତ କରିବାରେ ସେ ଦ୍ୱିଧାଗ୍ରସ୍ତ ନଥିଲେ । ସବୁ ପରିସ୍ଥିତି ସହିତ ଖାପ ଖୁଆଇ ଚାଲିବା ଏବଂ ସବୁ ଶ୍ରେଣୀର ଲୋକଙ୍କ ସଙ୍ଗେ ମିଶି ଚଳିବା ଥିଲା ତାଙ୍କ ଜୀବନର ଆଦର୍ଶ । ତେଣୁ ଧନୀ, ଦରିଦ୍ର, ଶିଶୁ, ବୃଦ୍ଧ ସମସ୍ତଙ୍କର ସେ ଥିଲେ ଅତି ଆପଣାର । ଦାମ୍ଭିକତା ଥିଲା ତାଙ୍କର ସହଜାତ ପ୍ରକୃତି । ସେଥିରେ ତିଳେମାତ୍ର ଅହମିକା ବା ଆତ୍ମ ବଡ଼ିମା ନଥିଲା । ସଂଘୀୟ ଶାସନ ବ୍ୟବସ୍ଥାରେ ରାଜ୍ୟପ୍ରତି କେନ୍ଦ୍ରର ପକ୍ଷପାତ ବିରୁଦ୍ଧରେ ଯୁଦ୍ଧ ଡାକରା ଦେଇ ଦେଶରେ ସାମରିକ ଶାସନ ପାଇଁ ସେ ଏକଦା ସ୍ୱର ଉତ୍ତୋଳନ କରିଥିଲେ । ଜୀବନକାଳ ମଧ୍ୟରେ ସେ ଯଥେଷ୍ଟ ପ୍ରଶଂସା ଓ ଯଶ ଅର୍ଜନ କରିଛନ୍ତି । ଓଡ଼ିଶାର ପ୍ରାଚୀନ ନାମ 'କଳିଙ୍ଗ', ତା'ର ଗୌରବମୟ ଐତିହ୍ୟକୁ ଯଦି କେହି ଓଡ଼ିଆ, ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ନିଜର ଦୁଃସାହସିକ ଓ ଦୃଷ୍ଟାନ୍ତ ସୃଷ୍ଟିକାରୀ କାର୍ଯ୍ୟଦ୍ୱାରା ପ୍ରତିପାଦିତ କରିଯାଇଛନ୍ତି, ସେ ହେଉଛନ୍ତି ବିଜୁ ପଟ୍ଟନାୟକ । ସେ ସର୍ବଦା କହୁଥିଲେ ''ମୁଁ ଖାରବେଳ ଜାତିର ଦାୟାଦ, ପୁରୁଷୋତ୍ତମ

ଜାତିର ବଂଶଧର – ମୋ ସଂସ୍କୃତି ଜଗନ୍ନାଥ ସଂସ୍କୃତି, କଳାର ଉତ୍କର୍ଷ ପାଇଁ ମୋ ରାଜ୍ୟର ନାମ ଉତ୍କଳ । ଏହି ଉତ୍କଳ ହେଉଛି ମୋ' ମା, ତା' ପାଇଁ ନିଜ ଜୀବନ ବିନିମୟରେ ଯଦି କିଛି କରିପାରିଲି, ତେବେ ମୋ' ଜୀବନର ଲକ୍ଷ୍ୟ ସଫଳ ହୋଇଛି ବୋଲି ମନେ କରିବି ।''

ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାରେ ତାଙ୍କର ଅବଦାନ ଓ ମହାତ୍ମା ଗାନ୍ଧୀଙ୍କ 'ଗାଁରେ ଭାରତ ବଂଚେ' ଅଭିବ୍ୟକ୍ତିର ମର୍ମାର୍ଥ ହୃଦୟଙ୍ଗମ ସହ ପଞ୍ଚାୟତିରାଜ ପ୍ରତିଷ୍ଠାନ ପ୍ରତି ତାଙ୍କର ବିଚାରବୋଧ ନିମନ୍ତେ ଓଡ଼ିଶାବାସୀ ବିଜୁବାବୁଙ୍କ ଜନ୍ମଦିନ ମାର୍ଚ୍ଚ ୫ ତାରିଖକୁ ପଞ୍ଚାୟତିରାଜ ଦିବସ ରୂପେ ପାଳନ କରିଆସୁଛନ୍ତି । ବିଜୁବାବୁ ତାଙ୍କ ଶାସନ କାଳରେ ନାରୀ ପ୍ରଗତି, ଆଦିବାସୀ ଉନ୍ନୟନ, ସାଂପ୍ରଦାୟିକ ସଦ୍‌ଭାବ, ପ୍ରବାସୀ ଭାରତୀୟଙ୍କ ସହଯୋଗରେ ରାଜ୍ୟର ଆର୍ଥିକ ସ୍ଥିତିରେ ଉନ୍ନତି ସକାଶେ ବିଭିନ୍ନ ପଦକ୍ଷେପମାନ ନେଇଥିଲେ । ନାରୀମାନେ ଆତ୍ମନିର୍ଭରଶୀଳା ହେଲେ ସେମାନଙ୍କର ଅଧିକାଂଶ ସମସ୍ୟାର ସମାଧାନ ହୋଇପାରିବ ଓ ଏହା ସାମାଜିକ ଉନ୍ନତି ଓ ସଶକ୍ତିକରଣର ମୌଳିକ ବ୍ୟବସ୍ଥା ଦ୍ୱାରା ହିଁ ସମ୍ଭବ-ଏହା ବିଜୁବାବୁ ଭଲ ଭାବରେ ବୁଝିଥିଲେ । ଛାତ୍ରୀମାନଙ୍କ ବିଜ୍ଞାନ ଶିକ୍ଷା, ବୈଷୟିକ ଶିକ୍ଷା ଓ ସେମାନଙ୍କ ପ୍ରତିଭା ବିକାଶରେ ବିଜୁବାବୁ ଗୁରୁତ୍ୱ ଦେଉଥିଲେ । ମହିଳାମାନଙ୍କ ପାଇଁ ବିଭିନ୍ନ ସରକାରୀ ଓ ସରକାରଙ୍କ କର୍ତ୍ତୃତ୍ୱାଧୀନ ନିଗମମାନଙ୍କରେ ଶତକଡ଼ା ୩୦ ଭାଗ ଚାକିରି ସଂରକ୍ଷଣ କରିବାର ଏକ ଐତିହାସିକ ପଦକ୍ଷେପ ଗ୍ରହଣ କରିଥିଲେ । ନାରୀମାନଙ୍କ ପ୍ରତି ନିର୍ଯ୍ୟାତନା ରୋକିବାକୁ 'ଶାଶୂ ହାତକଡି–ନଣନ୍ଦ ବେଡି'ର ପରିକଳ୍ପନା କରିଥିଲେ । କୌଣସି ସରକାରୀ କର୍ମଚାରୀ ଯୌତୁକଜନିତ ଅପରାଧରେ ଯଦି ଦୋଷୀ ସାବ୍ୟସ୍ତ ହୁଅନ୍ତି ତାଙ୍କୁ ଚାକିରିରୁ ନିଲମ୍ବିତ କରାଯିବାର ସରକାରୀ ଆଦେଶନାମା ଜାରି କରିଥିଲେ । ଯୌତୁକ ପ୍ରଥାର ବିଲୋପ ଦିଗରେ ବିଜୁବାବୁ ବିବାହ ଖର୍ଚ୍ଚ ୨୫ ହଜାର ଟଙ୍କା ମଧ୍ୟରେ ସୀମିତ ରଖିବାକୁ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ । ତାଙ୍କର ଏକ ସ୍ଲୋଗାନ ଥିଲା – 'ଗାଁକୁ କାମ– ମାଆକୁ ସମ୍ମାନ' । ବିଜୁବାବୁ ମାଆମାନଙ୍କ ମାଧ୍ୟମରେ ଏକ ସୁସ୍ଥ, ସୁନ୍ଦର, ସ୍ୱାଭିମାନୀ, ସାହସୀ ଓ ବୀରଜାତି ତଥା ସମାଜ ଗଢ଼ିବାର ସ୍ୱପ୍ନ ଦେଖିଥିଲେ । ବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ଛାତ୍ର–ଛାତ୍ରୀଙ୍କର ନାମ ଲେଖା ସମୟରେ ରେଜିଷ୍ଟାରରେ ବାପାଙ୍କ ନାମ ସହିତ ମା'ଙ୍କ ନାମ ଲେଖାଯିବାକୁ ବିଜୁବାବୁ ବାଧ୍ୟତାମୂଳକ କରିଥିଲେ । ଓଡିଶାର ଉନ୍ନତି ପାଇଁ ବିଜୁବାବୁ ଗ୍ରହଣ କରିଥିବା ବିଭିନ୍ନ ଯୋଜନାର ସୁଫଳ ବର୍ତ୍ତମାନ ସମାଜରେ ଉପଲବ୍‌ଧ ହୋଇପାରିଛି ।

ବର୍ଣ୍ଣାଡ ଶ'ଙ୍କ ଆତ୍ମଦର୍ଶନରେ, 'ମୁଁ ମୋର ଜୀବନ ପ୍ରଦୀପକୁ ସ୍ୱଳ୍ପ ସମୟ ପାଇଁ ପାଇଛି । ଏହା ଅନ୍ୟକୁ ହସ୍ତାନ୍ତର କରିବା ପୂର୍ବରୁ ମୁଁ ଏହାର ପ୍ରଜ୍ଜ୍ୱଳନ ଚାହେଁ ଏବଂ ଏହି ପ୍ରଜ୍ଜ୍ୱଳନର ପ୍ରଧାନ ଆୟୁଧ ହେଉଛି 'ପୌରୁଷ' ।' ପୌରୁଷ ଦ୍ୱାରା ବ୍ୟକ୍ତିତ୍ୱ ଶାଣିତ ହୋଇଥାଏ । ଉକ୍ତିଟିର ତାତ୍ପର୍ଯ୍ୟ ଏହି ଯେ, ପ୍ରସଙ୍ଗର ମହାନାୟକ ସୁଦୀର୍ଘ ବଳିଷ୍ଠ ଶରୀର ସହ ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ଅଧିକାରୀ ବିଜୟାନନ୍ଦ ପଟ୍ଟନାୟକ ଏହାର ଭୁରିଭୁରି ପ୍ରମାଣ ।

୧୯୯୭ ମସିହା ଅପ୍ରେଲ ୧୭ ତାରିଖରେ ଏହି ବିସ୍ମୟ ପ୍ରତିଭାଙ୍କର ଦେହାନ୍ତ ଘଟିବା ପରେ ବିଶ୍ୱବ୍ୟାପୀ ଦଳମତ ନିର୍ବିଶେଷରେ ସଭିଏଁ ତାଙ୍କର ଅମ୍ଳାନ ସ୍ମୃତିଚାରଣ କରିବା ସୂଚାଏ କି, ସେ ଥିଲେ ଧରାପୃଷ୍ଠର ଜଣେ ବିରଳ ବ୍ୟକ୍ତିତ୍ୱ । ବିଜୁବାବୁ ଆମ ଗହଣରେ ନାହାନ୍ତି ସତ, ମାତ୍ର ତାଙ୍କ ଦ୍ୱାରା ପ୍ରସ୍ଫୁଟିତ ତିନୋଟି ପୁଷ୍ପ 'ପ୍ରେମ, ନବୀନ ଓ ଗୀତା' ନିଜ ନିଜ କ୍ଷେତ୍ରରେ ଉତ୍କର୍ଷ ପ୍ରତିପାଦନ କରିବାରେ ଓ ତାଙ୍କ ଦ୍ୱାରା ଉପକୃତ ତଥା ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ଅନେକ ବ୍ୟକ୍ତିବିଶେଷଙ୍କ ବ୍ୟକ୍ତିତ୍ୱ ତଥା ବିଜୁବାବୁଙ୍କ କୃତି ଓ କୃତିତ୍ୱ ଭିତରେ ପ୍ରତିଷ୍ଠା ହୋଇଥିବା ଆଦର୍ଶ ରୂପକ ବତୀଘର ଯେ ଉତ୍ତରପିଢ଼ିଙ୍କୁ ମାର୍ଗଦର୍ଶନ କରୁଥିବ, ଏହା ନିଃସନ୍ଦେହ ।

ସୂଚନା ଓ ଲୋକସଂପର୍କ ବିଭାଗ
ଭୁବନେଶ୍ୱର

# ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ

**ନୃସିଂହ ଚରଣ ସାହୁ**

ନବ ଉତ୍କଳର ନିର୍ମାତା ତଥା ବିଶାଳ ଭାରତର ସ୍ୱପ୍ନଦ୍ରଷ୍ଟା ଡକ୍ଟର ହରେକୃଷ୍ଣ ମହତାବ ଜନ୍ମଗ୍ରହଣ କରିଥିଲେ ଅଗରପଡ଼ା ରାଜବାଟିରେ, ୧୮୯୯ ମସିହା ନଭେମ୍ବର ୨୧ ତାରିଖରେ। ଶୈଶବରୁ ରାଜଗାଦି ଲାଭ କରି ସହସ୍ର ମୁଖରେ ସେ ରାଜାଭାବେ ସମ୍ମାନିତ ହୋଇଥିଲେ। ମାତ୍ର ରାଜ୍ୟ ଐଶ୍ୱର୍ଯ୍ୟକୁ ପାଦରେ ଆଡେଇ ଦେଇ ଭାରତମାତାର ମୁକ୍ତି ନିମନ୍ତେ ଗାନ୍ଧିଜୀଙ୍କ ଆହ୍ୱାନରେ ସେ ସଂଗ୍ରାମର ଯଜ୍ଞକୁଣ୍ଡକୁ ଡେଇଁ ପଡିଥିଲେ। ସେ ଥିଲେ ମାତ୍ର ୨୦ ବର୍ଷର ତରୁଣ, ରେଭେନ୍ସା କଲେଜରେ ବି.ଏ. ଶେଷ ବର୍ଷର ଛାତ୍ର। ପ୍ରବଳ ପରାକ୍ରମଶାଳୀ ବ୍ରିଟିଶ ଶାସନ ବିରୁଦ୍ଧରେ ତାଙ୍କର ଏ ପ୍ରକାର ଦୁଃସାହସିକ ପଦକ୍ଷେପକୁ ଅନେକ ଅବଶ୍ୟ ଅପରିଣାମଦର୍ଶୀ କାର୍ଯ୍ୟକଳାପ ବୋଲି ମନେ କରିଥିଲେ। କିନ୍ତୁ ଇତିହାସ ପ୍ରମାଣ କରିଦେଇଗଲା, ପିତାମାତାଙ୍କ ଇଚ୍ଛା ବିରୁଦ୍ଧରେ ତାଙ୍କ ନିଷ୍ପତ୍ତି ଯଥାର୍ଥ ଥିଲା। ସେ ଥିଲେ ଦୂରଦୃଷ୍ଟିସମ୍ପନ୍ନ।

୧୯୨୦ ମସିହାରୁ ୧୯୪୬ ମସିହା ପର୍ଯ୍ୟନ୍ତ ସେ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ଅନେକବାର କାରାଦଣ୍ଡ ଭୋଗ କରିଥିଲେ। ରଣପୁର ବେଜେଲ୍‌ଗେଟ୍ ହତ୍ୟା ମୋକଦ୍ଦମାରେ ତାଙ୍କୁ ହୁଏତ ଫାଶୀ ହୋଇଯାଇଥାଆନ୍ତା ମାତ୍ର ଗାନ୍ଧିଜୀଙ୍କ ପ୍ରତ୍ୟକ୍ଷ ହସ୍ତକ୍ଷେପ ଫଳରେ ସେ ବଞ୍ଚିଗଲେ ଏବଂ ୧୯୪୬ ମସିହା ଅପ୍ରେଲ ୨୩ ତାରିଖରେ ପ୍ରଧାନମନ୍ତ୍ରୀ ଭାବେ ଓଡ଼ିଶାର ଶାସନଭାର ଗ୍ରହଣ କରି ଏହି ଅବହେଳିତ ପଛୁଆ ରାଜ୍ୟକୁ ଉନ୍ନତି ପଥରେ ଆଗେଇ ନେଇଥିଲେ।

**ଓଡ଼ିଶାର ଶାସନଭାର ଗ୍ରହଣ**



୧୯୪୬ ମସିହାରେ ଓଡ଼ିଶାରେ ନିର୍ବାଚନ ହେଲା। ନିର୍ବାଚନରେ ଓଡ଼ିଶା ବିଧାନସଭା ପାଇଁ ଉଦ୍ଦିଷ୍ଟ ୬୦ଟି ଆସନରୁ ୪୫ଟି ଆସନରେ କଂଗ୍ରେସକୁ ଜୟଯୁକ୍ତ କରାଇ ମହତାବବାବୁ ଓଡ଼ିଶାର ଶାସନଭାର ଗ୍ରହଣ କଲେ। ଓଡ଼ିଶାକୁ ଆଗେଇ ନେବାପାଇଁ ଅନେକ ଦିନ ଧରି ସେ ତିନୋଟି କାର୍ଯ୍ୟକ୍ରମ କଥା ଭାବି ଆସିଥିଲେ। ତାହା ହେଲା– ୧. ଦେଶୀୟ ରାଜ୍ୟ ମିଶ୍ରଣରେ ବୃହତ୍ତର ଓଡ଼ିଶା ଗଠନ, ୨. ଓଡ଼ିଶାକୁ ସମୃଦ୍ଧ

କରିବା ପାଇଁ ହୀରାକୁଦରେ ବନ୍ଧ ବାନ୍ଧି ମହାନଦୀର ବନ୍ୟା ନିୟନ୍ତ୍ରଣ ଓ ବିଦ୍ୟୁତ୍ ଉତ୍ପାଦନ ମାଧ୍ୟମରେ ଶିଳ୍ପ ପ୍ରତିଷ୍ଠା, ୩. ଭୁବନେଶ୍ୱରରେ ନୂତନ ରାଜଧାନୀ ନିର୍ମାଣ । ଏହି ତିନୋଟି ଯୁଗାନ୍ତକାରୀ ପଦକ୍ଷେପର ଆବଶ୍ୟକତା ସମ୍ପର୍କରେ ଲୋକଙ୍କୁ ବୁଝାଇବା ପାଇଁ ସେ ୧୯୪୭ ମସିହା ଅଗଷ୍ଟ ୮ ତାରିଖ ଦିନ ପ୍ରକାଶ କଲେ ଦୈନିକ 'ପ୍ରଜାତନ୍ତ୍ର' ।

### ଦେଶୀୟ ରାଜ୍ୟ ମିଶ୍ରଣ

ସ୍ୱାଧୀନତାପ୍ରାପ୍ତି ବେଳକୁ ଭାରତରେ ପ୍ରାୟ ୬୦୦ ଦେଶୀୟ ରାଜ୍ୟ ସ୍ୱାଧୀନ ଭାବେ ମୁଣ୍ଡ ଟେକିବାକୁ ଉଦ୍ୟମ କରୁଥିଲେ । ମାତ୍ର ମହତାବବାବୁ ନିଜର ଦୂରଦୃଷ୍ଟି ବଳରେ ଭାରତର ଉପପ୍ରଧାନମନ୍ତ୍ରୀ ସର୍ଦ୍ଦାର ପଟେଲ୍‌ଙ୍କୁ ପ୍ରଭାବିତ କରି ସେହିସବୁ ରାଜ୍ୟଗୁଡ଼ିକୁ ମିଶାଇ ବିଶାଳ ଭାରତ ନିର୍ମାଣର ମହାନ ବିନ୍ଧାଣି ସାଜିଥିଲେ । ଏହି କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା ୧୯୪୭ ମସିହା ନଭେମ୍ବର ମାସରେ ଓଡ଼ିଶା ସହ ନୀଳଗିରି ମିଶ୍ରଣରୁ । ଏହାପରେ ସେ ସର୍ଦ୍ଦାର ପଟେଲ୍‌ଙ୍କୁ ଓଡ଼ିଶା ଡକାଇ ୨୫ଟି ଗଡ଼ଜାତ ରାଜ୍ୟ ସହ ଓଡ଼ିଶାର ମିଶ୍ରଣ ବିନା ରକ୍ତପାତରେ ସମ୍ଭବ କରାଇଥିଲେ । ଏଥିସହିତ ଉତ୍କଳଗୌରବ ମଧୁବାବୁଙ୍କର ସ୍ୱପ୍ନକୁ ସାକାର କରି କ୍ଷୁଦ୍ରାୟତନ ଓଡ଼ିଶାର ଆକାରକୁ ଦ୍ୱିଗୁଣିତ କରି ଏକ ବୃହତ୍ ଓଡ଼ିଶାରେ ପରିଣତ କରିଥିଲେ ।



### ସମୃଦ୍ଧି ପାଇଁ ହୀରାକୁଦ ବନ୍ଧ ନିର୍ମାଣ

ଆଧୁନିକ ଓଡ଼ିଶାର ଶିଳ୍ପ ଓ କୃଷି ବିକାଶ କ୍ଷେତ୍ରରେ ସବୁଠାରୁ ମହନୀୟ ଅବଦାନ ଯୋଗାଇ ଦେଇଛି ହୀରାକୁଦ ବନ୍ଧ । ବନ୍ୟା ଓ ମରୁଡ଼ିର ସତତ ଶିକାର ଚିର ଦୁଃଖିନୀ ଓଡ଼ିଶାର ଦୁଃଖ ଘୁଞ୍ଚାଇବା ପାଇଁ ମହତାବବାବୁଙ୍କର ପ୍ରାଣପାତ ଉଦ୍ୟମରେ



ରୂପାୟିତ ହୋଇଥିଲା ମହାନଦୀ ନଦୀବନ୍ଧ ଯୋଜନା । ୧୯୪୪ ମସିହାରେ ମହତାବ ଅହମ୍ମଦ ନଗର ଦୁର୍ଗରେ ବନ୍ଦୀ ଥିବାବେଳେ କେନ୍ଦ୍ର ପୂର୍ତ୍ତ ଓ ଶ୍ରମ ମନ୍ତ୍ରୀ ଡ.ଆମ୍ବେଦକର ଦାମୋଦର ନଦୀବନ୍ଧ ଯୋଜନା କାର୍ଯ୍ୟକାରୀ କରିବାକୁ ଘୋଷଣା କଲେ । ଦାମୋଦର ନଦୀ ବନ୍ୟାଠାରୁ ମହାନଦୀର ବନ୍ୟା ଆହୁରି ଭୟଙ୍କର । ଓଡ଼ିଶାରେ କାହିଁକି ବନ୍ୟା ନିୟନ୍ତ୍ରଣ ଯୋଜନା କରାନଯିବ ଏହା ଭାବି ସେ ଚିନ୍ତିତ ହୋଇ ପଡ଼ିଲେ ।

୧୯୪୫ ମସିହାରେ ମହତାବବାବୁ କାରାମୁକ୍ତ ହୋଇ ଆସିବା ପରେ ଦିଲ୍ଲୀ ଯାଇ ଭାରତର ବଡ଼ଲାଟ୍‌ଙ୍କ ସହ ହୀରାକୁଦଠାରେ ମହାନଦୀ ନଦୀବନ୍ଧ ସ୍ଥାପନ ସଂକ୍ରାନ୍ତରେ ଆଲୋଚନା ଚଳାଇଲେ ଏବଂ ତାଙ୍କୁ ଓଡ଼ିଶା ଆସିବାକୁ ନିବେଦନ କଲେ । ସୁଖର କଥା ମହତାବଙ୍କ ଅନୁରୋଧକ୍ରମେ ପ୍ରଭାବିତ ହେଲେ ଡ. ଆମ୍ବେଦକର ଏବଂ ୧୯୪୫ ମସିହା ନଭେମ୍ବର ୮ ତାରିଖରେ କଟକଠାରେ ମହାନଦୀ ନଦୀବନ୍ଧ ଯୋଜନା ହୀରାକୁଦଠାରେ ନିର୍ମାଣ ହେବ ବୋଲି ଘୋଷଣା କଲେ । ୧୯୪୬ ମସିହା ମାର୍ଚ୍ଚ ମାସ ୧୫ ତାରିଖରେ ଓଡ଼ିଶାର ଗଭର୍ଣ୍ଣର ସାର୍ ହଥର୍ଣ୍ଣ ଲୁଇସ୍‌ଙ୍କ ଦ୍ୱାରା ଏହାର ଭିତ୍ତିପ୍ରସ୍ତର ସ୍ଥାପନ ହେଲା । ଏହାର ନିର୍ମାଣ ଦାୟିତ୍ୱରେ ରହିଲେ କେନ୍ଦ୍ର ବିଦ୍ୟୁତ୍ ଶକ୍ତି ଓ ଜଳସେଚନ କମିଶନର ଚେୟାର୍‌ମାନ ବିଶିଷ୍ଟ ଇଞ୍ଜିନିୟର ଡଃ. ଅଯୋଧ୍ୟାନାଥ ଖୋସଲା ।

ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ଆଣି ୧୯୪୮ ଅପ୍ରେଲ ୧୨ ତାରିଖରେ ମହତାବବାବୁ ଏହି କାର୍ଯ୍ୟର ଶୁଭ ଦେଇଥିଲେ । ସେତେବେଳେ ପଣ୍ଡିତ ନେହେରୁ କହିଥିଲେ

ହୀରାକୁଦ ବନ୍ଧ କାର୍ଯ୍ୟ ସରିଲେ କେବଳ ଯେ ଏହି ଅଞ୍ଚଳ ଉପକୃତ ହେବ ତାହା ନୁହେଁ, ସମଗ୍ର ଭାରତ, ଏପରିକି ସମଗ୍ର ପୃଥିବୀର ମଧ୍ୟ ମଙ୍ଗଳ ସାଧିତ ହେବ ।

କିନ୍ତୁ ଅନେକ ଅଧିବାସୀ ଭିଟାମାଟି ହରେଇବେ ଆଶଙ୍କା କରି ସମ୍ବଲପୁରବାସୀ ଏହି ଯୋଜନାର ତୀବ୍ର ବିରୋଧ କଲେ । ପୂର୍ବତନ ମନ୍ତ୍ରୀ ଶ୍ରୀ ବୋଧରାମ ଦୁବେ ଦିଲ୍ଲୀ ଯାଇ ତତ୍କାଳୀନ ଗଭର୍ଣ୍ଣର ସାର୍ ଚନ୍ଦୁଲାଲ୍ ତ୍ରିବେଦୀଙ୍କୁ ଭେଟି ହୀରାକୁଦ ବନ୍ଧ ବିରୋଧରେ ଆପତ୍ତି ଜଣାଇଲେ । ଏପରିକି ମହାତ୍ମା ଗାନ୍ଧୀଙ୍କୁ ଦେଖା କରି ତାଙ୍କର ସମସ୍ତ ଆପତ୍ତି ଅଭିଯୋଗ କହିଲେ । କିନ୍ତୁ ଗାନ୍ଧିଜୀ କହିଲେ ହୀରାକୁଦ ବନ୍ଧ ପାଇଁ ମୋର ସମ୍ପୂର୍ଣ୍ଣ ଆଶୀର୍ବାଦ ରହିଛି । ଓଡିଶା ଚିରଦିନ ବନ୍ୟାକ୍ଲିଷ୍ଟ ଓ ଦରିଦ୍ର ହୋଇ ରହିବା କେହି ଚାହାନ୍ତି ନାହିଁ ।

ମହତାବ ଭୀଷ୍ମପ୍ରତିଜ୍ଞା କରିଥିଲେ ହୀରାକୁଦ ବନ୍ଧ ନିର୍ମାଣ କରିବାକୁ । ଏଥିପାଇଁ ସେ ତାଙ୍କର ବୁଦ୍ଧି, ଧୈର୍ଯ୍ୟ ଓ ଦକ୍ଷତା ବାଜି ଲଗାଇ ଏହି ସ୍ୱପ୍ନକୁ ସାକାର କରିଥିଲେ ।

### ଓଡ଼ିଶାର ନୂଆ ରାଜଧାନୀ

ଗୋଟିଏ ନୂତନ ପ୍ରଦେଶର ରାଜଧାନୀ ହେବା ପାଇଁ କଟକରେ ସ୍ଥାନାଭାବ ପଡିବା କଥା ମହତାବ ଦୂରଦୃଷ୍ଟିରେ ଅନୁଭବ କରିପାରିଥିଲେ । ତେଣୁ ବହୁ ପ୍ରଭାବଶାଳୀ ଲୋକଙ୍କ ଆପତ୍ତି ସତ୍ତ୍ୱେ ସେ ଭୁବନେଶ୍ୱରରେ ନୂତନ ରାଜଧାନୀ ନିର୍ମାଣ କରାଇ ନିଜର ଦୂରଦୃଷ୍ଟିର ଆଉ ଏକ ବଳିଷ୍ଠ ପ୍ରମାଣ ଦେଇଯାଇଛନ୍ତି । ଫଳତଃ ନିର୍ମାଣ ହେବାର ଅର୍ଦ୍ଧଶତାବ୍ଦୀ ପରେ ଭୁବନେଶ୍ୱର ଏବେ ଦିନକୁ ଦିନ ନିଜର କାୟା ସ୍ୱଚ୍ଛନ୍ଦରେ ବିସ୍ତାର କରି ଭାରତର ଏକ ଆଧୁନିକ ସହରରେ ପରିଣତ ହେବାର ସୁଯୋଗ ଲାଭ କରିଛି ।

### ପ୍ରଗତିର ନୂତନ ଯୁଗ

ମହତାବଙ୍କର ଏତେ ଚେଷ୍ଟା ଓ ଯଶ ସତ୍ତ୍ୱେ ସେ ଯେତେବେଳେ ଓଡିଶାରୁ କେନ୍ଦ୍ର ମନ୍ତ୍ରିମଣ୍ଡଳର ମନ୍ତ୍ରୀ ଓ ପରେ ପରେ ରାଜ୍ୟପାଳ ହୋଇ ବମ୍ବେ ଚାଲିଗଲେ, ଓଡିଶାର କେତେକ ନେତା ଭୁବନେଶ୍ୱରରେ ନୂତନ ରାଜଧାନୀ କରାଇ ନଦେବାକୁ ଚକ୍ରାନ୍ତ ଚଳାଇଲେ । ମହତାବବାବୁ ଅନୁଭବ କଲେ, ସେ ବାହାରେ ରହିଲେ ଆଧୁନିକ ଓଡିଶା ଗଠନ ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ସେ ଯେତେଗୁଡିଏ ବଳିଷ୍ଠ ପଦକ୍ଷେପ ନେଇଥିଲେ ସେସବୁ ଧୀରେ ଧୀରେ ବନ୍ଦ ହୋଇଯିବ । ତେଣୁ ୧୯୫୬ ମସିହାରେ ଓଡିଶାକୁ ଫେରି ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ହେବା ପରେ ଜୋର୍‌ସୋର୍‌ରେ ରାଜଧାନୀ ନିର୍ମାଣ କାର୍ଯ୍ୟ ଆଗେଇ ନେଲେ । ଚାହୁଁ ଚାହୁଁ ବିଧାନସଭା ସଚିବାଳୟ, ରାଜଭବନ, ରବୀନ୍ଦ୍ରମଣ୍ଡପ, ଭଂଜକଳା ମଣ୍ଡପ, ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାୟୀ ସୌଧ, ଲଳିତକଳା, ସଂଗୀତ ନାଟକ ଓ ସାହିତ୍ୟ ଏକାଡେମୀ, ବିଜେବି କଲେଜ, ମ୍ୟୁଜିୟମ ଭବନ ସବୁ ଗଢିଉଠିଲା । ଦକ୍ଷିଣ ଓଡିଶାରେ ମାଛକୁଣ୍ଡ ଜଳବିଦ୍ୟୁତ୍ ଯୋଜନା ପ୍ରକଳ୍ପ, ରାଉରକେଲାରେ ଇସ୍ପାତ କାରଖାନା ଓ ପାରାଦ୍ୱୀପରେ କ୍ଷୁଦ୍ର ବନ୍ଦର ପ୍ରତିଷ୍ଠା ମଧ୍ୟ ମହତାବଙ୍କର ମାନସ ପ୍ରସୂତ ଥିଲା । ଯଯାତିଙ୍କ ଭଳି ଓଡ଼ିଶା ପାଇଁ ଅନେକ ଲୋକ କଲ୍ୟାଣକର କୀର୍ତ୍ତି ପ୍ରତିଷ୍ଠା କରି ସେ ଇତିହାସରେ ଅକ୍ଷୟ କୀର୍ତ୍ତି ରଖିଗଲେ ।

### ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ନବଜାଗରଣ



ମହତାବ ଛଅଟି ଉପନ୍ୟାସ ରଚନା କରିଛନ୍ତି, ଯଥା– ନୂତନଧର୍ମ, ପ୍ରତିଭା, ଅବ୍ୟାପାର, ଟାଉଟର, ତୃତୀୟ ପର୍ବ ଓ '୧୯୭୫' । ୧୯୨୧ରୁ ୧୯୭୫ ମସିହା ପର୍ଯ୍ୟନ୍ତ ଭାରତର (ନିର୍ଦ୍ଦିଷ୍ଟ ଭାବରେ ଓଡ଼ିଶାର ମଧ୍ୟ) ରାଜନୀତିକ, ସାମାଜିକ ଆଦି ଅବସ୍ଥା ଜାଣିବାକୁ ହେଲେ ଏଇ ଛଅଟି ଉପନ୍ୟାସକୁ ରସାଳ ଇତିହାସ ଭାବରେ ପଢ଼ାଯାଇପାରେ । କିପରି ବିପ୍ଳବ କରିବାକୁ ହେବ, ଚଳାଇବାକୁ ହେବ, ସମାଜର ସେବା କରିବାକୁ

ଓ କରାଇବାକୁ ହେବ – ସେ ଦିଗରେ ମହତାବ ସବୁବେଳେ ସଚେତନ ଥିବାରୁ ତାଙ୍କର ମର୍ମବାଣୀ ବା ଦର୍ଶନ ଏଇ ଛଅଟି ଉପନ୍ୟାସ ମାଧ୍ୟମରେ ପରିବେଷଣ କରିଯାଇଛନ୍ତି।

ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଉନ୍ନତିକଳ୍ପେ ତାଙ୍କର ବହୁବିଧ ଯୋଜନା ମଧ୍ୟରେ ଝଙ୍କାରର ବାର୍ଷିକ ଉତ୍ସବ, ବିଷୁବ ମିଳନ ଏବଂ ପିଲାମାନଙ୍କ ମଧ୍ୟରେ ସାରସ୍ୱତ ପ୍ରତିଭାର ବିକାଶ ପାଇଁ ମୀନାବଜାର ସଙ୍ଗଠନ ଦୁଇଟି ଅମ୍ଳାନ କୃତି। ପ୍ରତିବର୍ଷ ବିଷୁବ ସଂକ୍ରାନ୍ତିର ଦୁଇଦିନ ପୂର୍ବରୁ ସମଗ୍ର ଓଡ଼ିଶାର ବିଭିନ୍ନ ସ୍ଥାନରୁ ପ୍ରବୀଣ ଓ ନୂତନ ଲେଖକ ଲେଖିକାମାନେ ପ୍ରଜାତନ୍ତ୍ର ପ୍ରାଙ୍ଗଣରେ ସମବେତ ହୋଇ ସାହିତ୍ୟ ଆଲୋଚନାରେ ରତ ରୁହନ୍ତି। ଭାରତବର୍ଷର ଜଣେ ସୁବିଖ୍ୟାତ ସାହିତ୍ୟସ୍ରଷ୍ଟାଙ୍କୁ ଜାତୀୟ ସାହିତ୍ୟ ସମ୍ପର୍କରେ ଉଦ୍‌ବୋଧନ ଦେବାକୁ ନିମନ୍ତ୍ରଣ କରାଯାଇଥାଏ। ଶେଷ ଦିନ କୃତୀ ସାହିତ୍ୟିକମାନଙ୍କୁ ବିଭିନ୍ନ ଉପାୟନ ସହ ସମ୍ବର୍ଦ୍ଧନା ଦିଆଯାଏ। ବର୍ତ୍ତମାନ ବିଷୁବ ମିଳନ ଏକ ସାହିତ୍ୟ ପର୍ବ ଭାବରେ ଓଡ଼ିଶାର ଚାରିଆଡେ ପାଳିତ ହେଉଛି।

ସେ ନିଜେ ଜଣେ ବିଶିଷ୍ଟ ସାହିତ୍ୟିକ, ସାମ୍ବାଦିକ ଓ ଐତିହାସିକ ଥିଲେ। ସେ ସାରା ଜୀବନ ଲେଖନୀ ଚାଳନା କରୁଥିଲେ । ଯାହା ସାଧାରଣ ଜନତାଙ୍କୁ ପ୍ରେରଣା ଓ ଉତ୍ସାହ ଦେଉଥିଲା ଏବଂ ଯାହା ସାଧାରଣ ଜନତାଙ୍କର ହିତ ସାଧନ କରୁଥିଲା ତାହାହିଁ ଥିଲା ତାଙ୍କ ସାହିତ୍ୟର ପ୍ରଧାନ ଉପଜୀବ୍ୟ । ତାଙ୍କ ରଚିତ ପୁସ୍ତକମାନଙ୍କ ମଧ୍ୟରେ ପ୍ରତିଭା, ଟାଉଟର, ଅବ୍ୟାପାର, ତୃତୀୟ ପର୍ବ, ୧୯୭୫, ସାଧନାର ପଥେ, ଆରବ



ସାଗରରୁ ଚିଲିକା, ନୂତନ ଧର୍ମ, ଆନନ୍ଦ ସନ୍ଧାନ, ଗାଁ ମଜ୍‌ଲିସ୍, ସାହିତ୍ୟର ମାର୍ଗ ଉନ୍ମୋଚନ ଆଦି ପ୍ରଧାନ । ପ୍ରଜାତନ୍ତ୍ର, ମୀନାବଜାର ଓ ଝଙ୍କାର ମାଧ୍ୟମରେ ସେ ବହୁ ନୂତନ ଲେଖକ ଲେଖିକା ସୃଷ୍ଟି କରିଥିଲେ। ତାଙ୍କରି ପ୍ରେରଣା ଓ ଉତ୍ସାହ ଆଜି ଓଡିଶାର ବହୁ ସାହିତ୍ୟିକଙ୍କୁ ଆନ୍ତର୍ଜାତିକ ସ୍ତରରେ ଖ୍ୟାତି ଆଣିଦେଇଛି।

ଗାଁ ମଜ୍‌ଲିସ୍ ପାଇଁ ପରିଣତ ବୟସରେ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ମଧ୍ୟ ଲାଭ କରିଥିଲେ ।

**ମହାନୁଭବ ମହତାବ**




ସ୍ୱାଧୀନତା ସଂଗ୍ରାମୀମାନଙ୍କ ପ୍ରତି ମହତାବବାବୁଙ୍କ ଆଦର, ସମ୍ମାନ ଓ ଦରଦ ଭାବ ମୋତେ ପ୍ରଭାବିତ କରିଥିଲା। ବୁଝିଥିଲି ସ୍ୱାଧୀନତା ସଂଗ୍ରାମୀମାନଙ୍କ ମହତ୍ତ୍ୱ । ୧୯୬୭ ମସିହାରୁ ମୁଁ ପ୍ରଜାତନ୍ତ୍ରର 'ଜହ୍ନରୀଭାଇ' ଥାଏ। ବମ୍ବେର ରାଜ୍ୟପାଳ ଥିବା ସମୟରେ କଟକ ଆସିଲେ । ବାବୁ ପ୍ରଜାତନ୍ତ୍ର ପରିସର ଭିତରେ ଗୋଟିଏ ଘରେ ରହୁଥିଲେ। ସେଥିରୁ ବଖରାଏ ମୋ ରହିବା ପାଇଁ ଛାଡି ଦିଆଯାଇଥିଲା। ପ୍ରାୟ ପ୍ରତିଦିନ ଦୁଃଖ ଜଣାଇବାକୁ ଗାଁ ଗହଳର ବହୁ ଲୋକ ବାବୁଙ୍କ ପାଖକୁ ଆସନ୍ତି। ସେମାନଙ୍କ ମଧ୍ୟରେ ଥାଆନ୍ତି କେତେଜଣ ସ୍ୱାଧୀନତା ସଂଗ୍ରାମୀ ମଧ୍ୟ। ନିଜ ଦୁଃସ୍ଥ ପରିବାରର ଅଭାବ

ଅନଟନ ବିଷୟରେ ଜଣାଇ କିଛି ସାହାଯ୍ୟ, କିଛି ଆଶ୍ୱାସନା ପାଇବା ଥାଏ ସେମାନଙ୍କର ଇଚ୍ଛା। ବାବୁଙ୍କ ଦରବାର ଭାଙ୍ଗିବା ବେଳକୁ ସେମାନେ କାକୁସ୍ଥ ହୋଇ ଦୁଃଖ ଜଣାନ୍ତି। ବାବୁ ପକେଟ ଉଣ୍ଡାଳନ୍ତି। ପକେଟରେ କିଛି ନଥିଲେ ପ୍ରଜାତନ୍ତ୍ରର କ୍ୟାସିୟରଙ୍କ ପାଖକୁ ସେମାନଙ୍କୁ ପଠାନ୍ତି। ବେଳେବେଳେ କ୍ୟାସିୟର ମଧ୍ୟ ଚାଲିଯାଇଥାନ୍ତି। ତେଣୁ ବିଳମ୍ବିତ ସନ୍ଧ୍ୟାରେ ପହଞ୍ଚିଥିବା ସଂଗ୍ରାମୀମାନଙ୍କ ପାଇଁ ସେ ବ୍ୟସ୍ତ ଓ ବିବ୍ରତ ହୋଇପଡନ୍ତି। ମୋତେ ଡକରା ପଡ଼େ। ପହଞ୍ଚିଲେ ଚୁପ୍ କରି କହିବେ – ୧୫ ଟଙ୍କା ଅଛି କି? ମୁଁ ସଙ୍ଗେ ସଙ୍ଗେ ବସା ଘରୁ ଆଣି ମହତାବବାବୁଙ୍କ ହାତକୁ ୧୫ ଟଙ୍କା ବଢ଼ାଇଦିଏ ଏବଂ ସେ ଅତି ଗୁପ୍ତରେ ସେହି ଅଭାବୀ ସଂଗ୍ରାମୀ ଭାଇଙ୍କ ହାତରେ ସେତକ ଗୁଂଜି ଦିଅନ୍ତି।

ଏମିତି ପ୍ରାୟ ପ୍ରତି ମାସରେ ଥରେ ଦୁଇଥର ଘଟେ, ତେଣୁ ମୁଁ ୫୦ ଟଙ୍କା ଏହିଭଳି କାର୍ଯ୍ୟ ପାଇଁ ଅଲଗା ରଖିଦେଇଥାଏ। ଗୋଟିଏ ମାସରେ ତାଙ୍କ ଦାନ ୩ ଥରରୁ ୪ଥରକୁ ବଢ଼ିଗଲା। ତାଙ୍କୁ ପ୍ରଶ୍ନିଳ ଦୃଷ୍ଟିରେ ଚାହିଁବାରୁ ସେ କହିଲେ– ଆଜି ସିନା ଅବସ୍ଥା ବଦଳି ଯାଇଛି, ପୂର୍ବେ ମୋରି ଡାକରାରେ ହଜାର ହଜାର ନିରୀହ ଲୋକ ଭବିଷ୍ୟତର ଭଲମନ୍ଦ ଚିନ୍ତା ନକରି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ। ଅନେକ ସମୟରେ ଆମେ ସ୍ୱାଧୀନତା ସଂଗ୍ରାମରେ ମାତିଥିବାବେଳେ ଏଇମାନଙ୍କ ଘରେ ଗୋପନରେ ଆଶ୍ରୟ ଗ୍ରହଣ କରିଛୁ। ସେତେବେଳେ ଘରେ କଂସାଏ ପଖାଳ ଥିଲେ ସେମାନେ ପଖାଳ କଂସାଟିକୁ ନିଜେ ନଖାଇ କିମ୍ବା ନିଜ ପିଲାମାନଙ୍କୁ ନଦେଇ ଆମ ପାଖକୁ ସଙ୍ଗୀ ଉପରକୁ ବଢ଼ାଇ ଦେଉଥିଲେ। ଆମେ ଲୁଚିଥିବା ତିନିଚାରି ଜଣ ସଂଗ୍ରାମୀ ସେହି କଂସାଏ ପଖାଳକୁ ସମସ୍ତେ ହାତ ବୁଡାଇ ଜଣକ ପରେ ଜଣେ ଖାଉଥିଲୁ। ପଖାଳ ସାଙ୍ଗରେ ଥାଏ ଟିକେ ତେନ୍ତୁଳି, ଟିକେ ଲୁଣ।

ଦେଶ ସ୍ୱାଧୀନ ହେଲା। ଆମମାନଙ୍କର କିଛି ସିନା ଉନ୍ନତି ହେଲା, କିନ୍ତୁ ସେମାନେ ବିଶେଷ କିଛି ଲାଭବାନ ହେଲେ ନାହିଁ। ମୋରି ଡାକରାରେ ବହୁ ସଂଗ୍ରାମୀ ଘରଦ୍ୱାର ଛାଡି ଆନ୍ଦୋଳନରେ ଝାସ ଦେଇଥିଲେ। ତେଣୁ ଯଦି ଜଣେ ଅଭାବୀ ସଂଗ୍ରାମୀ ଖାଲି ହାତରେ ମୋ ପାଖରୁ କୌଣସି ଦିନ ଫେରିଯାଏ, ତେବେ ରାତି ସାରା ଛଟପଟ ହୋଇ ମୁଁ ଶୋଇପାରେ ନାହିଁ। ଗୋଟେ ଘୋର ଅପରାଧ କଲା ଭଳି ମୋର ମନେ ହୁଏ। ତୁମେ ଅନ୍ତତଃ ମାସରେ ଦୁଇ ତିନିଦିନ ମୋତେ ସେହି ଯନ୍ତ୍ରଣାରୁ ରକ୍ଷା କରୁଛ। ତେଣୁ ମୁଁ ତୁମ ପାଖରେ ବ୍ୟକ୍ତିଗତ ଭାବେ ଋଣୀ। ଏତକ କଥା ସରିଲା ବେଳକୁ ମୋ ଆଖିରୁ ଲୁହ ବହିଯାଉଥାଏ। ଏବେ ମଧ୍ୟ ତାଙ୍କର ସେହି ଦରଦୀ ହୃଦୟ କଥା ମନେ ପଡିଲେ ମୁଁ ଲୁହ ସମ୍ବରଣ କରିପାରେ ନାହିଁ। କେତେ ମହାନୁଭବ ଥିଲେ ମହତାବବାବୁ !

---

ପାଣ୍ଡବ ନଗର, ଆର.ପି–୧୨୫
ଟଙ୍କପାଣି ରୋଡ୍, ଭୁବନେଶ୍ୱର–୭୫୧୦୧୮



# ଜ୍ୟେଷ୍ଠ ସନ୍ତାନର ପୂଜା : ପ୍ରଥମାଷ୍ଟମୀ

ଡକ୍ଟର ଶରତ ଚନ୍ଦ୍ର ପରିଡ଼ା

କାହିଁ କେତେ ଯୁଗରୁ ଓଡ଼ିଶା ଭୂଇଁରେ କେତେ ପୂଜାପାର୍ବଣ ଚଳି ଆସିଛି । ଏଗୁଡ଼ିକ ଆମର ସାମାଜିକ ବିଚାର, ସଂସ୍କୃତି ତଥା ଚଳଣିକୁ ଆଧାର କରି ଗଢି ଉଠିଛି । ଏହି ସାମାଜିକ ପର୍ବପର୍ବାଣିଗୁଡ଼ିକ ଆମ ଉନ୍ନତ ଜାତୀୟ ଜୀବନର ପରିଚୟ ଦିଏ । ଜାତିର ଆର୍ଥିକ, ମାନସିକ ଓ ଆଧାତ୍ମିକ ସୁସ୍ଥତା ବିକାଶ ନିମନ୍ତେ ଏସବୁର ଭୂମିକା ଅନସ୍ୱୀକାର୍ଯ୍ୟ । ବର୍ଷର କେତୋଟି ସଂକ୍ରାନ୍ତି ପରି ବିଭିନ୍ନ ମାସର ଅଷ୍ଟମୀ ତିଥି ମଧ୍ୟ ବିଶିଷ୍ଟ ପର୍ବ ବା ଉତ୍ସବ ରୂପେ ପାଳିତ ହୋଇଥାଏ । ଏହି ପର୍ବଟି ଓଡ଼ିଶାର ନିଜସ୍ୱ ଓ ଖାଣ୍ଟି ଓଡ଼ିଆ ପର୍ବ । ଅର୍ଥାତ ଓଡ଼ିଶା କିମ୍ବା ଓଡ଼ିଆ ଘର ବ୍ୟତୀତ ଅନ୍ୟ କେଉଁଠାରେ ଏ ପର୍ବ ଏହିଭଳି ଭାବରେ ପାଳିତ ହେବାର ପ୍ରାୟତଃ ଦେଖାଯାଏ ନାହିଁ । ଅନ୍ୟ ଅଷ୍ଟମୀ ତିଥି ବିଭିନ୍ନ ଦେବାଦେବୀଙ୍କର ଜନ୍ମତିଥି ହୋଇଥିଲା ବେଳେ ଏହି ପ୍ରଥମାଷ୍ଟମୀ କୌଣସି ଦେବତାଙ୍କର ଜନ୍ମ ତିଥି ନୁହେଁ ବରଂ ଜ୍ୟେଷ୍ଠ ସନ୍ତାନଙ୍କୁ ମର୍ଯ୍ୟାଦା ଦେବାର ଏକ ସ୍ୱତନ୍ତ୍ର ଓ ପାରମ୍ପରିକ ପାରିବାରିକ ପର୍ବ । ପରିବାରରେ ଶ୍ରଦ୍ଧା, ସ୍ନେହ ଓ ସଂହତି ରକ୍ଷା ନିମନ୍ତେ ଏହା ଏକ ଚମତ୍କାର ପରିକଳ୍ପନା ।

ଓଡ଼ିଆ ପଞ୍ଜିକା ଅନୁସାରେ ମାର୍ଗଶିର ମାସ କୃଷ୍ଣ ପକ୍ଷର ଅଷ୍ଟମୀ ତିଥି ସ୍ୱକୀୟ ମହାନତାରେ ମହିମାନ୍ୱିତ । ଏହି ଦିନ ବଂଶରେ ପ୍ରଥମ ଜାତ ସନ୍ତାନ ବା ଜ୍ୟେଷ୍ଠ ପୁତ୍ର ଓ କନ୍ୟାମାନଙ୍କର ନବବସ୍ତ୍ର ପରିଧାନ, ବନ୍ଦାପନା ଓ ମିଷ୍ଟାନ୍ନ ଭକ୍ଷଣ ଆଦି ଅନୁଷ୍ଠିତ ହୁଏ । ବାସ୍ତବରେ ଏହିଦିନ ପରିବାରରେ ଜ୍ୟେଷ୍ଠ ସନ୍ତାନର ମଙ୍ଗଳ କାମନା ପୂର୍ବକ ସୁଖସମୃଦ୍ଧି ଓ ଦୀର୍ଘଜୀବନ ପାଇଁ ପୂଜାବିଧି ନିଷ୍ଠାର ସହ ପାଳନ କରାଯାଇଥାଏ । ସାଧାରଣତଃ ସ୍ନାନ ପରେ ନବବସ୍ତ୍ର ପରିଧାନ କଲାପରେ ଜ୍ୟେଷ୍ଠ ସନ୍ତାନମାନଙ୍କୁ ମା'ମାନେ ବନ୍ଦାପନା କରିଥାନ୍ତି । ପଞ୍ଚପଲ୍ଲବ ଓ ପଞ୍ଚଶସରେ କଳସ ପୂଜା ଓ ବରୁଣ ପୂଜା ହୋଇଥାଏ ।

**ପ୍ରଥମାଷ୍ଟମୀର ବୈଶିଷ୍ଟ:** ଏହିଦିନ ଏପରି ଏକ ପିଠା ପ୍ରସ୍ତୁତ ହୁଏ, ଯାହା ଅନ୍ୟ କୌଣସି ପର୍ବରେ କେବେ ହୋଇନଥାଏ । ରଜରେ ଯେପରି ପୋଡ଼ପିଠା, ଅନନ୍ତବ୍ରତ ଦିନ ଲଡୁକାକରା, ବଡ଼ ଓଷାରେ ମଣ୍ଡାପିଠା, ଚିତାଲାଗି ଅମାବାସ୍ୟାରେ ଚିତଉ ପିଠା, ମକର ସଂକ୍ରାନ୍ତିରେ ମକର ଚାଉଳ, ଧନୁସଂକ୍ରାନ୍ତିରେ ଧନୁମୁଆଁ, ବିଷୁବ ସଂକ୍ରାନ୍ତିରେ ଛେନାପଣା, ଶାମ୍ବଦଶମୀରେ ବୁଢ଼ା ଚକୁଳି ଇତ୍ୟାଦି ଓଡ଼ିଆ ଘରର ଗୋଟିଏ ଗୋଟିଏ ବିଶେଷତ୍ୱ, ସେହିପରି ପ୍ରଥମାଷ୍ଟମୀର ବିଶେଷତ୍ୱ ଏଣ୍ଡୁରି ପିଠା ।

**ଏଣ୍ଡୁରି ପିଠାର ପ୍ରସ୍ତୁତି ପ୍ରଣାଳୀ :** ଛେନା, ଗୁଡ଼ ଓ ନଡ଼ିଆପୁର ଏବଂ ଉଆପକ୍ଷିଆ ଚାଉଳ ଓ ବିରିରେ ଏହା ପ୍ରସ୍ତୁତ ହୋଇଥାଏ । ଅନ୍ୟ କୌଣସି ପିଠାରେ ହଳଦୀ ପତ୍ର ବ୍ୟବହୃତ ହୁଏ ନାହିଁ, କେବଳ ପ୍ରଥମାଷ୍ଟମୀ ଉପଲକ୍ଷେ ଏଣ୍ଡୁରି ପିଠାରେ ହଳଦୀପତ୍ର ବ୍ୟବହାର କରାଯାଏ । ଏଣୁ ଏହି ପିଠା ଅତ୍ୟନ୍ତ ସୁସ୍ୱାଦୁ, ରୁଚିକର ଓ ସୁବାସିତ ହୋଇଥାଏ । ଗୋଟିଏ ହାଣ୍ଡି ମୁହଁରେ କନାବାନ୍ଧି ସେହି ହାଣ୍ଡିକୁ ଚୁଲି ଉପରେ ରଖାଯାଏ । ଏହାକୁ 'ଅଧାରହାଣ୍ଡି' କହନ୍ତି । ଏହି ଅଧାର ହାଣ୍ଡି ଉପରେ ହଳଦୀପତ୍ରରେ ପୁରମିଶା 'ଆଣ' ଲଦି ହାଣ୍ଡି ଉପରେ ପଲମ ବା ଢାଙ୍କୁଣି ଢାଙ୍କି ଦିଆଯାଏ । କିଛି ସମୟ ପରେ ପିଠା ସିଝିଗଲେ, ତାକୁ କାଢ଼ି ଅଣାଯାଏ ଏବଂ ଏହା ହିଁ ଏଣ୍ଡୁରି ପିଠା ।

**ପ୍ରଥମାଷ୍ଟମୀ ନାମକରଣର ତାତ୍ପର୍ଯ୍ୟ :** ମାର୍ଗଶିର ମାସ କୃଷ୍ଣପକ୍ଷ ଅଷ୍ଟମୀ ଅର୍ଥାତ୍ ପ୍ରଥମ ଅଷ୍ଟମୀରେ ଏହି ପର୍ବ ପାଳିତ ହୁଏ । ମାର୍ଗଶିର ମାସକୁ ବର୍ଷର ଆଦ୍ୟମାସ ବା ପ୍ରଥମ ମାସ ବୋଲି ଗଣନା କରାଯାଇଥାଏ । ଅତୀତରେ ଏହି ମାସରୁ ବର୍ଷର ଆରମ୍ଭ ହେଉଥିଲା । ତେଣୁ ବର୍ଷର ପ୍ରଥମ ମାସର ପ୍ରଥମ ଅଷ୍ଟମୀକୁ ପ୍ରଥମାଷ୍ଟମୀ ବୋଲି କୁହାଯାଇଛି । ସକଳ ମାସ ମଧ୍ୟରେ ମାର୍ଗଶିର ମାସ ଶ୍ରେଷ୍ଠ ବୋଲି ଭଗବାନ ଶ୍ରୀକୃଷ୍ଣ ଶ୍ରୀମଦ୍ଭଗବଦ ଗୀତାରେ କହିଛନ୍ତି– ମାସାନାଂ ମାର୍ଗଶିର୍ଷୋଽହମ ଋତୁନାଂ କୁସୁମାକରଃ । ଅର୍ଥାତ୍ ମାସମାନଙ୍କ ମଧ୍ୟରେ ମୁଁ ମାର୍ଗଶିର ଓ ଋତୁମାନଙ୍କ ମଧ୍ୟରେ ମୁଁ ବସନ୍ତ । ଷଡ଼ଋତୁ ମଧ୍ୟରେ ବସନ୍ତ ଯେଉଁଭଳି ଶ୍ରେଷ୍ଠ, ବାର ମାସମାନଙ୍କ ମଧ୍ୟରେ ମାର୍ଗଶିର ମାସ ସେହିଭଳି ଶ୍ରେଷ୍ଠ । ଓଡ଼ିଆ କବି ଜଗନ୍ନାଥ ଦାସ ତାଙ୍କ ଭାଗବତରେ ପ୍ରଭୁଙ୍କ ମୁଖରେ କୁହାଇଛନ୍ତି –

ମୁଁ ସତ ଗ୍ରହଗଣ ମାଝେ । ବତ୍ସର କଳିଯୁଗ କାର୍ଯ୍ୟେ ।
ଋତୁଙ୍କ ମଧ୍ୟେ ମୁଁ ବସନ୍ତ । ଅଗ୍ରହାୟଣ ମାସ ନାଥ ।

ଏହି ଅଗ୍ରହାୟଣ ଶବ୍ଦଟି ମାର୍ଗଶିର ମାସ ପାଇଁ ପ୍ରଯୁଜ୍ୟ । ମାର୍ଗଶିର ମାସକୁ ବିହାର ଆଦି ଅଞ୍ଚଳରେ ‘ଆଗହନ’ ଏବଂ ବଙ୍ଗଳାରେ ‘ଆଘ୍ରାନ’ପ୍ରଯୁଜ୍ୟ କୁହାଯାଏ । ଜଗନ୍ନାଥ ଦାସ ଏହାକୁ ଅଗ୍ରହାୟଣ ବୋଲି ଓଡ଼ିଆ ଶବ୍ଦଟିଏ ଥୋଇଛନ୍ତି । ମାର୍ଗଶିର ମାସଟି ଶ୍ରେଷ୍ଠ ହେବାର ମୂଳରେ କାରଣ ହେଉଛି ଏହି ମାସ ଏକ ପ୍ରାଚୁର୍ଯ୍ୟର ମାସ । ନୂଆ ଫସଲ ଅର୍ଥାତ୍ ଧନ ଫସଲ ଅମଳର ମାସ । କୃଷକ ମୁଣ୍ଡଝାଳ ତୁଣ୍ଡରେ ମାରି ଦେହର ରକ୍ତକୁ ପାଣି କରି ଖରାବର୍ଷା ସହି ବର୍ଷସାରା କ୍ଷେତରେ ଯେଉଁ ହାଡ଼ଭଙ୍ଗା ପରିଶ୍ରମ କରିଥାଏ, ସେହି ପରିଶ୍ରମର ଫଳସ୍ୱରୂପ ନୂଆ ଫସଲ ଆମଦାନି କରି ଆନନ୍ଦ ଉଲ୍ଲସିତ ହୁଏ । ଏହି ମାର୍ଗଶିର ମାସରେ ହିଁ ପ୍ରଥମ ଅମଳ ଆରମ୍ଭ ହୁଏ । ଚାଷୀ ତା’ର ଖଳାକୁ ଧାନହଳା ଆଣେ ।

**ପ୍ରଥମାଷ୍ଟମୀରେ ଲକ୍ଷ୍ମୀପୂଜା :** ମାର୍ଗଶିର ମାସ ଗୁରୁବାର ଦିନ ମାଣ ବସେ । ଧନମାଣିକ ପୂଜା ପ୍ରତ୍ୟେକ ହିନ୍ଦୁଘରେ ଅନୁଷ୍ଠିତ ହୋଇଥାଏ । ଏହା ହିଁ ଲକ୍ଷ୍ମୀପୂଜା । ଆଚାଣ୍ଡାଳ ବ୍ରାହ୍ମଣ ପ୍ରତ୍ୟେକଙ୍କ ଘରେ ମାର୍ଗଶିର ମାସ ଗୁରୁବାର ଦିନ ମା’ଲକ୍ଷ୍ମୀଙ୍କର ଆବାହନ ଓ ପୂଜା ଆରାଧନା କରାଯାଇଥାଏ । ଅମଳ ହୋଇଥିବା ଫସଲରୁ ଶୁକ୍ଳବର୍ଣ୍ଣ ଧାନ ଆଣି ନୂଆ ଗୌଣି (ଧାନମପା ପାତ୍ର)ରେ ବା ଖଟୁଲିରେ ରଖି ଧାନପେଣ୍ଡା ବା କେଣ୍ଡାକୁ ବେଣୀ କରି ଥୋଇ ପୂଜା କରାଯାଏ । ରଙ୍ଗୀନ ପାଟଲୁଗାରେ ସେହି ଗୌଣି ବା ଖଟୁଲିକୁ ବୋହୂଭଳି ସଜେଇ ଆଖୁ, ମୂଳା, କଦଳୀ, ଛେନା, ନଡ଼ିଆ ଭୋଗ କରାଯାଏ । ଅରୁଆଚାଉଳକୁ ବାଟି ଖଟୁଲି, ଦେବୀ ସ୍ଥାପନ ସ୍ଥାନ ଓ ଘର ଦୁଆରମାନଙ୍କରେ ଝୋଟି ଚିତା ପକାଯାଏ । ଧୂପ ଦୀପାଦି ସହ ସୁସ୍ୱାଦୁ ବ୍ୟଞ୍ଜନ ନୈବେଦ୍ୟ ବଢ଼ାଯାଏ ।

ପରିବାରର ଜ୍ୟେଷ୍ଠ ସନ୍ତାନର ନବବସ୍ତ୍ର ପରିଧାନ ଓ ବନ୍ଦାପନା ହେବାର ବିଧିକୁ ‘ପୋଢୁଆଁ ହେବା’ କହିଥାନ୍ତି । ‘ପୋଢୁଆଁ’ ଶବ୍ଦଟି ‘ପ୍ରଥମା’ର ଅପଭ୍ରଂଶ । ସାଧାରଣତଃ ପୋଢୁଆଁ କରିବା ଦାୟିତ୍ୱ ମାମୁଙ୍କର । ଏହିଦିନ ମାମୁମାନେ ନୂଆଲୁଗା, ମିଷ୍ଟାନ୍ନ ଓ ଅନ୍ୟାନ୍ୟ ସାମଗ୍ରୀ ସହ ଭଣଜାଭାଣିଜୀ ଘରକୁ ଯାଇ ପୋଢୁଆଁ କରନ୍ତି । ସେଥିପାଇଁ ମାମୁଙ୍କୁ ଶ୍ରଦ୍ଧା ଓ ପରିହାସରେ ‘ଅଷ୍ଟମୀ ବନ୍ଧୁ’ ବୋଲି କୁହାଯାଏ । ଅବଶ୍ୟ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଘରର ଜ୍ୟେଷ୍ଠପୁତ୍ର ବା କନ୍ୟାଙ୍କୁ ବାପାମାଆମାନେ ନୂଆ ଲୁଗାପଟା ପିନ୍ଧେଇଥାନ୍ତି ।

**ଜ୍ୟେଷ୍ଠ ସନ୍ତାନର ପରିବାରରେ ଗୁରୁତ୍ୱ :** ଏହି ବିଧିରେ ସାମାଜିକ ଓ ପାରିବାରିକ ବନ୍ଧନ, ଶୃଙ୍ଖଳା ଓ ଆଦର୍ଶବୋଧ ଅତିମାତ୍ରାରେ ନିହିତ ରହିଛି । ଜ୍ୟେଷ୍ଠପୁତ୍ର ପରିବାରରେ ପିତାଙ୍କ ପରେ ପିତାଙ୍କ ପରି । ପିତାଙ୍କ ଅନୁପସ୍ଥିରେ ଘର ଚଳାଇବା ଓ ଅନ୍ୟ ଭାଇଭଉଣୀମାନଙ୍କୁ ପ୍ରତିପୋଷଣ କରିବା ଦାୟିତ୍ୱ ଜ୍ୟେଷ୍ଠପୁତ୍ର ଉପରେ ପଡ଼ିଥାଏ । ତେଣୁ ତାକୁ ସମସ୍ତେ ସମ୍ମାନ ଜଣାଇବା ଉଦ୍ଦେଶ୍ୟରେ ପ୍ରଥମାଷ୍ଟମୀ ଓ ଜ୍ୟେଷ୍ଠପୂର୍ଣ୍ଣିମା ଦିନ ବନ୍ଦାପନା କରିବାର ବିଧି ଆମ ସମାଜରେ ପ୍ରଚଳିତ । ଯିଏ ଗୃହର ବା ପରିବାରର ଭବିଷ୍ୟତ କର୍ତ୍ତା ବା ଭାବି ମୁରବି ତାକୁ ଅନ୍ୟମାନେ ବିଶେଷତଃ ସାନ ଭାଇ ଭଉଣୀମାନେ ଶ୍ରଦ୍ଧା ଓ ସମ୍ମାନ କରିବା ଶିଖନ୍ତୁ ଏବଂ ତା’ର ମଙ୍ଗଳ କାମନା କରନ୍ତୁ –ଏହା ହିଁ ଜ୍ୟେଷ୍ଠ ସନ୍ତାନ ପ୍ରତି ଏଭଳି ପୂଜାବିଧିର ସ୍ପଷ୍ଟ ସୂଚନା ।

ପ୍ରଥମାଷ୍ଟମୀର ଅନ୍ୟନାମ ‘ସୌଭାଗିନୀ ଅଷ୍ଟମୀ’ । ପୂର୍ବେ ଏହିଦିନ ସୌଭାଗିନୀ ଦେବୀଙ୍କର ପୂଜା ପ୍ରଚଳିତ ଥିଲା ।

କୃଷକ ସନ୍ତାନ ଲାଭ କରିଛି ଏବଂ ଶସ୍ୟ ମଧ୍ୟ ପାଇଛି କିମ୍ବା ଶସ୍ୟରୂପକ ସନ୍ତାନ ମଧ୍ୟ ସେ ଲାଭ କରିଛି – ଏହା ଅତ୍ୟନ୍ତ ସୌଭାଗ୍ୟର କଥା । କୃଷକ ମନ ଏଥିଲାଗି ଆନନ୍ଦିତ ଓ ଉଲ୍ଲସିତ । ସେ ଅତି ଆନନ୍ଦରେ ଏହି ତିଥିକୁ ସୌଭାଗିନୀ ଅଷ୍ଟମୀ ରୂପେ ପାଳି ଆସିଛି ।

**କାଳ ଭୈରବାଷ୍ଟମୀ:** ଏହି ପ୍ରଥମାଷ୍ଟମୀର ଅନ୍ୟ ନାମ କାଳ ଭୈରବାଷ୍ଟମୀ । ଏହି ତିଥିରେ କାଳ ଭୈରବଙ୍କର ବ୍ରତ ଓ ପୂଜାର ପ୍ରଚଳନ ଥିଲା । ଏବେ ଏହି ପୂଜା ଲୁପ୍ତ । 'ସ୍କନ୍ଦପୁରାଣ'ର 'କୋଶୀଖଣ୍ଡ'ରେ ଉଲ୍ଲେଖ ଅଛି ଯେ ମାର୍ଗଶିର ମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥିରେ କାଳ ଭୈରବଙ୍କ ନିକଟରେ ବ୍ରତ, ଉପବାସ ଓ ଜାଗରଣ ଆଦି ସମ୍ପାଦନ କଲେ ପ୍ରାଣୀମାନେ ସର୍ବପାପରୁ ମୁକ୍ତ ହୁଅନ୍ତି :

ମାର୍ଗଶିର୍ଷାସିତାଷ୍ଟମାଂ କାଳଭୈରବସନ୍ନିଧୌ
ଉପୋଷ ଜାଗରଂ କୁର୍ବନ ସର୍ବପାପୈଃ ପ୍ରମୁଚତେ ॥

'ଶିବରହସ୍ୟ'ରେ ଉଲ୍ଲେଖ ଅଛି ଯେ ବ୍ରହ୍ମାଙ୍କ ଦ୍ୱାରା ଅପମାନିତ ଶିବଙ୍କ କ୍ରୋଧ ପ୍ରଳୟ ପାଇଁ କାଳ ଭୈରବ ସୂର୍ଯ୍ୟଙ୍କ ମଧ୍ୟାହ୍ନ ଗତି ସମୟରେ ଏହିଦିନ ଜନ୍ମ ନେଲେ ଓ ପୃଥିବୀକୁ ଭୀତତ୍ରସ୍ତ କରିଥିଲେ । ଏହାକୁ 'ପାପନାଶିନୀ ଅଷ୍ଟମୀ' କୁହାଯାଏ । କାରଣ କାଳ ଭୈରବଙ୍କୁ ପୂଜା କରିବା ଦ୍ୱାରା ମଣିଷମାନେ ସକଳ ପ୍ରକାର ପାପରୁ ମୁକ୍ତିଲାଭ କରିଥାନ୍ତି । ତନ୍ତ୍ର ପରମ୍ପରାରେ ପ୍ରଥମାଷ୍ଟମୀର ରାତ୍ରିକୁ 'ଘୋରରାତ୍ର' କୁହାଯାଏ । ନବଦୁର୍ଗାଙ୍କ ମଧ୍ୟରୁ କାଳରାତ୍ରି ଅନ୍ୟତମା । ଆଦ୍ୟାଶକ୍ତି କାଳରାତ୍ରି ରୂପେ ଅବତୀର୍ଣ୍ଣା ହୋଇଥିଲେ । ଅତୀତରେ ଭୈରବ ଓ ଭୈରବୀଙ୍କୁ ଏହି ତିଥିରେ ପୂଜା କରାଯାଉଥିଲା ।

**ପ୍ରଭୁ ଲିଙ୍ଗରାଜଙ୍କ ମାମୁଘର ଯାତ୍ରା:** ଭୁବନେଶ୍ୱରରେ ଅବସ୍ଥିତ ପ୍ରଭୁ ଲିଙ୍ଗରାଜ ମହାପ୍ରଭୁଙ୍କ ମାମୁଘର ଯାତ୍ରା ହୋଇଥାଏ । ଏହି ତିଥିରେ ମହାପ୍ରଭୁ ଲିଙ୍ଗରାଜ ତାଙ୍କ ମାମୁଘର ରୂପେ ପରିଚିତ ଲିଙ୍ଗରାଜ ମନ୍ଦିର ସଂଲଗ୍ନ କପାଳିମଠକୁ ପୋଡୁଆଁ ହେବା ପାଇଁ ଯାଇଥାନ୍ତି । ଏହି ମଠର ଆରାଧ୍ୟ ଦେବତା 'ବରୁଣେଶ୍ୱର' ଓ 'ବନଦେବୀ' । ଏ ଦୁହେଁ ଲିଙ୍ଗରାଜଙ୍କର ମାମୁ-ମାଇଁ ରୂପେ ପ୍ରଖ୍ୟାତ । ଏହି ମଠ ହତାରେ ଗୋଟିଏ ପୁଷ୍କରିଣୀ ରହିଛି । ତାହା 'ପାପନାଶିନୀ' ରୂପେ ପରିଚିତ । ପ୍ରଥମାଷ୍ଟମୀ ଦିନ ଏହି ପୁଷ୍କରିଣୀର ଜଳପାନ କଲେ ପାପକ୍ଷୟ ହୁଏ ଓ ବନ୍ଧ୍ୟାନାରୀ ସନ୍ତାନବତୀ ହୁଏ ବୋଲି ପ୍ରବାଦ ରହିଛି ।

**ଉପସଂହାର:** ପ୍ରଥମାଷ୍ଟମୀ ଏକ ବିରଳ ପର୍ବ । ଏହିଦିନ ବଙ୍ଗୀୟ ପରିବାରରେ ଭଉଣୀମାନେ ବଡ଼ଭାଇମାନଙ୍କୁ ମିଷ୍ଟାନ୍ନ ଖୁଆଇ ସମ୍ବର୍ଦ୍ଧନା କରିଥାନ୍ତି । କିନ୍ତୁ ଓଡ଼ିଆ ଘରର ପ୍ରଥମାଷ୍ଟମୀଠାରୁ ଏହା ଭିନ୍ନ ।

ପ୍ଲଟ୍ ନଂ-୫୫୬/୩୭୫୧
କାନନ ବିହାର-୨, ପଟିଆ
ଭୁବନେଶ୍ୱର-୭୫୧୦୩୧



# ସଫଳତାର ଏକ ନୂତନ ଅଧ୍ୟାୟ

ଇଂ ଉଦ୍ଧବ ଚରଣ ନାୟକ

ଆମ ସମାଜରେ ରାଜ୍ୟ ବା ଦେଶ ହେଉ ଏଠାରେ ବ୍ୟକ୍ତି ଜୀବିତ ଅବସ୍ଥାରେ ଯେତେବଡ ଜ୍ଞାନୀ, ମହାପୁରୁଷ, ନିଃସ୍ୱାର୍ଥପର, ନେତୃତ୍ୱବାନ୍ ହୋଇଥିଲେ ମଧ୍ୟ ତାଙ୍କର ଗୁଣଗାନ କରାଯାଏ ନାହିଁ । ସେମାନଙ୍କୁ ଜୀବନରେ ବହୁ ସମାଲୋଚନା ଓ କୁତ୍ସାରଟନାର ସମ୍ମୁଖୀନ ହେବାକୁ ପଡ଼ିଥାଏ । କିନ୍ତୁ ତାଙ୍କର ମୃତ୍ୟୁର ଠିକ୍ ପରେ ପରେ ତାଙ୍କ ଶୋକସଭାରେ ସ୍ମୃତିଚାରଣ କରିବାକୁ ଯାଇ ତାଙ୍କର ଭୂୟସୀ ପ୍ରଶଂସା କରାଯାଇ ତାଙ୍କ ନାମରେ ଭିନ୍ନ ଭିନ୍ନ ଯୋଜନା କରାଯାଉଛି । ଯେପରି ମହାତ୍ମା ଗାନ୍ଧୀ, ଇନ୍ଦିରା ଗାନ୍ଧୀ, ସୁଭାଷ ବୋଷ, ବିଜୁବାବୁ, ମଧୁବାବୁ ପରି ମହାପୁରୁଷଙ୍କ କ୍ଷେତ୍ରରେ ଦେଖାଯାଇଛି । ସେହିପରି ଆମ ରାଜ୍ୟର ଜଣେ ମହାନ୍ ବିରଳ ବ୍ୟକ୍ତିତ୍ୱ ଆଦର୍ଶବାଦୀ ନେତା ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱର ଆଦର୍ଶ ଓଡ଼ିଶା ଇତିହାସରେ ସୃଷ୍ଟି କରିପାରିଛି ଏକ ନୂତନ ଅଧ୍ୟାୟ । ଦେଶ ସ୍ୱାଧୀନ ହେବାର ଏତେ ବର୍ଷ ପର୍ଯ୍ୟନ୍ତ ଯେଉଁ ଓଡ଼ିଶା ଏକ ପଛୁଆ, ଗରିବ ଏବଂ ଅବହେଳିତ ରାଜ୍ୟ ଭାବେ ପରିଚିତ ହେଉଥିଲା, ଆଜି ସେହି ରାଜ୍ୟ ଦେଶର ଦ୍ରୁତ ବିକାଶ ପଥରେ ଏବଂ ଅନ୍ୟ ଅଗ୍ରଗଣ୍ୟ ରାଜ୍ୟମାନଙ୍କ ମଧ୍ୟରେ ପରିଗଣିତ ହେବା କେବଳ ସମ୍ଭବ ହୋଇପାରିଛି ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନିଷ୍ଠା, ଅବିରାମ ଉଦ୍ୟମ ଓ ନିଃସ୍ୱାର୍ଥପର ବଳିଷ୍ଠ ନେତୃତ୍ୱ ପାଇଁ ଯାହାକୁ ଅସ୍ୱୀକାର କରାଯାଇପାରିବ ନାହିଁ । ଯଦି ୧୮ ବର୍ଷ ପୂର୍ବରୁ ରାଜ୍ୟର ସ୍ଥିତିକୁ ମନେ ପକାଇବା ତେବେ ରାଜ୍ୟର ଆର୍ଥିକ ଦୁରବସ୍ଥା ଏତେ ଉତ୍କଟ ଥିଲା ଯେ ସରକାରୀ କର୍ମଚାରୀ ତାଙ୍କର ମାସିକ ବେତନ ଠିକ୍ ସମୟରେ ନପାଇବା, ରାଜ୍ୟର ନିଅଣ୍ଟିଆ ବଜେଟ୍ ସାଙ୍ଗକୁ ସାଧାରଣ ବର୍ଗ, ଅନୁସୂଚିତ ଜନଜାତି ଓ ପଛୁଆ ବର୍ଗ ଦିନକୁ ଦୁଇବେଳା ପେଟପୂରା ଖାଇବାକୁ ନପାଇବା ଏହାର ଗୋଟିଏ ଗୋଟିଏ ଜ୍ୱଳନ୍ତ ଉଦାହରଣ ଥିଲା । ଠିକ୍ ଏହି ସମୟରେ ୧୯୯୯ ମସିହା ମହାବାତ୍ୟା ଧୂଳିସାତ୍ କରିଦେଲା ରାଜ୍ୟର ମେରୁଦଣ୍ଡକୁ । ୨୦୦୦ ମସିହାର ସାଧାରଣ ନିର୍ବାଚନରେ ରାଜ୍ୟବାସୀ ଭରସା କଲେ ପ୍ରବାଦ ପୁରୁଷ ବିଜୁବାବୁଙ୍କ ସୁପୁତ୍ର ନବୀନବାବୁଙ୍କ ଉପରେ । ତାଙ୍କ ଦଳ ସଂଖ୍ୟା ଗରିଷ୍ଠ ଲାଭ କରିବାରୁ ସେ ହେଲେ ରାଜ୍ୟର ନୂତନ ମୁଖ୍ୟମନ୍ତ୍ରୀ । ନୂଆ ମୁହଁ, ସରଳ ନିରାଡମ୍ବର, ନିଃସ୍ୱାର୍ଥପର ବ୍ୟକ୍ତିଜଣକ, ନିଷ୍ଠାର ସହ ରାଜ୍ୟର ଶାସନ ମଙ୍ଗକୁ ଧରିଥିଲେ । ସହଯୋଗ ପାଇଁ ହାତ ବଢାଇ ଥିଲେ ପଡୋଶୀ ରାଜ୍ୟ, ଦେଶ ଏବଂ ବିଦେଶ ଅନେକ ସଂସ୍ଥା । ତାଙ୍କର ଅକ୍ଳାନ୍ତ ପରିଶ୍ରମ, ଦୃଢ଼ ଇଚ୍ଛାଶକ୍ତି, ସୁଚିନ୍ତିତ ଯୋଜନାର ସଫଳ ରୂପାୟନ, ବିପର୍ଯ୍ୟୟର ସଫଳ ମୁକାବିଲା ଅଳ୍ପ ଦିନରେ ରାଜ୍ୟର ସ୍ଥିତିକୁ ସୁଧାରିବାରେ ସକ୍ଷମ ହୋଇଥିଲା । ଯେଉଁଥିପାଇଁ ଭୂୟସୀ ପ୍ରଶଂସାର ପାତ୍ର ହୋଇଥିଲେ ଦେଶ ତଥା ବିଶ୍ୱ ସ୍ତରରେ ଓ ସ୍ଥାନ ପାଇଥିଲେ ଚାରିକୋଟି ଓଡ଼ିଆମାନଙ୍କ ହୃଦୟରେ । ଅସହାୟ ଜନତାଙ୍କ ମୁଖରେ ହସ, ଅନୁସୂଚିତ ଜନଜାତି ଓ ପଛୁଆ ବର୍ଗ, ଦୁର୍ବଳ ଶ୍ରେଣୀର ଲୋକଙ୍କ ସାମାଜିକ ଓ ଅର୍ଥନୈତିକ ଉନ୍ନତି ବିଧାନ, ଦୁର୍ନୀତି ବିରୁଦ୍ଧରେ ଦୃଢ଼ ପଦକ୍ଷେପର ଲକ୍ଷ୍ୟନେଇ ରାଜ୍ୟବାସୀଙ୍କ ପାଇଁ ଆଣିଲେ ନୂଆନୂଆ ସଫଳ ଯୋଜନା । ନୂତନ ଅର୍ଥନୀତି ଜରିଆରେ ରାଜ୍ୟର ଋଣବୋଝକୁ ହ୍ରାସକରି ନିଅଣ୍ଟିଆ ବଜେଟକୁ ବଳକା ବଜେଟରେ ପରିଣତ କରିବା ଓ ରାଜ୍ୟର ବିକାଶ ଦିଗରେ ପ୍ରତ୍ୟେକଟି ପଦକ୍ଷେପ ତାଙ୍କୁ ଆଜି ସଫଳତାର ଶିଖରରେ ପହଞ୍ଚାଇ ପାରିଛି । ରାଜ୍ୟର

ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଶିଳ୍ପ, ରାସ୍ତା, ବିଦ୍ୟୁତ୍ ଓ ଉତ୍ପାଦନରେ ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ମଧ୍ୟ ସେ ସକ୍ଷମ ହୋଇଛନ୍ତି । ଯେଉଁଥିପାଇଁ ଆମ ରାଜ୍ୟ ଆଜି ଦେଶର ପ୍ରତ୍ୟେକ ଅଗ୍ରଣୀ ରାଜ୍ୟମାନଙ୍କ ସହ ସମକକ୍ଷ ହେବାର ସୌଭାଗ୍ୟ ପ୍ରାପ୍ତ ହୋଇପାରିଛି । ଗ୍ରାମାଞ୍ଚଳଠାରୁ ସହରାଞ୍ଚଳ ଯାଏଁ ଦ୍ରୁତ ବିଦ୍ୟୁତିକରଣ, ସାକ୍ଷରତା ହାରରେ ଅଗ୍ରଗତି, ମୁଣ୍ଡପିଛା ଆୟରେ ଅଭିବୃଦ୍ଧି, ଖାଦ୍ୟଶସ୍ୟ ଉତ୍ପାଦନରେ ଉଲ୍ଲେଖନୀୟ ବୃଦ୍ଧି, ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକଙ୍କ ସଂଖ୍ୟାହ୍ରାସ, ରାଜ୍ୟ ବଜେଟ୍ ୧ଲକ୍ଷ କୋଟି ଟଙ୍କାରୁ ଊର୍ଦ୍ଧ୍ୱକୁ ବୃଦ୍ଧି, ଶିଶୁମୃତ୍ୟୁହାର ଜାତୀୟହାର ତୁଳନାରେ ହ୍ରାସ ହେଉଛି ସରକାରଙ୍କର ବୈପ୍ଳବିକ ପଦକ୍ଷେପ । ସେହିପରି ପାନୀୟ ଜଳ ପ୍ରକଳ୍ପ, ଶୌଚାଳୟ ନିର୍ମାଣ କ୍ଷେତ୍ରରେ ଉଲ୍ଲେଖନୀୟ ପଦକ୍ଷେପ ସହ ରାଜ୍ୟ ସାମଗ୍ରିକ ବିକାଶ ଦିଗରେ ଅଗ୍ରସର ହେଉଥିବା ପ୍ରମାଣିତ ହୁଏ । ଆଜି ରାଜ୍ୟର ପ୍ରତି ଗ୍ରାମକୁ ପକ୍କା ସଡ଼କ, ଗ୍ରାମାଞ୍ଚଳ ଓ ଦୁର୍ଗମ ଅଞ୍ଚଳର ଛାତ୍ରଛାତ୍ରୀମାନଙ୍କୁ ସହରରେ ଅଧ୍ୟୟନ କରିବାର ସୁବିଧା ଯୋଗାଇ ଦିଆଯାଉଛି । ଜଣେ ଲେଖକ ଭାବେ ସେ ମାତୃଭାଷାର ମୂଲ୍ୟ ବୁଝିଛନ୍ତି । ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ବଳରେ ଆମ ମାତୃଭାଷା ଓଡ଼ିଆ ଆଜି ଦେଶରେ ଶାସ୍ତ୍ରୀୟ ମାନ୍ୟତା ଲାଭ କରିପାରିଛି । ଓଡ଼ିଆ ଭାଷାର ବିକାଶ ପାଇଁ ସ୍ୱତନ୍ତ୍ର ବିଭାଗ ପ୍ରତିଷ୍ଠା ସହ ଓଡ଼ିଆ ଭାଷା ଆୟୋଗ ଗଠନ କରିବା, ୧୦ମ ଶ୍ରେଣୀରେ ଓଡ଼ିଆରେ ଅଧିକ ନମ୍ବର ରଖିଥିବା ଛାତ୍ରଛାତ୍ରୀମାନଙ୍କୁ ପ୍ରତି ବ୍ଲକ୍ ସ୍ତରରେ ୧୦ଜଣଙ୍କୁ ୫ ହଜାର ଟଙ୍କା ପୁରସ୍କାର ରାଶି ପ୍ରଦାନ କରିବା ହେଉଛି ଗୋଟିଏ ଗୋଟିଏ ଯୁଗାନ୍ତକାରୀ ପଦକ୍ଷେପ । ସେହିପରି କ୍ରୀଡ଼ା କ୍ଷେତ୍ରରେ କ୍ରୀଡ଼ାବିତ୍‌ମାନଙ୍କୁ ଅନେକ ସୁବିଧା ଯୋଗାଇଦେବା ଓ ୯୦ ଦିନର ସ୍ୱଳ୍ପ ଅବଧି ମଧ୍ୟରେ ଅନ୍ତରାଷ୍ଟ୍ରୀୟ ହକି ଟୁର୍ଣ୍ଣାମେଣ୍ଟର ଆୟୋଜନ ସଫଳତା ପୂର୍ବକ ଓଡ଼ିଶାରେ କରାଇବା ସ୍ୱାଗତଯୋଗ୍ୟ ପଦକ୍ଷେପ । ରାଜ୍ୟ କୃଷକମାନଙ୍କୁ କୃଷିବୀମା, ସ୍ୱାସ୍ଥ୍ୟବୀମା, କୃଷି ଋଣରେ ରିହାତି, ଛାତ୍ରଛାତ୍ରୀମାନଙ୍କ ଉଚ୍ଚଶିକ୍ଷା ପାଇଁ ଶିକ୍ଷାଋଣ, ଆବାସିକ ଓ ଆଦର୍ଶ ବିଦ୍ୟାଳୟ ପ୍ରତିଷ୍ଠା, ଶିଶୁ ଜନ୍ମଠାରୁ ମୃତ୍ୟୁକାଳୀନ ସହାୟତା ରାଶି ପ୍ରଦାନ, ଗର୍ଭବତୀ ମହିଳାମାନଙ୍କୁ ଆର୍ଥିକ ସହାୟତା, କୃଷି ଶ୍ରମିକ, ନିର୍ମାଣ ଶ୍ରମିକ, ରାଜ୍ୟର କଳାକାର, ବରିଷ୍ଠ ନାଗରିକମାନଙ୍କୁ ସହାୟତା ରାଶି ଓ ଭତ୍ତା ପ୍ରଦାନ କରିବା, ବିଧବା ଓ ମହିଳାମାନଙ୍କୁ ସାମାଜିକ ସୁରକ୍ଷା ଓ ସହାୟତା ପ୍ରଦାନ କରି ଓଡ଼ିଶାର ପ୍ରତ୍ୟେକ ଜନସାଧାରଣଙ୍କ ମନୋବଳକୁ ବୃଦ୍ଧି କରାଇବା ସହ ସେମାନଙ୍କ ସ୍ୱାଭିମାନକୁ ସେ ବଜାୟ ରଖିପାରିଛନ୍ତି ।

ରାଜ୍ୟର ଉନ୍ନତି ଓ ବିକାଶ କେବଳ ସରକାରଙ୍କ ଦାୟିତ୍ୱ କହିଲେ ଠିକ୍ ହେବନି । ଏଥିପାଇଁ ପ୍ରତ୍ୟେକ ନାଗରିକଙ୍କ ଉଦ୍ୟମ ଓ ସହଯୋଗ ଆବଶ୍ୟକ । ସମୟ ସମୟରେ ସରକାରଙ୍କ ନୀତି ଓ କାର୍ଯ୍ୟକଳାପର ଗଣତାନ୍ତ୍ରିକ ପଦ୍ଧତିରେ ବିରୋଧ ବା ଅସହଯୋଗ କରାଯାଇଥାଏ । ସେଥିପାଇଁ ହରତାଳ, ବନ୍ଦ ଡାକରା ଓ ବିରୋଧ ମଧ୍ୟ କରାଯାଏ । କିନ୍ତୁ କିଛି ନକାରାତ୍ମକ ବ୍ୟକ୍ତି ବା ଅନିଷ୍ଟକାରୀ ଗୋଷ୍ଠୀଙ୍କ ଦ୍ୱାରା ପ୍ରଭାବିତ ହୋଇ ସରକାରୀ ବେସରକାରୀ ସମ୍ପତ୍ତି ନଷ୍ଟ କରାଯାଇ ପୋଡ଼ାଜଳା, ଭଙ୍ଗାରୁଜା ଭଳି କାର୍ଯ୍ୟ ଯୋଗୁଁ ବହୁ ଧନଜୀବନ ନଷ୍ଟ ହୁଏ । ରାଜ୍ୟର ସମ୍ପତ୍ତି ପ୍ରତ୍ୟେକ ଜନସାଧାରଣଙ୍କର ସମ୍ପତ୍ତି । ଏହି କ୍ଷତିର ଭରଣା ପାଇଁ କୋଟିକୋଟି ଟଙ୍କା ରାଜକୋଷରୁ ଖର୍ଚ୍ଚ ହୁଏ, ଯାହା ରାଜ୍ୟର କଲ୍ୟାଣକାରୀ ଯୋଜନା ଓ ଜନସାଧାରଣଙ୍କ ସହାୟତା ପାଇଁ ଉଦ୍ଦିଷ୍ଟ ଥାଏ । ଆମକୁ ବିକାଶ ପଥରେ ଆହୁରି ଆଗକୁ ଅଗ୍ରସର ହେବାର ଅଛି । ପ୍ରାକୃତିକ ବିପର୍ଯ୍ୟୟ, ବନ୍ୟା, ବାତ୍ୟା, ମରୁଡ଼ିଗ୍ରସ୍ତ ରାଜ୍ୟର ବିକାଶ ପାଇଁ ଶିକ୍ଷା, ସ୍ୱାସ୍ଥ୍ୟ ଏବଂ କୃଷିର ଆହୁରି ଉନ୍ନତି କରି ଆଗକୁ ବଢ଼ିବାର ଅଛି । ତେଣୁ ଆଜି ଆମ ରାଜ୍ୟର ସ୍ୱାଭିମାନ, ସମ୍ମାନ ଓ ବିକାଶ ପାଇଁ ଆମକୁ ଗୋଟିଏ ମନ ଏବଂ ଗୋଟିଏ ହୃଦୟରେ ସକାରାତ୍ମକ ପଦକ୍ଷେପ ନେଇ ରାଜ୍ୟର ବିକାଶ ଦିଗରେ ନିଜକୁ ସାମିଲ କରିବା ସମସ୍ତ ରାଜ୍ୟବାସୀଙ୍କର ଗୋଟିଏ ଲକ୍ଷ୍ୟ ହୋଇ ରହୁ ।

ଅବସରପ୍ରାପ୍ତ ବରିଷ୍ଠ ଯନ୍ତ୍ରୀ
ଅଲ୍ଲୀପୁର, ସାଲେପୁର, କଟକ



# ପାର୍ବତୀ ଗିରି ବୃହତ୍ ଉଠାଜଳସେଚନ ଯୋଜନା




କୃଷିର ବିକାଶରେ ଜଳସେଚନର ଭୂମିକା ସବୁଠାରୁ ବଡ । ବୃହତ୍ ଉଠା ଜଳସେଚନ ପ୍ରକଳ୍ପ ଜରିଆରେ କୃଷି କ୍ଷେତ୍ରକୁ ନିଶ୍ଚିତ ଜଳସେଚନର ସୁବିଧା କରିବା ପାଇଁ ରାଜ୍ୟ ସରକାର ଲକ୍ଷ୍ୟ ରଖି କାର୍ଯ୍ୟକାରୀ କରୁଛନ୍ତି 'ପାର୍ବତୀ ଗିରି ବୃହତ୍ ଉଠାଜଳସେଚନ ଯୋଜନା' । ରାଜ୍ୟର ଉଚ୍ଚା ଜମି ଅଂଚଳରେ ପାର୍ବତୀଗିରି ମେଗା ଲିଫ୍ଟ ଜଳସେଚନ ବହୁତ ଲୋକପ୍ରିୟ ହୋଇପାରିଛି । ତେଣୁ ଅଧିକ ଚାଷୀ ଯେପରି ଏହି ସୁବିଧା ପାଇପାରିବେ, ସେ ଦିଗରେ ରାଜ୍ୟ ସରକାର ଉଦ୍ୟମ ଜାରି ରଖିଛନ୍ତି । ପାର୍ବତୀ ଗିରି ମେଗା ଲିଫ୍ଟ ଜଳସେଚନ ଯୋଜନାରେ ରାଜ୍ୟର ୨୩ଟି ଜିଲ୍ଲାରେ ୧୯୯ଟି ବୃହତ୍ ଉଠାଜଳସେଚନ ସୁବିଧା ସୃଷ୍ଟି ପ୍ରକଳ୍ପ ଜରିଆରେ ୨ ଲକ୍ଷ ୮୬ ହଜାର ହେକ୍ଟରରୁ ଅଧିକ ଜମିରେ ଅତିରିକ୍ତ ଜଳସେଚନ ସୁବିଧା ପାଇଁ ଲକ୍ଷ୍ୟ ରଖାଯାଇଛି । ଆରମ୍ଭ କରାଯାଇଥିବା ୧୭୦ଟି ପ୍ରକଳ୍ପ ମଧ୍ୟରୁ ୪୭ଟି ପ୍ରକଳ୍ପ ସମ୍ପୂର୍ଣ୍ଣ କରାଯାଇ ୯ଟି ଜିଲ୍ଲାରେ ୫୦,୦୦୦ ହେକ୍ଟରରୁ ଅଧିକ ଅତିରିକ୍ତ ଜଳସେଚନ ସୁବିଧା ସୃଷ୍ଟି କରାଯାଇଛି । ମାର୍ଚ୍ଚ ୨୦୧୯ ଶେଷ ସୁଦ୍ଧା ଆଉ ୯୦ଟି ପ୍ରକଳ୍ପ ସମ୍ପୂର୍ଣ୍ଣ କରାଯାଇ ୧ ଲକ୍ଷ ହେକ୍ଟର ଅଧିକ ଜଳସେଚନ ସୁବିଧା ସୃଷ୍ଟି କରାଯିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

- ୨୦୧୯ ସୁଦ୍ଧା ଅଧିକ ୧୦ ଲକ୍ଷ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇ ଦେବା ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ପ୍ରତିଶ୍ରୁତି ଦେଇଥିବା ବେଳେ ଅଦ୍ୟାବଧି ୭ ଲକ୍ଷ ହେକ୍ଟରରୁ ଅଧିକ ଜମିକୁ ଜଳଯୋଗାଣର ସୁବିଧା କରାଯାଇଛି । ଅନ୍ୟାନ୍ୟ କାର୍ଯ୍ୟକ୍ରମ ଜରିଆରେ ଖୁବ୍‌ଶୀଘ୍ର ଆଉ ୩ ଲକ୍ଷ ହେକ୍ଟରରୁ ଅଧିକ ଜମିରେ ଜଳସେଚନ ସୁବିଧା କରାଯିବ । ଏଥିପାଇଁ ଆଗାମୀ ୫ ବର୍ଷରେ ୧୦ ହଜାର କୋଟି ଟଙ୍କା ଖର୍ଚ୍ଚ କରାଯିବା ନେଇ ସରକାର ବ୍ୟବସ୍ଥା ଗ୍ରହଣ କରୁଛନ୍ତି ।
- ଜଳସେଚନର ସୁବିଧା ପାଇଁ ରାଜ୍ୟ ସରକାରଙ୍କ ତରଫରୁ ନିମ୍ନଲିଖିତ ସଫଳତା ହାସଲ କରିଛନ୍ତି ।
- ଟିଟିଲାଗଡ ଓ ଉପର ଇନ୍ଦ୍ରାବତୀ ମଧ୍ୟମ ଜଳସେଚନ ସମ୍ପ୍ରସାରଣ କାର୍ଯ୍ୟ ସମ୍ପୂର୍ଣ୍ଣ ।
- ଅଦ୍ୟାବଧି ୮,୪୧୩ଟି ଆଡିବନ୍ଧ ସମ୍ପୂର୍ଣ୍ଣ କରାଯାଇଥିବା ବେଳେ ୪,୪୫୭ଟି ଗୋଷ୍ଠୀ ଉଠାଜଳସେଚନ ପ୍ରକଳ୍ପ ସମ୍ପୂର୍ଣ୍ଣ କରାଯାଇଛି ଏବଂ ୪,୮୧୪ଟି ଅଚଳ ଉଠାଜଳସେଚନ ପ୍ରକଳ୍ପ ପୁନଃ କାର୍ଯ୍ୟକ୍ଷମ କରାଯାଇଛି । ଏହା ସହିତ ୪୪ଟି ମେଗା ଉଠାଜଳସେଚନ ପ୍ରକଳ୍ପ ପୁନଃ କାର୍ଯ୍ୟକ୍ଷମ ହୋଇଛି ।
- ରାଜ୍ୟରେ ୪୯,୦୪୩ଟି ଗଭୀର ବୋରୱେଲ ଖନନ କାର୍ଯ୍ୟ ସମ୍ପାଦନ କରାଯାଇଛି ।

# ଜଙ୍ଗଲ ଓ ପରିବେଶ ବିଭାଗ

ରାଜ୍ୟରେ ଜଙ୍ଗଲ ଅଭିବୃଦ୍ଧି ପାଇଁ ଆମ ସରକାର 'ଆମ ଜଙ୍ଗଲ ଯୋଜନା' କାର୍ଯ୍ୟକାରୀ କରୁଛନ୍ତି । ଜୀବନଜୀବିକା ନିର୍ବାହ ନିମନ୍ତେ ଜଙ୍ଗଲ ଉପରେ ନିର୍ଭର କରୁଥିବା ଗ୍ରାମବାସୀଙ୍କର ଉନ୍ନତି ପାଇଁ ୩ଟି ପର୍ଯ୍ୟାୟରେ ୮ ବର୍ଷ ପାଇଁ ୫୦୦୦ ବନ ସୁରକ୍ଷା ସମିତି ମାଧ୍ୟମରେ ଜଙ୍ଗଲର ପୁନରୁଦ୍ଧାର କାର୍ଯ୍ୟ ସଂପାଦନ ପ୍ରକ୍ରିୟା ଜାରି ରହିଛି ।

ଅଦ୍ୟାବଧି ସବୁଜ ଓଡ଼ିଶା ମିଶନ ମାଧ୍ୟମରେ ରାଜ୍ୟରେ ୪୨ କୋଟି ଚାରା ରୋପଣ କରାଯାଇଥିବା ବେଳେ ୨୦୧୮–୧୯ ବର୍ଷରେ ଆଉ ଅଧିକ ୧୦ କୋଟି ୮୭ ଲକ୍ଷ ଚାରା ରୋପଣର ଲକ୍ଷ୍ୟ ରଖାଯାଇଛି । ଚଳିତ ବର୍ଷ ସହରାଂଚଳ ବୃକ୍ଷରୋପଣ କାର୍ଯ୍ୟକ୍ରମରେ ୧୧ ଲକ୍ଷ ୫ ହଜାର ଚାରା ରୋପଣ କରାଯାଇଛି ଏବଂ ୨୦୧୮–୧୯ ରେ ୩ ଲକ୍ଷ ୬୦ ହଜାର ଚାରା ରୋପଣ କରାଯିବାର ଯୋଜନା ପ୍ରସ୍ତୁତ କରାଯାଉଛି ।

ରାଜ୍ୟ ସରକାର କେନ୍ଦୁପତ୍ର ତୋଳାଳି ଓ କର୍ମଚାରୀମାନଙ୍କୁ ବିଭିନ୍ନ ଉପାୟରେ ପ୍ରୋତ୍ସାହିତ କରିବା ସହିତ ଅର୍ଥ ପ୍ରଦାନ କରିଥାନ୍ତି । ଏତଦ୍‌ବ୍ୟତୀତ ୭.୨୫ ଲକ୍ଷ କେନ୍ଦୁପତ୍ର ତୋଳାଳି ଓ ବନ୍ଧାଳୀଙ୍କୁ 'ଆମ ଆଦ୍‌ମୀ ବୀମା ଯୋଜନା' ଏବଂ ୧୫,୯୧୩ ନିଯୁକ୍ତ କେନ୍ଦୁପତ୍ର ତୋଳାଳି କର୍ମଚାରୀଙ୍କୁ 'ବିଜୁ ବୀମା ଯୋଜନା' ପରିସରଭୁକ୍ତ କରାଯାଇଛି । ୨୦୧୭–୧୮ ଆର୍ଥିକ ବର୍ଷରେ କେନ୍ଦୁପତ୍ର କ୍ରୟ ମୂଲ୍ୟରେ ଶତକଡ଼ା ୨୫ ଭାଗ ବୃଦ୍ଧି ଘଟିଛି । ୨୦ଟି କେନ୍ଦୁପତ୍ର ସମଷ୍ଟିରେ ପ୍ରତ୍ୟେକ ବିଡାର ମୂଲ୍ୟ ୮୦ ପଇସାରୁ ୧ ଟଙ୍କାକୁ ବୃଦ୍ଧି କରାଯାଇଛି ।

ବିଗତ ୫ ବର୍ଷ ମଧ୍ୟରେ ପବିତ୍ର ପୂଜାପୀଠ ସ୍ଥଳୀର ସଂରକ୍ଷଣ ଯୋଜନା ମାଧ୍ୟମରେ ୨୪.୭୧ କୋଟି ଅର୍ଥ ବିନିମୟରେ ୨୧୬୧ ପୀଠସ୍ଥଳୀର ସଂରକ୍ଷଣ ଓ ଆନୁଷଙ୍ଗିକ ଉନ୍ନତି ହୋଇପାରିଛି ।

୨୦୧୫– ୨୦୧୭ ମସିହା ଭାରତୀୟ ସର୍ବେକ୍ଷଣ ସଂସ୍ଥା ରିପୋର୍ଟ ଅନୁଯାୟୀ ରାଜ୍ୟରେ ୮୮୫ ବର୍ଗ କିଲୋମିଟର ଜଙ୍ଗଲ ଆଚ୍ଛାଦନ ବୃଦ୍ଧି ଘଟିଛି । କ୍ରମାଗତ ଭାବେ ବିଗତ ୬ ବର୍ଷ ମଧ୍ୟରେ ରାଜ୍ୟରେ ୪.୭୬ ପ୍ରତିଶତ ଜଙ୍ଗଲ ଆଚ୍ଛାଦନ ବୃଦ୍ଧି ଘଟିଛି ।

**ସବୁଜ ମହାନଦୀ ମିଶନ:** ରାଜ୍ୟବାସୀଙ୍କୁ ସୁବିଧା ଯୋଗାଉଥିବା ତଥା ଓଡ଼ିଶାବାସୀଙ୍କର ଜୀବନରେଖା କୁହାଯାଉଥିବା ଚିରସ୍ରୋତା ମହାନଦୀକୁ ପ୍ରଦୂଷଣ ମୁକ୍ତ ରଖିବା ଓ ଏହାର ସୁରକ୍ଷାକୁ ସୁନିଶ୍ଚିତ କରିବା ପାଇଁ ସରକାର 'ସବୁଜ ମହାନଦୀ ମିଶନ' ଆରମ୍ଭ କରିଛନ୍ତି । ଏହି ମିଶନ ଅଧୀନରେ ମହାନଦୀ, ତେଲ ଓ ଇବ୍ ନଦୀର ଦୁଇ ପାର୍ଶ୍ୱରେ ଏକ କିଲୋମିଟର ବ୍ୟାପୀ ସବୁଜ ବଳୟ ସୃଷ୍ଟି କରାଯିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ଏଥିପାଇଁ ପାଂଚବର୍ଷିଆ କାର୍ଯ୍ୟଯୋଜନା ପ୍ରସ୍ତୁତ ହୋଇଥିବାବେଳେ ଏହି ମିଶନରେ ୪୪୮ କୋଟି ଟଙ୍କା ଖର୍ଚ୍ଚ କରାଯିବାକୁ ବ୍ୟବସ୍ଥା କରାଯାଇଛି । ଏହି ଯୋଜନା ଏବେ ସଫଳତାର ସହ ଆଗେଇ ଥିବାରୁ ଋଷିକୁଲ୍ୟା, ବୈତରଣୀ ଓ ବ୍ରାହ୍ମଣୀ ଆଦି ପ୍ରମୁଖ ନଦୀ ସମେତ ସେମାନଙ୍କ ଉପନଦୀ ମଧ୍ୟ ଏହି ସବୁଜ ମିଶନ ଯୋଜନାରେ ଅନ୍ତର୍ଭୁକ୍ତ କରି କାର୍ଯ୍ୟକାରୀ କରାଯିବାକୁ ରାଜ୍ୟ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

# ଅନୁସୂଚିତ ଜନଜାତି, ଅନୁସୂଚିତ ଜାତି, ସଂଖ୍ୟାଲଘୁ ଓ ପଛୁଆବର୍ଗ କଲ୍ୟାଣ

ବିକାଶ ପ୍ରକ୍ରିୟାରେ ଜନଜାତି ଏବଂ ସଂଖ୍ୟାଲଘୁ ବର୍ଗର ସଶକ୍ତିକରଣ ନିମନ୍ତେ ରାଜ୍ୟ ସରକାରଙ୍କ ନିରନ୍ତର ପ୍ରୟାସ ଆଜି ଜାତୀୟସ୍ତରରେ ସଂଖ୍ୟାଧିକ କୀର୍ତ୍ତିମାନ ସ୍ଥାପନ କରିଛି । ସବୁ ବର୍ଗର ଜନସାଧାରଣଙ୍କ ସଶକ୍ତିକରଣ ଏବଂ ରାଜ୍ୟର ବିକାଶ ପ୍ରକ୍ରିୟାରେ ଉଭୟ ଗ୍ରାମାଂଚଳ ଓ ସହରାଂଚଳରେ ଜନସାଧାରଣଙ୍କ ସହଯୋଗିତାରେ ରାଜ୍ୟ ସରକାର ବିଶେଷ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ରାଜ୍ୟରେ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଛାତ୍ରଛାତ୍ରୀଙ୍କୁ ନିଜସ୍ୱ ସମ୍ବଳରୁ ଆବାସିକ ଶିକ୍ଷା ସୁବିଧା ଯୋଗାଇ ଦେବାରେ ଓଡିଶା ଅଗ୍ରଣୀ ।

ଅନୁସୂଚିତ ଜନଜାତି, ଅନୁସୂଚିତ ଜାତି, ସଂଖ୍ୟାଲଘୁ ଓ ପଛୁଆ ବର୍ଗ କଲ୍ୟାଣ ନିମନ୍ତେ କାର୍ଯ୍ୟକାରୀ ହେଉଥିବା ତ୍ୱରିତ ଯୋଜନାଗୁଡିକ ଏହି ସମସ୍ତ ବର୍ଗକୁ ସଶକ୍ତ ଓ ସମର୍ଥ କରିବା ସହ ସେମାନଙ୍କର ସାମାଜିକ ଓ ଅର୍ଥନୈତିକ ଜୀବନରେ ଦ୍ରୁତ ବିକାଶ ଆଣିପାରିଛି । ବିଗତ ୪ ବର୍ଷ ମଧ୍ୟରେ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଛାତ୍ରଛାତ୍ରୀଙ୍କ ହିତସାଧନ ନିମନ୍ତେ ୧୮୦୦ଟି ନୂତନ ହଷ୍ଟେଲ କାର୍ଯ୍ୟକ୍ଷମ ହୋଇଛି । ଆଉ ଅଧିକ ୭୦୦ଟି ହଷ୍ଟେଲର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି ।

**''ଅନ୍ୱେଷା'':** ୨୦୧୫–୧୬ ଆର୍ଥିକ ବର୍ଷରେ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତିର ଛାତ୍ରଛାତ୍ରୀମାନଙ୍କୁ ଗୁଣାତ୍ମକ ଶିକ୍ଷା ସୁଯୋଗ ଯୋଗାଇଦେବା ନିମନ୍ତେ ରାଜ୍ୟ ସରକାର ଅନ୍ୱେଷା ନାମକ ଯୁଗାନ୍ତକାରୀ ଯୋଜନା ନିଜସ୍ୱ ସମ୍ବଳରୁ ଆରମ୍ଭ କରିଛନ୍ତି । ଏହି ଯୋଜନାରେ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଛାତ୍ରଛାତ୍ରୀଙ୍କ ପାଇଁ ୧୭ଟି ଜିଲ୍ଲାର ୧୪୨ ଗୋଟି ସର୍ବୋତ୍କୃଷ୍ଟ ଇଂରାଜୀ ମାଧ୍ୟମ ଘରୋଇ ବିଦ୍ୟାଳୟରେ ୧୯ ହଜାର ପିଲାଙ୍କୁ ଶିକ୍ଷାଲାଭ ପାଇଁ ସୁଯୋଗ ପ୍ରଦାନ କରାଯାଉଛି ।

ଏଥିସହିତ ୬୨୦୦ରୁ ଊର୍ଦ୍ଧ୍ୱ ଛାତ୍ରାବାସରେ ୫ଲକ୍ଷ ୬୭ହଜାରରୁ ଅଧିକ ଛାତ୍ରଛାତ୍ରୀ ପ୍ରାୟ ୧୭୩୨ଟି ଆବାସିକ ବିଦ୍ୟାଳୟରେ ବିନା ଦେୟରେ ରହଣି, ଖାଦ୍ୟପେୟ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ସୁବିଧାସୁଯୋଗ ପାଇପାରୁଛନ୍ତି ।

**''ଆକାଂକ୍ଷା'':** ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଛାତ୍ରଛାତ୍ରୀମାନେ ସହରାଂଚଳରେ ରହି ଉଚ୍ଚଶିକ୍ଷା ଲାଭ କରିବା ନିମନ୍ତେ ରାଜ୍ୟ ସରକାର ଛାତ୍ରାବାସ ନିର୍ମାଣ ସ୍ୱରୂପ ଅଭିନବ ପ୍ରକଳ୍ପ ''ଆକାଂକ୍ଷା'' ଆରମ୍ଭ କରିଛନ୍ତି । ଏହି ଯୋଜନାରେ ଭୁବନେଶ୍ୱରଠାରେ ୨ ଗୋଟି ଛାତ୍ରାବାସ ଜରିଆରେ ୧୦୦୦ ସଂଖ୍ୟକ ଛାତ୍ରଛାତ୍ରୀ ଯୁକ୍ତ ୨ / ସ୍ନାତକ /ସ୍ନାତକୋତ୍ତର/ବୈଷୟିକ ଓ ବୃତ୍ତିଗତ ପାଠ୍ୟକ୍ରମରେ ଶିକ୍ଷାଲାଭ କରୁଛନ୍ତି । ବ୍ରହ୍ମପୁର, ସମ୍ବଲପୁର ଏବଂ ରାଉରକେଲାଠାରେ ଆଉ ୬ ଗୋଟି ହଷ୍ଟେଲ




ନିର୍ମାଣାଧୀନ ରହିଛି । ଏହି ଯୋଜନାରେ ଛାତ୍ରଛାତ୍ରୀମାନଙ୍କ ପାଇଁ ଦେୟମୁକ୍ତ ରହିବା, ଖାଇବା ତଥା ଅନ୍ୟାନ୍ୟ ଆନୁଷଙ୍ଗିକ ସୁବିଧା ମଧ୍ୟ ଉପଲବ୍ଧ ।

**ସଂଖ୍ୟାଲଘୁ ସଂପ୍ରଦାୟଙ୍କ କଲ୍ୟାଣ ସାଧନ**

ରାଜ୍ୟ ସରକାର ସଂଖ୍ୟାଲଘୁ ସଂପ୍ରଦାୟ ଛାତ୍ରଛାତ୍ରୀଙ୍କୁ ଆବାସିକ ସୁବିଧା ଯୋଗାଇ ଦେବା ନିମନ୍ତେ ୨୦୧୬–୧୭ ବର୍ଷରେ ଏକ ନୂତନ ଯୋଜନା ଆରମ୍ଭ କରିଛନ୍ତି । ଉକ୍ତ ଯୋଜନା ଅନୁଯାୟୀ ୪୦୦୦ ଛାତ୍ରଛାତ୍ରୀଙ୍କ ରହିବା ପାଇଁ ୪୦ଟି ହଷ୍ଟେଲ ମଞ୍ଜୁର କରାଯାଇଛି । ସଂଖ୍ୟାବହୁଳ ସଂଖ୍ୟାଲଘୁ ଜନସାଧାରଣ ବସବାସ କରୁଥିବା ଗ୍ରାମମାନଙ୍କରେ ୧୦୦ଟି ବହୁମୁଖୀ ଗୋଷ୍ଠୀ ତଥା ସାଂସ୍କୃତିକ କେନ୍ଦ୍ର ନିର୍ମାଣ କରାଯାଇଛି । ସଂଖ୍ୟାଲଘୁ ସଂପ୍ରଦାୟଙ୍କ ପାଇଁ ଥିବା ୧୦୦ ଟି ଶିକ୍ଷାନୁଷ୍ଠାନକୁ ଭିତ୍ତିଭୂମି ଓ ଶିକ୍ଷାର ବିକାଶ ନିମନ୍ତେ ୬ଲକ୍ଷ ଟଙ୍କା ଲେଖାଏଁ ଅନୁଦାନ ଯୋଗାଇ ଦିଆଯାଇଛି । ଏହି ଅର୍ଥ ଶିକ୍ଷାନୁଷ୍ଠାନର ଶ୍ରେଣୀଗୃହ କମ୍ପ୍ୟୁଟର ଲ୍ୟାବ୍ , ପାଠାଗାର, ଲ୍ୟାବ୍ ଯନ୍ତ୍ରପାତି ଓ ଅନ୍ୟାନ୍ୟ ବାବଦରେ ବ୍ୟୟ କରାଯିବ ।

ରାଜ୍ୟ ସରକାର ଅନ୍ୟାନ୍ୟ ପଛୁଆ ବର୍ଗ ଏବଂ ସାମାଜିକ ଓ ଆର୍ଥିକ ଅନଗ୍ରସର ବର୍ଗର ଛାତ୍ରଛାତ୍ରୀମାନଙ୍କର ଆବାସିକ ସୁବିଧା ନିମନ୍ତେ ଯତ୍ନଶୀଳ । ସେମାନଙ୍କ ପାଇଁ ଯଥେଷ୍ଟ ସଂଖ୍ୟକ ହଷ୍ଟେଲ ଯୋଗାଇ ଦେଇ ବିଭିନ୍ନ ସରକାରୀ ଓ ସରକାରୀ ସ୍ୱୀକୃତିପ୍ରାପ୍ତ ଶିକ୍ଷାନୁଷ୍ଠାନରେ ଉଚ୍ଚଶିକ୍ଷାର ସୁଯୋଗ ଯୋଗାଇଦେଇଛନ୍ତି । ଏହି ପରିପ୍ରେକ୍ଷୀରେ ଦଶ ହଜାର ଅନ୍ୟାନ୍ୟ ପଛୁଆ ବର୍ଗ /ସାମାଜିକ ଓ ଆର୍ଥିକ ଅନଗ୍ରସର ଛାତ୍ରଛାତ୍ରୀଙ୍କ ନିମନ୍ତେ ୧୦୦ଟି ହଷ୍ଟେଲ ମଞ୍ଜୁର କରାଯାଇଛି । ଏହି ହଷ୍ଟେଲଗୁଡିକ ରାଜ୍ୟର ୧୪ଟି ବୃହତ୍ ସହରାଂଚଳ ଏଜୁକେସନାଲ ହବ୍‌ରେ ନିର୍ମାଣ କରାଯିବ ।

**ବେସରକାରୀ ଅନୁଦାନପ୍ରାପ୍ତ ମହାବିଦ୍ୟାଳୟର ଭିତ୍ତିଭୂମିର ବିକାଶ**

ରାଜ୍ୟ ସରକାର ଉଚ୍ଚ ଶିକ୍ଷାର ମାନବୃଦ୍ଧି ନିମନ୍ତେ ସର୍ବଦା ଯତ୍ନଶୀଳ । ଦୁର୍ଗମ ଅଂଚଳରେ ତଥା ଅନୁସୂଚିତ ଜାତି/ଜନଜାତି ଓ ପଛୁଆବର୍ଗ ଛାତ୍ରଛାତ୍ରୀମାନେ କିପରି ଉତ୍ତମ ପରିବେଶ ମଧ୍ୟରେ ଶିକ୍ଷାଲାଭ କରି ନିଜର ଅନ୍ତର୍ନିହିତ ଦକ୍ଷତାର ସଂପୂର୍ଣ୍ଣ ବିକାଶ ସାଧନ କରିପାରିବେ, ସେଥିପ୍ରତି ଅନେକ ପଦକ୍ଷେପ ନେଇଥିବା ବେଳେ ଉତ୍ତମ ଶିକ୍ଷାଦାନ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ନିମନ୍ତେ ପ୍ରଥମ ପର୍ଯ୍ୟାୟରେ ସେହିସବୁ ଅଂଚଳରେ ୧୧ ଗୋଟି ମହାବିଦ୍ୟାଳୟର ଭିତ୍ତିଭୂମି ବିକାଶ ନିମନ୍ତେ ପ୍ରତ୍ୟେକ ମହାବିଦ୍ୟାଳୟ ପାଇଁ ୧ କୋଟି ୫୦ ଲକ୍ଷ ଟଙ୍କା ପ୍ରଦାନ କରିବା ପାଇଁ ସ୍ଥିର କରିଛନ୍ତି ।



# ଭିନ୍ନକ୍ଷମ ସଶକ୍ତିକରଣ

ଭିନ୍ନକ୍ଷମ କଲ୍ୟାଣ କ୍ଷେତ୍ରରେ ଓଡ଼ିଶା ଆଜି ସମଗ୍ର ଦେଶରେ ଅଗ୍ରଣୀ । ରାଜ୍ୟ ସରକାର ଅଗ୍ରାଧିକାର ଭିତ୍ତିରେ ଭିନ୍ନକ୍ଷମମାନଙ୍କ ଉନ୍ନତିସାଧନ ଦିଗରେ ବହୁବିଧ କାର୍ଯ୍ୟକ୍ରମ ପ୍ରଣୟନ କରିଛନ୍ତି ଏବଂ ଉକ୍ତ କାର୍ଯ୍ୟକ୍ରମଗୁଡିକର ସମୀକ୍ଷା ଜାରି ରଖିଛନ୍ତି ।

ଭିନ୍ନକ୍ଷମ, ବୟସ୍କ ନାଗରିକ, କିନ୍ନର, ନିଶାସକ୍ତ ବ୍ୟକ୍ତି, ଭିକ୍ଷୁକ ଓ ବାସ୍ତୁହରାମାନଙ୍କ ଦାରିଦ୍ର୍ୟ ଦୂରୀକରଣ, ସେମାନଙ୍କର ଅର୍ଥନୈତିକ ବିକାଶ ଓ ସେମାନଙ୍କୁ ସମ୍ମାନଜନକ ଜୀବନ ଓ ଜୀବିକା ଯୋଗାଇ ଦେବା ପାଇଁ ସାମାଜିକ ସୁରକ୍ଷା ଓ ଭିନ୍ନକ୍ଷମ ସଶକ୍ତିକରଣ ବିଭାଗ ଗଠନ କରାଯାଇଛି । କିନ୍ନରମାନଙ୍କୁ ରାଜ୍ୟ ସରକାର ଗୁରୁତ୍ୱ ଦେବା ସହିତ ସେମାନଙ୍କୁ ନିଜସ୍ୱ ପାଣ୍ଠିରୁ କାର୍ଯ୍ୟକାରୀ ହୋଇଥିବା ଖାଦ୍ୟ ନିରାପତ୍ତା କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରିଛନ୍ତି । କିନ୍ନରମାନଙ୍କୁ ଶିକ୍ଷା, ସ୍ୱରୋଜଗାର, ଆଇନ୍‌ଗତ ସୁରକ୍ଷା ଓ ତାଲିମ ପ୍ରଦାନ ପାଇଁ ସ୍ୱୀକୃତି ନିୟମାବଳୀ ପ୍ରସ୍ତୁତ କରାଯାଇଛି ।

**ବାଣିଶ୍ରୀ ଛାତ୍ରବୃତ୍ତି:** ରାଜ୍ୟ ସରକାର ନିଜସ୍ୱ ପାଣ୍ଠିରୁ ୨୦୧୭–୧୮ ଆର୍ଥିକ ବର୍ଷରେ ୪୪ ହଜାରରୁ ଉର୍ଦ୍ଧ୍ୱ ଭିନ୍ନକ୍ଷମ ଛାତ୍ରଛାତ୍ରୀଙ୍କୁ ବାଣିଶ୍ରୀ ଶିକ୍ଷାବୃତ୍ତି ମଂଜୁର କରିଛନ୍ତି ।

ମାନସିକ ଅନଗ୍ରସରଙ୍କ ଚିକିତ୍ସା ଓ ଥଇଥାନ ନିମନ୍ତେ କାର୍ଯ୍ୟରତ ଅନୁଷ୍ଠାନଗୁଡିକୁ ଚିହ୍ନଟ କରାଯାଇ ସେମାନଙ୍କର ସାମାଜିକ–ମାନସିକ ଏବଂ ଧନ୍ଦାମୂଳକ ଅଭିବୃଦ୍ଧି କ୍ଷେତ୍ରରେ କାର୍ଯ୍ୟରତ ୪୬ଟି ଅନୁଷ୍ଠାନଙ୍କୁ ସେମାନଙ୍କର କାର୍ଯ୍ୟ ଜାରି ରଖିବା ପାଇଁ ଆର୍ଥିକ ସହାୟତା ଯୋଗାଇ ଦିଆଯାଇଛି । ୨୧୨୧ ଜଣ ମାନସିକ ଅନଗ୍ରସର ଶିଶୁଙ୍କୁ ଆଶୁ ଉପଚାର ଯୋଗାଇ ଦିଆଯାଉଛି ।

ସାମାଜିକ ସୁରକ୍ଷା କାର୍ଯ୍ୟକ୍ରମ ପ୍ରତି ସ୍ୱତନ୍ତ୍ର ଭାବରେ ପ୍ରାଧାନ୍ୟ ଦିଆଯାଇଛି ଏବଂ ସାମାଜିକ ସୁରକ୍ଷା ଏବଂ ଭିନ୍ନକ୍ଷମ ସଶକ୍ତିକରଣ ବିଭାଗ ଜରିଆରେ ପ୍ରତି ମାସରେ ୪୩ ଲକ୍ଷ ୪୫ ହଜାର ହିତାଧିକାରୀଙ୍କୁ ଭତ୍ତା ପ୍ରଦାନ କରାଯାଉଛି ।

୮୦୧୬ ଜଣ ଭିନ୍ନକ୍ଷମ ହିତାଧିକାରୀ ବ୍ୟାଙ୍କ ଋଣ ଓ ମୁଖ୍ୟମନ୍ତ୍ରୀଙ୍କ ସହାୟତା ପାଣ୍ଠି ଜରିଆରେ ସ୍ୱରୋଜଗାର ଲକ୍ଷ୍ୟରେ ସ୍ୱାବଲମ୍ବୀ କରାଯାଇଛି । ୪ଗୋଟି ନିଯୁକ୍ତି ମେଳା ଆୟୋଜନ କରାଯାଇ ୧୨୩୨ ଭିନ୍ନକ୍ଷମଙ୍କୁ ନିଯୁକ୍ତି ନିମନ୍ତେ ମନୋନୟନ କରାଯାଇଛି ।

୧୯ ଜଣ ଭିନ୍ନକ୍ଷମ ବ୍ୟକ୍ତି ବିଶେଷଙ୍କୁ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ନିମନ୍ତେ ରାଜ୍ୟ ସରକାର ପୁରସ୍କାର ପ୍ରଦାନ କରିଛନ୍ତି । ଭୁବନେଶ୍ୱରଠାରେ ଭିନ୍ନକ୍ଷମଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର ପାଠାଗାର ଓ ସ୍ୱରୋଜଗାର ନିମନ୍ତେ ତାଲିମ ତଥା ଉତ୍ପାଦନ କେନ୍ଦ୍ର ରାଜ୍ୟ ସରକାର ପ୍ରତିଷ୍ଠା କରିଛନ୍ତି ।

ରମାଦେବୀ ମହିଳା ବିଶ୍ୱବିଦ୍ୟାଳୟ ପରିସରରେ ଏକ ଭିନ୍ନକ୍ଷମ ଛାତ୍ରୀ ନିବାସ କାର୍ଯ୍ୟକ୍ଷମ ହୋଇଛି । ଜଟଣୀଠାରେ ଭିନ୍ନକ୍ଷମମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଶିଳ୍ପ ତାଲିମ କେନ୍ଦ୍ର ପ୍ରତିଷ୍ଠା ହୋଇଛି ।

# କଳିଙ୍ଗର ପ୍ରାଚୀନ ନୌବାଣିଜ୍ୟ

**ଶରତ ଚନ୍ଦ୍ର ମଲ୍ଲ**

ଆମର ପୂର୍ବ ପୁରୁଷମାନେ ଖ୍ରୀଷ୍ଟ ଜନ୍ମର ବହୁ ବର୍ଷ ପୂର୍ବରୁ ଅର୍ଥାତ୍ ଇତିହାସ ଲେଖା ଆରମ୍ଭ ହେବା ପୂର୍ବରୁ ଜାଭା, ବାଲି, ଚମ୍ପା, ସୁମାତ୍ରା, ସିଂହଳ, ଗ୍ରୀସ୍, ରୋମ ଓ ଆରବ ଦେଶରେ ପହଞ୍ଚି ସାରିଥିଲେ । ଯାହା ଜଣାପଡ଼େ ଅତି କମ୍‌ରେ ଖ୍ରୀଷ୍ଟପୂର୍ବ ୬୦୦ରୁ କଳିଙ୍ଗର ବୋଇତ ଜାଭା, ବାଲି, ସିଂହଳ ଓ ବ୍ରହ୍ମଦେଶରେ ପହଞ୍ଚୁଥିଲା । ଖ୍ରୀଷ୍ଟପୂର୍ବ ୩୦୦ରେ ଭାରତକୁ ଆସିଥିବା ଗ୍ରୀକ୍ ପର୍ଯ୍ୟଟକ ମେଘାସ୍ଥିନସ୍‌ଙ୍କ ବିବରଣୀ ଓ ୮୦–୮୯ ଖ୍ରୀଷ୍ଟାବ୍ଦରେ ଆସିଥିବା ଗ୍ରୀସ୍ ଦେଶର ଅଜଣା ଭୂଗୋଳବିତ୍‌ଙ୍କ ପେରିପ୍ଲସ୍ ପୁସ୍ତକରେ ତାଙ୍କର କଳିଙ୍ଗରୁ ମାଳୟ ପର୍ଯ୍ୟନ୍ତ ଜଳଯାତ୍ରା କଥା ଲେଖିଯାଇଛନ୍ତି । ଏଥିରୁ ଖ୍ରୀଷ୍ଟଜନ୍ମ ଢେର ଆଗରୁ ନୌବାଣିଜ୍ୟ ଆରମ୍ଭ ହୋଇଥିଲା ଏହା ସୁନିଶ୍ଚିତ ।

ସାରା ପୃଥିବୀର ଭୌଗଳିକ ଓ ଐତିହାସିକମାନେ କଳିଙ୍ଗର ପୁରାତନ ନୌବାଣିଜ୍ୟ ବିଷୟରେ ପୌରାଣିକ ତଥ୍ୟ କହୁଥିବା ବେଳେ ସେସବୁର ପ୍ରମାଣ ଆମ ଦେଶରେ ଦେଖିବାକୁ ମିଳେନାହିଁ । ଅନ୍ୟଦେଶ ଯଥା– ଜାଭା, ସୁମାତ୍ରା, ସିଂହଳ, ବ୍ରହ୍ମଦେଶ ଓ ବାଲିଦୀପରୁ କଳିଙ୍ଗ ନୌବାଣିଜ୍ୟ ସମ୍ପର୍କରେ ବଳିଷ୍ଠ ତଥ୍ୟ ମିଳୁଥିଲେ ମଧ୍ୟ ଆମର ଇତିହାସ ଏ ସମ୍ପର୍କରେ ନିରବତାର କାରଣ ଆମର ସଚେତନତାର ଅଭାବ । ଭାସ୍କୋଡ଼ାଗାମା ୧୪୯୮ରେ ଭାରତକୁ ଜଳପଥ ଆବିଷ୍କାର କରିବା ପରେ ପର୍ତ୍ତୁଗୀଜ୍‌ମାନେ ଆସି ପଶ୍ଚିମ ଉପକୂଳରେ ମାଲବାରଠାରେ ବାଣିଜ୍ୟ ଆରମ୍ଭ କଲେ । କିନ୍ତୁ ସେଠାରେ ପିପଳୀ ଓ ମସଲା ଜିନିଷ କିଣିବାର ବିଶେଷ ସୁବିଧା ନଥିବାରୁ ପୂର୍ବ ଉପକୂଳ ଆଡ଼େ ତାଙ୍କ ଭାଷାରେ ଦ୍ୱିତୀୟ ସମୁଦ୍ର ଆଡ଼େ ମୁହାଁଇଲେ । ସେତେବେଳକୁ ଅର୍ଥାତ୍ ୧– ଓଡ଼ିଶା ଉପକୂଳବର୍ତ୍ତୀ, ୨– ବେଙ୍ଗଲ ଉପକୂଳବର୍ତ୍ତୀ ସମୁଦ୍ରତଟ ବନ୍ଦରମାନଙ୍କରେ ବାଣିଜ୍ୟରେ ପାରମ୍ପାରିକ ସୁନାମ ଅର୍ଜନ କରିସାରିଥିଲେ ମଧ୍ୟ ଅତି ପ୍ରାଚୀନ କାଳରୁ ୧୭ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ନୌବାଣିଜ୍ୟ ବଙ୍ଗଳା ଓ ମାନ୍ଦ୍ରାଜଠାରୁ ଢେର ଆଗରେ ଥିବାରୁ ପର୍ତ୍ତୁଗୀଜମାନେ ଓଡ଼ିଶାକୁ ପ୍ରଥମ ସ୍ଥାନ ଭାବେ ବାଛିନେଇ ବାଲେଶ୍ୱରଠାରେ ପହଞ୍ଚୁଥିଲେ ।

ସୋମବଂଶ ରାଜତ୍ୱ କାଳରେ ଏକାଦଶ ଶତାବ୍ଦୀରେ ମହାନଦୀ ଓ ତେଲନଦୀର ମିଳନ ସ୍ଥଳରେ ସୁବର୍ଣ୍ଣପୁର ଏକ ବନ୍ଦର ଥିଲା ବୋଲି ତଥ୍ୟ ମିଳୁଛି । ସେହିପରି ଗଙ୍ଗ ରାଜତ୍ୱର କେତେକ ଶିଳା–ଲେଖାରୁ କଳିଙ୍ଗପଟନମ୍ ଓ ବିମଳିପଟ୍‌ନମ ବନ୍ଦର ଦୁଇଟିର ଅବସ୍ଥିତ ଜଣାପଡ଼େ । ସେତେବେଳେ ସେହି ବନ୍ଦରମାନଙ୍କରୁ ଲୁଗା, ଚାଉଳ, ଲୁଣ, କାଠ, ହାତୀଦାନ୍ତର କାରୁକାର୍ଯ୍ୟ ଶଙ୍ଖ, ହୀରା, ହାତୀ ରପ୍ତାନୀ କରାଯାଉଥିଲା । ଓଡ଼ିଶା ସେତେବେଳେ ରୂପା, ତମ୍ବା (ଶ୍ରୀଲଙ୍କାରୁ), ମସଲା, ଲବଙ୍ଗ (ଜାଭା, ସୁମାତ୍ରାରୁ)ଚୀନରୁ ଟସର ବସ୍ତ୍ର ଆମଦାନୀ କରାଯାଉଥିବାର ପ୍ରମାଣ ଅଛି ।

୧୫୧୪ରେ ପର୍ତ୍ତୁଗୀଜ୍‌ମାନେ ପୂର୍ବଉପକୂଳରେ ପହଞ୍ଚି ପିପିଲିଠାରେ ବାଣିଜ୍ୟ ଓ ବୋଇତ ନିର୍ମାଣ କାରଖାନା ଆରମ୍ଭ କଲେ । ତାଙ୍କ ପରେ ସେମାନେ ଆସି ବାଣିଜ୍ୟ କେନ୍ଦ୍ର ସ୍ଥାପନ କରି ବାଣିଜ୍ୟ ମଧ୍ୟ କରୁଥିଲେ । ତା'ପରେ ଅପ୍ରେଲ ୧୬୩୩ରେ ଇଂରେଜମାନେ ମୁସଲିମ୍‌ପଟମ୍‌ରୁ ବାହାରି ମହାନଦୀ ତ୍ରିକୋଣଭୂମିର ହରିଶପୁରଠାରେ କାରଖାନା ଆରମ୍ଭ କଲେ । ତା'ପରେ କମ୍ପାନୀ ତରଫରୁ ୩ଜଣ (ବାର୍ଟରାଇଟ୍,

ଏଡ୍‌ୱାର୍ଡ଼ ପିଟରଫୋର୍ଡ଼ ଓ ଉଇଲିୟମ ଉଇଟାଲ) ସାହେବ ୫ ମଇ ୧୬୩୩ରେ ବାଲେଶ୍ୱରଠାରେ ପହଞ୍ଚିଥିଲେ। ସେମାନେ ମୋଗଲ ସମ୍ରାଟ ଶାହାଜାହାନଙ୍କଠାରୁ ହରିହରପୁର, କଟକ ଓ ବାଲେଶ୍ୱରଠାରେ ବିନା ଟିକସରେ ବାଣିଜ୍ୟ କରିବା ପାଇଁ ଅନୁମତି ନେଇ୧୬୩୪ରେ ପହଞ୍ଚିଥିଲେ। ପରେ ୧୬୩୭ରେ ହରିହରପୁରଠାରେ କାରଖାନା ନକରି ବାଲେଶ୍ୱରଠାରେ କାରଖାନା ଓ ବାଣିଜ୍ୟ କୋଠି ଆରମ୍ଭ କଲେ। ତେଣୁ ପର୍ତ୍ତୁଗୀଜ, ଡଚ୍ ଓ ଇଂରେଜ ୩ ଦେଶର ଲୋକେ ବାଣିଜ୍ୟ କରିବା ପାଇଁ ବାଲେଶ୍ୱରଠାରେ ପ୍ରତିଯୋଗିତା ଆରମ୍ଭ କଲେ। ବଙ୍ଗଳାର ମୋଗଲ ସୁବାଦାର ସୁଜାଙ୍କଠାରୁ ଅଧିକ ଜମି ହାସଲ କରିବା ପାଇଁ କିଛି ଉପଢ଼ୌକନ ନେଇ ଇଂରେଜ କମ୍ପାନୀ ଢାକାରେ ୧୬୫୦ରେ ପହଞ୍ଚିଥିଲେ । ଉଦେଶ୍ୟ ହେଲା ବାଲେଶ୍ୱରଠାରେ ଡଚ୍‌ମାନଙ୍କୁ ବାଲେଶ୍ୱରରୁ ବାହାର କରିବା । ତେଣୁ ବାଲେଶ୍ୱରଠାରେ ବାରୁଦ କାରଖାନା ଓ କମ୍ପାନୀର ବାଣିଜ୍ୟ କୋଠି ବଢ଼ାଇଲେ। କାରଣ ତୂଳା ଓ ଟସର ଲୁଗା ବ୍ୟବସାୟ ଭଲ ଚାଲୁଥିଲା। ୧୬୫୦ ବେଳକୁ ଡଚ୍‌ମାନଙ୍କୁ ପଛରେ ପକାଇ ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀ ବାଣିଜ୍ୟ କ୍ଷେତ୍ରରେ ଆଗୁଆ ହୋଇପାରିଥିଲେ। କାରଣ ବାଲେଶ୍ୱର ଓ ସୋରୋର ପ୍ରସିଦ୍ଧ 'ସୁନା ଲୁଗା ବ୍ୟବସାୟଙ୍କୁ ଦଲାଲଙ୍କ ଜରିଆରେ ଏକଚାଟିଆ କରି ସବୁ ଲୁଗାପଟା ନିଜେ କିଣିଲେ। ସେଥିପାଇଁ କ୍ଷେମଚାନ୍ଦ ନାମକ ଦଲାଲକୁ ସୋରୋର ସବୁ ଲୁଗା କିଣିବା ପାଇଁ ବ୍ୟବସ୍ଥା କରିଥିଲେ। ତା' ବ୍ୟତୀତ କଟକ, ହରିହରପୁର, ପୁରୀ ଓ ଗଞ୍ଜାମର ଲୁଗା କିଣି ବାଲେଶ୍ୱରବାଟେ ବିଦେଶକୁ ରପ୍ତାନୀ କଲେ। ୧୬୭୦ ବେଳକୁ ଦେଖାଗଲା ଯେ, ବାଲେଶ୍ୱରର ପାଖଆଖରୁ କିଣାଯାଉଥିବା ଲୁଗାଠାରୁ କଟକ, ପୁରୀରୁ ଆସୁଥିବା ଲୁଗା କମ୍ ମୂଲ୍ୟ ପଡୁଛି। ବାଟରେ ବିଭିନ୍ନ ସ୍ଥାନରେ ଟିକସ ଦେଲାପରେ ମଧ୍ୟ ମୂଲ୍ୟ କମ୍ ଥିଲା। ଇଂରେଜ ସେସମୟରେ ଅର୍ଥାତ୍ ୧୬୮୨–୮୩ରେ ୩୨ ହଜାର ପାଉଣ୍ଡ ମୂଲ୍ୟର ଲୁଗା କିଣିଥିଲେ ବୋଲି ଜଣାଯାଏ। ଏହା ଫଳରେ ବାଲେଶ୍ୱର ବନ୍ଦର କଲିକତା, ଚିନସୁରା ଭଳି ଉନ୍ନତ ବନ୍ଦରରେ ପରିଣତ ହୋଇଗଲା।

୧୭୫୧ ଖ୍ରୀଷ୍ଟାବ୍ଦରେ ଉତ୍ତର ଓଡ଼ିଶାର ଶାସନ (ଚିଲିକାଠାରୁ ଉତ୍ତର) ମରହଟ୍ଟାମାନଙ୍କ ହାତକୁ ମୋଗଲମାନଙ୍କଠାରୁ ଗଲା। ମରହଟ୍ଟାମାନେ ସ୍ଥିର ଶାସନ ନଦେଲେ ନାହିଁ ସେମାନଙ୍କ ବର୍ଗୀ ଆକ୍ରମଣକୁ ବନ୍ଦ ନକରି ବରଂ ଉତ୍ସାହିତ କଲେ। ତେଣୁ ଉତ୍ତର ଓଡ଼ିଶାରେ ସେମାନଙ୍କର ଲୁଟ୍, ରାହାଜାନୀ ଏକ ନିତିଦିନିଆ ଘଟଣାରେ ପରିଣତ ହେଲା। ପ୍ରାୟ ସବୁ ତାଲୁକଦାର ଓ ଧନୀମାନଙ୍କ ଘରେ ପଶି ସୁନା, ରୂପା ଆଦି ଚଳନ୍ତି ସମ୍ପତ୍ତି ନିୟମିତ ଭାବରେ ପ୍ରତିବର୍ଷ ଲୁଟ୍ କରିବାରେ ଲାଗିଲେ। ତେଣୁ ଲୋକମାନେ ଦିନକୁ ଦିନ ଗରିବ ହେବାରେ ଲାଗିଲେ। ଉଦାହରଣ ସ୍ୱରୂପ ଯାଜପୁର ଓ ବରୁହାଁ ପ୍ରଗନାର ଚୌଧୁରୀ ଓ ତାଲୁକଦାରଙ୍କ ଘର ଓଡ଼ିଶାର ସଡ଼କ ପାଖରେ ଥିବାରୁ ପ୍ରତିବର୍ଷ ଫସଲ ଅମଳ ପରେ ଲୁଟ୍ ହେଉଥିଲା। ମାତ୍ର କେତେକ ଅଶ୍ୱାରୋହୀ ବର୍ଗୀ ଗାଁ ଗାଁ ଲୁଟ୍ କଲେ ଓ ଅରାଜକତା ବଢ଼ିଚାଲିଲା।

ମରହଟ୍ଟାମାନେ ରକ୍ତପିପାସୁ ନଥିଲେ ସତ, କିନ୍ତୁ ବର୍ଗୀ ସୈନ୍ୟମାନେ ଦରମା ପାଉ ନଥିଲେ। ସେମାନେ ଯାହା ଲୁଟ୍ କରି ଆଣନ୍ତି ମରହଟ୍ଟା ଶାସକମାନଙ୍କୁ ଶତକଡ଼ା ଦଶଭାଗ ଦିଅନ୍ତି। ତେଣୁ ଶାସକ ହୋଇ ମଧ୍ୟ ଏସବୁ ଚାଲୁ ରଖିଥିଲେ। ବଙ୍ଗଳାର ସୁବାଦାର ଓ ଓଡ଼ିଶାର ମୋଗଲ ଶାସକ ମରହଟ୍ଟାମାନଙ୍କର ଆକ୍ରମଣ ଓ ଲୁଟ୍‌ପାଟ ବନ୍ଦ ନକରି ପରିଶେଷରେ ଓଡ଼ିଶାକୁ ବର୍ଗୀମାନଙ୍କୁ ଦେଇଦେଲେ। ସେହି ୧୮୦୩ ପର୍ଯ୍ୟନ୍ତ ୫୨ ବର୍ଷର ଶାସନ ଓ ୧୮ଶ ଶତାବ୍ଦୀର କିଛି ବର୍ଷ ଭିତରେ ଓଡ଼ିଶାର ମେରୁଦଣ୍ଡ ଭାଙ୍ଗିଗଲା। ବାଲେଶ୍ୱର ସୋରୋ ଆଦିର ତନ୍ତୀ ଓ ଚାଷୀମାନେ ଗାଁ ଗଣ୍ଡା, ଘରଦ୍ୱାରା ଛାଡ଼ି ବଣ ଜଙ୍ଗଲରେ ଲୁଚିବାକୁ ବାଧ୍ୟ ହେଲେ। ତେଣୁ ଧାନ ଓ କପା ଉତ୍ପାଦନ କମି ବ୍ୟବହାର ହୋଇ ନପାରିବାରୁ ବାଲେଶ୍ୱର ବନ୍ଦରର ଅଧୋଗତି ଦେଖାଦେଲା।

ଓଡ଼ିଶାରେ ନୌବାଣିଜ୍ୟ ନିମନ୍ତେ ଉଦ୍ଦିଷ୍ଟ ପ୍ରମୁଖ ବନ୍ଦରଗୁଡ଼ିକ ପ୍ରତ୍ୟେକ ନଦୀର ମୁହାଣରେ ଅବସ୍ଥିତ ହୋଇଥିବାରୁ ସେଠାରେ ବାଣିଜ୍ୟ କେନ୍ଦ୍ରମାନ ପ୍ରତିଷ୍ଠା ହୋଇଥିଲା। ବିଭିନ୍ନ ନଦୀ ବାଟ ଦେଇ ଏପରିକି ସମ୍ବଲପୁର, ବଲାଙ୍ଗୀରରୁ ପଣ୍ୟଦ୍ରବ୍ୟ ଅଣାଯାଇ ବାଲେଶ୍ୱର, ପିପିଲି ଓ ଛୋଟ ବନ୍ଦରବାଟେ ବିଦେଶକୁ ପଠାଯାଉଥିଲା। ସେହି ଛୋଟ ବନ୍ଦରମାନଙ୍କ ମଧ୍ୟରୁ କେତେଗୁଡ଼ିଏ ବନ୍ଦରର ନାମ ନିମ୍ନରେ ପ୍ରଦତ୍ତ କରାଗଲା।

୧) ଅସ୍ତରଙ୍ଗ, ୨) ଚରିତ୍ରା (ପୁରୀ), ୩) କାନାଗାର (କୋଣାର୍କ) ୪) ମାଣିକ ପାଟଣା(ଚେଳିତଳା ଚିଲିକା), ୫) କାହାଲତା ପାଟଣା (ଚିଲିକାକୂଳ) ୬) ଚାୟାଗୀ (କୋଣାର୍କଠାରୁ ୧୧ କି.ମି ଦୂର), ୭) କଳିଙ୍ଗପଟନମ୍ (ବଂଶଧାରା ମୁହାଣ, ୮) ଚାନ୍ଦବାଲି (ବୈତରଣୀ), ୯) କଣ୍ଟିଆଗଡ଼ (ସାମୁଦ୍ରିକ ବନ୍ଦର, ଗଞ୍ଜାମ), ୧୦) ପିପିଲି ବନ୍ଦର (ସୁବର୍ଣ୍ଣରେଖା ମୁହାଣ), ୧୧) କୁଜଙ୍ଗ (ମହାନଦୀ ମୁହାଣର ଦକ୍ଷିଣ), ୧୨) ଅସ୍ତରଙ୍ଗ, ୧୩) ହରିହରପୁର ଓ ଆହୁରି ଅନେକ ବାଣିଜ୍ୟ କେନ୍ଦ୍ର ଓ ଛୋଟ ଛୋଟ ବନ୍ଦର ଥିଲା।

ପୁରାତନ କାଳରେ ନୌବାଣିଜ୍ୟ ପାଇଁ ବୋଇତର ନିର୍ମାଣ କରିବା ବିଷୟ 'ବ୍ରହ୍ମାଣ୍ଡ ପୁରାଣ' ଓ 'ଶୁକ୍ରନୀତିସାର' ପୁସ୍ତକମାନଙ୍କରେ ବହୁତ ତଥ୍ୟ ମିଳେ। ତା' ଛଡ଼ା ୬୪ କଳା ମଧ୍ୟରୁ ଶୁକ୍ରନୀତିସାର ପୁସ୍ତକରେ ବୋଇତ ତିଆରି ଏକ କଳା ବୋଲି ପ୍ରଦର୍ଶନ କରାଯାଇଛି। ଆଧୁନିକ ବିଚାରରେ ଏହା ଏକ କଳା ଏବଂ ବିଜ୍ଞାନ ମଧ୍ୟ।

(କ) ସାଧାରଣତଃ କାଠପଟାରେ ନିର୍ମିତ ଏହି ପୋତଗୁଡ଼ିକ ଦୁଇଭାଗରେ ବିଭକ୍ତ କରାଯାଏ– (କ) ସାଧାରଣ, (ଖ) ବିଶେଷ ପୋତ। ସାଧାରଣ ପୋତଗୁଡ଼ିକ ୧୦ ପ୍ରକାର। ୧– କ୍ଷୁଦ୍ର, ୨– ମଧ୍ୟମ, ୩– ଭୀମ, ୪–ଚପଳା, ୫) ପଟା, ୬) ଦୀର୍ଘା, ୭) ଭୟା, ୮) ପାତ୍ରପୁଟା, ୯) ଗର୍ଭାର, ୧୦) ମନ୍ଥର।

(ଖ) ବିଶେଷ ପୋତଗୁଡ଼ିକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ତିଆରି ହୋଇଥାଏ। ସେସବୁ ପୁଣି ଦୁଇଭାଗରେ ବିଭକ୍ତ । ୧) ଦୀର୍ଘ ଓସାରିଆ ପୋତ, ୨– ଉଚ୍ଚା ଓସାରିଆପୋତ। ଦୀର୍ଘ ଓସାରିଆ ପୋତଗୁନିକ ୧୦ ପ୍ରକାରର– ଦୀର୍ଘା, ତରଣୀ, ଲୋଟା, ଚତ୍ୱର, ଜାମିନୀ, ଜଙ୍ଗଲା, ପ୍ଲାବନୀ, ଧରଣୀ ଓ ବେଗିନୀ। ଉଚ୍ଚା ଓସାରିଆ ପୋତଗୁଡ଼ିକ ହେଲା– ଉର୍ଦ୍ଧ୍ୱ, ଅନୁର୍ଦ୍ଧ୍ୱ, ମନ୍ଥର– ଗର୍ଭିଣୀ ଓ ସୁବର୍ଣ୍ଣମୁଖୀ। ଏହିସବୁ ପୋତ ୮ରୁ ୮୦ମିଟର ଲମ୍ବା, ୫ରୁ ୨୫ ମିଟର ପ୍ରସ୍ଥ ଏବଂ ୩ରୁ ୨୭ ମିଟର ଉଚ୍ଚତା ବିଶିଷ୍ଟ ହେଉଥିଲା। ପୋତଗୁଡ଼ିକର ଅଗ୍ରଭାଗ ବାଘ, ସିଂହ, କୁମ୍ଭୀରର ମୁଣ୍ଡ ଭଳି ନିର୍ମିତ ହେଉଥିଲା। କଳିଙ୍ଗର ପୋତଗୁଡ଼ିକ ଦିନକୁ ୨୦୦ କିଲୋମିଟର ସମୁଦ୍ର ପଥ ଅତିକ୍ରମ କରିପାରୁଥିଲା।

ଏହି ପୋତଗୁଡ଼ିକର ଗତି ନିୟନ୍ତ୍ରଣ ନିମନ୍ତେ ଜାଭା ଯନ୍ତ୍ର, ଦିଗ ନିର୍ଣ୍ଣୟ ପାଇଁ ମତ୍ସ୍ୟ ଯନ୍ତ୍ର, ଦିଗ ପରୀକ୍ଷା ପାଇଁ ପକ୍ଷୀ ଯନ୍ତ୍ର, ପବନ ଓ ପାଗ ପରୀକ୍ଷଣ ପାଇଁ କମ ଯନ୍ତ୍ର ଖଞ୍ଜାଯାଇଥିଲା। ପବନ ବହିବା ନିମନ୍ତେ ପାଲ ଟାଣିବାକୁ କାଠର ଖୁଣ୍ଟମାନ ଲଗାଯାଇଥିଲା। ବଡ଼ବଡ଼ ପୋତମାନଙ୍କର ବାହାର ପାଖରେ ଓ ନିମ୍ନ ଭାଗରେ ବ୍ରୋଞ୍ଜର ଚଦର ଆବୃତ୍ତ କରାଯାଉଥିଲା। କେତେକ ବିଶେଷ ପୋତରେ ଆବଶ୍ୟକତା ଅନୁଯାୟୀ ଛୋଟବଡ଼ ସ୍ୱତନ୍ତ୍ର କୋଠରିମାନ ରହିଥାଏ। ହାତୀ ଓ ଘୋଡ଼ା ଭଳି ପ୍ରାଣୀ ମଧ୍ୟ ଚାଲାଣ କରାଯାଉଥିଲା। ୧୩ଶ ଶତାବ୍ଦୀରେ ମେରିନରସ କମ୍ପାସ ଉଦ୍ଭାବନ ହେବା ପୂର୍ବରୁ ଦିନରେ ସୂର୍ଯ୍ୟ ଓ ରାତିରେ ଧ୍ରୁବତାରା, ବିରାଟ ପୁରୁଷ, ସପ୍ତର୍ଷିମଣ୍ଡଳ ଆଦି ତାରାମାନଙ୍କୁ ଦେଖି ଦିଗ ନିର୍ଣ୍ଣୟ କରାଯାଉଥିଲା। ସେଥିପାଇଁ ଜାହାଜମାନେ ଏକତ୍ରିତ ଭାବରେ ସଂଘବଦ୍ଧ ହୋଇ ୩୦/୪୦ ପୋତ ଗ୍ରହ ବିପ୍ର ନେଇଯାଉଥିଲେ। ସଂଘବଦ୍ଧ ହୋଇ ନଗଲେ ଜଳଦସ୍ୟୁମାନେ ଆକ୍ରମଣର ଭୟ ଥାଏ । ତେଣୁ ସଶସ୍ତ୍ର ଜଗୁଆଳି ରଖିଥାଆନ୍ତି।

ସାମୁଦ୍ରିକ ବାଣିଜ୍ୟ, ମାଛଧରା କୈବର୍ତ୍ତମାନଙ୍କର ବଂଶାନୁଗତ ପେଷା ଥିଲା। ସେମାନେ ବୋଇତ ତିଆରି, ପୋତ ଚାଳନା ଦାୟିତ୍ୱ ତୁଲାଉଥିଲେ। ତେଣୁ ଓଡ଼ିଶାର ସମୁଦ୍ର ଉପକୂଳର କୈବର୍ତ୍ତମାନଙ୍କ ବସତି ବହୁଳ ଭାବରେ ଦେଖାଯାଏ। ସେ ସମ୍ପ୍ରଦାୟର ରାଜା ମଧ୍ୟ ଥିଲେ। ସେସବୁ କୈବର୍ତ୍ତଙ୍କ ସମେତ ବୋଇତେଇ, ମାଝି, ମଙ୍ଗରାଜ ଆଦି ଉପାଧିକାରୀ ଅନ୍ୟ ସମ୍ପ୍ରଦାୟର ଲୋକେ ସାଧବ ଭାବରେ ବ୍ୟବସାୟ କରୁଥିଲେ।

ଇଣ୍ଡୋନେସିଆରେ ଶୈଳେନ୍ଦ୍ର ବଂଶ ୧୪ଶ ଶତାବ୍ଦୀରେ ରାଜତ୍ୱ କରୁଥିଲେ। ସେମାନେ ଓଡ଼ିଆ। ଇଣ୍ଡୋନେସିଆର ଇତିହାସରୁ ଜଣାଯାଏ ଯେ, ସେଠାରେ ମଧ୍ୟ ଉତ୍କଳ ପରି କାର୍ତ୍ତିକ ପୂର୍ଣ୍ଣିମା ଦିନ କଟକ ବାଲିଯାତ୍ରା ପରି ଇଣ୍ଡୋନେସିଆରେ ମଧ୍ୟ ବୋଇତ ଭସାଣି ଉତ୍ସବ ମହାସମାରୋହରେ ପାଳିତ ହୁଏ। ତାହା ହେଉଛି ଉତ୍କଳୀୟ

ନୌବାଣିଜ୍ୟ। ଉପନିବେଶ ସ୍ଥାପନ ସାମ୍ରାଜ୍ୟବାଦର ଐତିହ୍ୟ ଓ ପରମ୍ପରାର ସଂସ୍କୃତି। ସେକାଳରେ ସାତ ମହାସମୁଦ୍ର ବକ୍ଷ ଭେଦ କରି ଉତ୍କଳୀୟ ସାଧବମାନେ ଦମ୍ଭ ଓ ସାହସିକତାର ସହିତ ନୌବାଣିଜ୍ୟ କରୁଥିଲେ। ବୋଇତ ବ୍ୟବସାୟ ଅତ୍ୟନ୍ତ ପ୍ରମାଦପୂର୍ଣ୍ଣ ଥିଲା । ଝଡ଼, ତୋଫାନ, ବାତ୍ୟା, ଡକାୟତି, ଶତ୍ରୁଭୟ, ଜଳଦସ୍ୟୁଭୟ, ଅଗ୍ନ୍ୟପାତ ଓ ଆକସ୍ମିକ ଦୈବ ଦୁର୍ବିପାକ ଓ ବିପଦ ପ୍ରଭୃତିର ସମ୍ମୁଖୀନ ବେଳେବେଳେ ହେବାର ଥାଏ। ସେଥିପାଇଁ ସାଧବ ଓ ସାଧବ ପରିବାରର ସମସ୍ତ ନିରାପଦରେ ବୋଇତ ଗତାଗତ ପାଇଁ ପ୍ରଭୁ ସର୍ବବ୍ୟାପୀ ପରମେଶ୍ୱରଙ୍କଠାରେ ପ୍ରାର୍ଥନା କରିଥାନ୍ତି।

**ସହାୟକ ଗ୍ରନ୍ଥ**


୧. ଓଡ଼ିଶାର ଲହୁଲୁହାଣ ଇତିହାସ– କୃଷ୍ଣ ଚନ୍ଦ୍ର ବିଶ୍ୱାଳ
୨. ସାମୁଦ୍ରିକ ବାଣିଜ୍ୟର ଇତିହାସ– କୃଷ୍ଣ ଚନ୍ଦ୍ର ବିଶ୍ୱାଳ
୩. ଓଡ଼ିଶାର ଐତିହ୍ୟ– ଧ୍ରୁବ ଚରଣ ଜୟସିଂହ ପାଇକରାୟ



ଆଇଭିଏ–୧୧/୧
ୟୁନିଟ୍–୨, ଅଶୋକ ନଗର
ଭୁବନେଶ୍ୱର–୯


# ବାଲିଯାତ୍ରା

**ଦିଲ୍ଲୀପ କୁମାର ବେହୁରା**

ହଜାର ବରଷ, ତଳର କଟକ
ବାରବାଟୀ ଦୁର୍ଗ ଯା'ର
ତାରକସୀ କାମ, ରାଜଧାନୀ ସାଥେ
ଡାକ ଥିଲା ବାଣିଜ୍ୟର
ମାହେନ୍ଦ୍ର ବେଳାରେ, ବୋଇତ ବନ୍ଦାଣ
ସାଧବ କାହାଣୀ ମାନ
କାର୍ତ୍ତିକ ପୂର୍ଣ୍ଣମୀ, ଧରମ ମାସରେ
ଥିଲା ଶୁଭାରମ୍ଭ ଦିନ
କାହିଁ କେତେ ଦୂର, ବାଲି ସୁମାତ୍ରା
ଜାଭା ପୁଣି କେତେ ସ୍ଥାନ
ଯାଉଛନ୍ତି ଯେଣୁ, ସାହାହେବୁ ମାଆ
ରଖିବୁ ସଭିଙ୍କ ମାନ
କେତେ ଆନନ୍ଦାଶ୍ରୁ, ଯାଉଥିବ ବୋହି
ଅନ୍ତରରେ ଥିବ କୋହ

ଓଡିଆଣୀ କେବେ, ପଡେ ନାହିଁ ଭାଙ୍ଗି
ଅଛି ଜାତିପ୍ରୀତି ମୋହ
ଆମ ଚିଜ ନେଇ, ସେ ଦେଶକୁ ଯାଇ
ବାଣିଜ୍ୟ ବେପାର କରି
ସେ ଦେଶର ଭଲ, ଚିଜମାନ ଧରି
ଆସୁଥିଲେ ପୁଣି ଫେରି ।
ଯିବା ଆସିବାର, ସାକ୍ଷୀ ରହିଅଛି
ମହାନଦୀ କୂଳ ଆଜି
କଟକ ସହର, ବାଲିଯାତ୍ରା ସତେ
ଯାଏ ଇତିହାସ ଖୋଜି ।


ଗ୍ରାମ– ପୋଖରୀଆ, ପୋଷ୍ଟ– ମହୁଲିଆ
ରାଜନଗର, କେନ୍ଦ୍ରାପଡା




# ତିତିଲି ପ୍ରଭାବିତଙ୍କ ପାଇଁ ମୁଖ୍ୟମନ୍ତ୍ରୀଙ୍କ ପ୍ୟାକେଜ



୨୦୧୮ ଅକ୍ଟୋବର ୧୧ ଓ ୧୨ ତାରିଖରେ ଭୀଷଣ ସାମୁଦ୍ରିକ ଝଡ ତିତିଲି ଯୋଗୁଁ ବିଭିନ୍ନ ସ୍ଥାନରେ ଚାଷୀ ଓ ଅନ୍ୟାନ୍ୟ କ୍ଷେତ୍ରର ଲୋକମାନେ କ୍ଷତିଗ୍ରସ୍ତ ହୋଇଛନ୍ତି । ସେମାନଙ୍କ ପାଇଁ ସଚିବାଳୟରେ ଏକ ଉଚ୍ଚସ୍ତରୀୟ ବୈଠକରେ ଅଧ୍ୟକ୍ଷତା କରି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏକ ପ୍ୟାକେଜ ଘୋଷଣା କରିଛନ୍ତି ।

**କୃଷି କ୍ଷେତ୍ର**

- କୃଷି ଇନ୍‌ପୁଟ ସବ୍‌ସିଡି– ୩୩ ପ୍ରତିଶତ ବା ଅଧିକ କ୍ଷତିଗ୍ରସ୍ତ ଚାଷୀମାନଙ୍କୁ ଅଣ–ଜଳସେଚିତ ଚାଷ ଜମି ପାଇଁ ହେକ୍ଟର ପିଛା ୬୮୦୦ ଟଙ୍କା ଏବଂ ନିଶ୍ଚିତ ଜଳସେଚିତ ଜମି କ୍ଷେତ୍ରରେ ହେକ୍ଟର ପିଛା ୧୩,୫୦୦ ଟଙ୍କା, ସବୁଦିନିଆ ଫସଲ କ୍ଷେତ୍ରରେ ହେକ୍ଟର ପିଛା ୧୮,୦୦୦ ଟଙ୍କା । ଏହି ସହାୟତା ପ୍ରକୃତ ଚାଷୀଙ୍କୁ ହିଁ ଦିଆଯିବ ।
- ଏହି ରିହାତି ସବୁ ଦିନିଆ ଫସଲ କ୍ଷେତ୍ରରେ କୌଣସି ଚାଷୀଙ୍କ ପାଇଁ ୨୦୦୦ ଟଙ୍କାରୁ କମ୍ ହେବ ନାହିଁ ଏବଂ ଅନ୍ୟାନ୍ୟ ଫସଲ କ୍ଷେତ୍ରରେ ୧୦୦୦ ଟଙ୍କାରୁ କମ୍ ହେବ ନାହିଁ ।
- ୨୦୧୮–୧୯ ରବି ଫସଲ ପାଇଁ ତିତିଲି ପ୍ରଭାବିତ ଅଞ୍ଚଳ ଚାଷୀମାନଙ୍କୁ ୧ଲକ୍ଷ ୨୦ ହଜାର ଡାଲି ଜାତୀୟ ଶସ୍ୟବୀଜ, ୩୦,୦୦୦ ତୈଳବୀଜ ମିନିକିଟ୍ ଏବଂ ୫୦,୦୦୦ ପନିପରିବା ମଞ୍ଜିର କିଟ୍– ଏହିପରି ସମୁଦାୟ ୨ ଲକ୍ଷ ସ୍ୱତନ୍ତ୍ର ମିନିକିଟ୍ ଯୋଗାଇ ଦିଆଯିବ ।
- ରବି ଋତୁ ପାଇଁ ତିତିଲି ପ୍ରଭାବିତ ଜିଲ୍ଲାମାନଙ୍କରେ ୨୦ ହଜାର ହେକ୍ଟର ଚାଷ ଜମିରେ ବିଭିନ୍ନ କୃଷି ପ୍ରଦର୍ଶନ କାର୍ଯ୍ୟକ୍ରମ କରାଯିବ ।

- କାଜୁ, ଆମ୍ବ, ନଡିଆ, କିଆ, ରେଶମ ଆଦି ଚାଷ କ୍ଷେତ୍ରରେ ନଷ୍ଟ ହୋଇଥିବା ୨୦ ହଜାର ହେକ୍ଟର ଜମିକୁ ପୁନରୁଦ୍ଧାର କରାଯିବ ।
- କ୍ଷତିଗ୍ରସ୍ତ ହୋଇଥିବା ୨୦୦୦ ହେକ୍ଟର ଆଖୁ ଫସଲକୁ ସ୍ୱତନ୍ତ୍ର ସହାୟତା ଦିଆଯିବ ।
- ମୂଳ ଜାତୀୟ ଓ ଆଳୁ ଜାତୀୟ ଫସଲ ପାଇଁ ୟୁନିଟ୍ ପିଛା ୭୦୦୦ ଟଙ୍କା ହିସାବରେ ୨୦୦୦ ଚାଷୀଙ୍କୁ ପ୍ରୋତ୍ସାହନ ସହାୟତା ଦିଆଯିବ ।
- ୫୦୦ ଛତୁ ଚାଷୀଙ୍କୁ ୟୁନିଟ୍ ପିଛା ୧୦,୦୦୦ ଟଙ୍କା ସହାୟତା ଦିଆଯିବ ।
- ୫୦ ପ୍ରତିଶତ ରିହାତିରେ ୧୦୦୦ ପମ୍ପସେଟ ଦିଆଯିବ । ସର୍ବାଧିକ ୧୫,୦୦୦ ଟଙ୍କା ଦିଆଯିବ ।
- ସୌର ଜଳନିଧି ଯୋଜନାରେ ୯୦ ପ୍ରତିଶତ ରିହାତିରେ ୧୦୦୦ ସୌର ପମ୍ପସେଟ୍ ଦିଆଯିବ ।
- ୫୦ ପ୍ରତିଶତ ରିହାତିରେ ୫୦୦୦ ସ୍ପ୍ରେୟର ଦିଆଯିବ ।
- ଡାଲି ଓ ତୈଳ ଜାତୀୟ ଫସଲ କ୍ଷେତ୍ରରେ ୭୫ ହଜାର କ୍ଷତିଗ୍ରସ୍ତ ଚାଷୀଙ୍କୁ ୭୫୦ଟି କ୍ୟାମ୍ପ ଜରିଆରେ ସିଡ୍ ଟ୍ରିଟମେଣ୍ଟ କୌଶଳ ଶିଖାଯିବ ।
- ୫୦ ହଜାର ଚାଷୀଙ୍କୁ ପରିବାର ପିଛା ୫ଟି ଆମ୍ବ ଓ ୪ଟି ନଡିଆ ଚାରା ପ୍ରଦାନ କରାଯିବ ।
- ରବି ଫସଲ ପାଇଁ ଉନ୍ନତମାନର ମଞ୍ଜି ପ୍ରଦାନ କରାଯିବ ।
- ରବି ଋତୁ ପାଇଁ ଉଠାଜଳସେଚନ ପଏଣ୍ଟଗୁଡିକୁ ମରାମତି କରାଯିବ ।

**କୃଷି ଋଣ**

- ୩୩ ପ୍ରତିଶତ ବା ଅଧିକ ଫସଲ କ୍ଷତି ସ୍ଥଳେ ୨୦୧୮ ଖରିଫ ପାଇଁ ସ୍ୱଳ୍ପ ମିଆଦୀ କୃଷି ଋଣକୁ ମଧ୍ୟମ ମିଆଦୀ କୃଷି ଋଣରେ ପରିବର୍ତ୍ତନ କରାଯିବ ।
- ଖରିଫ ପାଇଁ ସ୍ୱଳ୍ପ ମିଆଦୀ ଋଣ ନେଇଥିବା ଚାଷୀମାନଙ୍କ ପାଇଁ ଦେୟ ତାରିଖକୁ ୨୦୧୯ ସେପ୍ଟେମ୍ବର ୩୦କୁ ଘୁଞ୍ଚାଇ ଦିଆଯିବ ।

**ପଶୁସମ୍ପଦ ବିକାଶ ବିଭାଗ**

- ଗୃହପାଳିତ ପଶୁ ମୃତ୍ୟୁ କ୍ଷେତ୍ରରେ ଦୁଆଁଳିଆ ଗାଇ ଓ ମଇଁଷି ପାଇଁ (ସର୍ବାଧିକ ୩ଟି ପଶୁ) ପଶୁ ପିଛା ୩୦ ହଜାର ଟଙ୍କା, ବଳଦ କ୍ଷେତ୍ରରେ (ସର୍ବାଧିକ ୩ଟି ପଶୁ) ପଶୁ ପିଛା ୨୫ ହଜାର ଟଙ୍କା, ବାଛୁରୀ ପିଛା (ସର୍ବାଧିକ ୬ଟି ପଶୁ) ୧୬ ହଜାର ଟଙ୍କା, ଛେଳି ପିଛା (ସର୍ବାଧିକ ୩୦ଟି ପଶୁ) ୩୦୦୦ ଟଙ୍କା, କୁକୁଡା ପିଛା ୫୦ ଟଙ୍କା (ସର୍ବାଧିକ ୫୦୦୦ ଟଙ୍କା) ପ୍ରଦାନ କରାଯିବ ।
- ଗୁହାଳ ପୁନରୁଦ୍ଧାର ପାଇଁ ୧୦ ହଜାର ଚାଷୀଙ୍କୁ ଜଣ ପିଛା ୧.୧୩ ଲକ୍ଷ ଟଙ୍କା ଦିଆଯିବ ।
- ଛେଳି ଗୁହାଳ ପୁନରୁଦ୍ଧାର ପାଇଁ ୧୦ ହଜାର ଚାଷୀଙ୍କୁ ଗୁହାଳ ପିଛା ୪୪ ହଜାର ଟଙ୍କା ।
- କୁକୁଡା ପାଳନ ଜରିଆରେ ୨୦ ହଜାର ଚାଷୀଙ୍କୁ ସହାୟତା ଯୋଗାଇ ଦିଆଯିବ ।

**ମତ୍ସ୍ୟ କ୍ଷେତ୍ର**

- ମାଛ ଚାଷରେ କ୍ଷତି ସହିଥିବା ଚାଷୀମାନଙ୍କୁ ୭୫ ପ୍ରତିଶତ ରିହାତିରେ ହେକ୍ଟର ପିଛା ୧.୧୨୫ ଲକ୍ଷ ଟଙ୍କା ଯୋଗାଇ ଦିଆଯିବ ।
- ଡଙ୍ଗା ପିଛା ୨୨,୫୦୦ ଓ ଜାଲ ପିଛା ୧୫,୦୦୦ ଟଙ୍କା ସହାୟତା ଦିଆଯିବ ।
- ସାମୁଦ୍ରିକ ଅଞ୍ଚଳ ଓ ଚିଲିକାର ମତ୍ସ୍ୟଜୀବୀମାନଙ୍କ ପାଇଁ ଡଙ୍ଗା ପିଛା ୬୦,୦୦୦ ଓ ଜାଲ ପିଛା ୧୫,୦୦୦ ଟଙ୍କା ସହାୟତା ଦିଆଯିବ ।

**ହସ୍ତତନ୍ତ ଓ ହସ୍ତଶିଳ୍ପ**

- ହସ୍ତତନ୍ତ ଓ ହସ୍ତଶିଳ୍ପ କ୍ଷେତ୍ରରେ କାରିଗରମାନଙ୍କୁ ନୂଆ ଯନ୍ତ୍ରପାତି ପାଇଁ ବ୍ୟକ୍ତି ପିଛା ୪୧୦୦ ଟଙ୍କା ଏବଂ କଞ୍ଚାମାଲ୍ ପାଇଁ ବ୍ୟକ୍ତି ପିଛା ୪୧୦୦ ଟଙ୍କା ।

**ରେଶମ ଚାଷ**

- ରେଶମ ଚାଷୀମାନଙ୍କୁ ହେକ୍ଟର ପିଛା ୪୮୦୦ ଟଙ୍କା ଇନ୍‌ପୁଟ ସବ୍‌ସିଡି ଦିଆଯିବ ।
- ରେଶମ ଚାଷରେ ସମ୍ପୂର୍ଣ୍ଣ କ୍ଷତିଗ୍ରସ୍ତ ରିଅରିଂ ହାଉସ ପୁନରୁଦ୍ଧାର ପାଇଁ ୧.୭୫ ଲକ୍ଷ ଟଙ୍କା ଓ ଆଂଶିକ କ୍ଷତିଗ୍ରସ୍ତ ରିଅରିଂ ହାଉସ ପାଇଁ ୫୭ ହଜାର ଟଙ୍କା ଦିଆଯିବ । ସମୁଦାୟ ୧୨୫ ରେଶମ ଚାଷୀଙ୍କୁ ସହାୟତା ଦିଆଯିବ ।

**ଗୋଷ୍ଠୀ ସହାୟତା**

- କ୍ଷତିଗ୍ରସ୍ତ ଅଞ୍ଚଳରେ ସରକାରଙ୍କ ସହାୟତା ବୃଦ୍ଧି ପାଇଁ ପ୍ରାୟ ୩୦ ହଜାର ଚାଷୀ ଥିବା ୨୦୦ ପ୍ରଡ୍ୟୁସର ଗ୍ରୁପକୁ ପ୍ରୋତ୍ସାହନ ଦିଆଯିବ । ପ୍ରତ୍ୟେକ ପ୍ରଡ୍ୟୁସର ଗ୍ରୁପ୍‌କୁ ୩ଲକ୍ଷ ଟଙ୍କା ଲେଖାଏଁ ଦିଆଯିବ । ଚାଷ କାର୍ଯ୍ୟରେ ଲିପ୍ତ ଥିବା ମହିଳା ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ ଅତିରିକ୍ତ ୫୦୦୦ ଟଙ୍କା ଲେଖାଏଁ ସିଡ୍ ମନି ଦିଆଯିବ ।



# ଆମର ସମୃଦ୍ଧି ଓ ନୌବାଣିଜ୍ୟ

ପ୍ରଭାତ କୁମାର ନନ୍ଦ

ଯେକୌଣସି ଦେଶର ସମୃଦ୍ଧି ବିଷୟରେ ଆଲୋଚନା କରାଗଲେ, ଯେଉଁ କେତେକ କାରଣ ଅଧିକ ଗୁରୁତ୍ୱପୂର୍ଣ୍ଣ ଜଣାଯାଏ, ସେଗୁଡ଼ିକ ମଧ୍ୟରୁ ବାଣିଜ୍ୟ ଅନ୍ୟତମ। ଆମ ଦେଶର ପୌରାଣିକ ପ୍ରସିଦ୍ଧି ଅନୁସାରେ ବାଣିଜ୍ୟରେ ଉନ୍ନତି, ସଫଳତା ଓ ସମ୍ମାନବୋଧ ରହିଥାଏ। ତେଣୁ କୁହାଯାଇଛି ଯେ, 'ବାଣିଜ୍ୟେ ବସତେ ଲକ୍ଷ୍ମୀଃ'। ଯେଉଁ ଦେଶର ବାଣିଜ୍ୟ ବା ପଣ୍ୟଦ୍ରବ୍ୟର ରପ୍ତାନୀ ଓ ଆମଦାନୀ ଅଧିକ, ସେ ଦେଶ ଆର୍ଥିକ ଦୃଷ୍ଟିରୁ ସମୃଦ୍ଧ ଓ ବିଶ୍ୱର ସାମାଜିକ, ରାଜନୈତିକ ଓ ଔଦ୍ୟୋଗିକ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥାଏ। ବାଣିଜ୍ୟ ପୁଷ୍ପର କେଶର ଓ ସୁଗନ୍ଧ ହେଉଛି ପରିବହନ। ଉନ୍ନତ ପରିବହନ ବ୍ୟବସ୍ଥା ନଥିଲେ ବାଣିଜ୍ୟର ସଫଳତା ସମ୍ଭବ ହୋଇପାରିବ ନାହିଁ। ସ୍ଥଳ, ବ୍ୟୋମ ଓ ଜଳ ଏହି ତିନୋଟି ମାର୍ଗରେ ହିଁ ପରିବହନ ବ୍ୟବସ୍ଥା କାର୍ଯ୍ୟକାରୀ ହୋଇଥାଏ। ସ୍ଥଳପଥରେ ପରିବହନ ସହଜ ହୋଇଥିଲେ ମଧ୍ୟ ପୃଥିବୀର ସମସ୍ତ ଦେଶ ସ୍ଥଳଭାଗରେ ସଂଯୁକ୍ତ ହୋଇନଥିବା ଯୋଗୁଁ ପଣ୍ୟଦ୍ରବ୍ୟ ପରିବହନ ବ୍ୟୋମ ଓ ଜଳପଥରେ ସମ୍ଭବ ହୋଇଥାଏ। ପୁନଶ୍ଚ ବ୍ୟୋମପଥରେ ଉଡ଼ାଜାହାଜଦ୍ୱାରା ଦୀର୍ଘକାୟ ପଣ୍ୟଦ୍ରବ୍ୟ ପରିବହନ କରିହେବ ନାହିଁ। ସ୍ଥଳ ଓ ଜଳପଥରେ ଯାନର ଇନ୍ଧନ ଖର୍ଚ୍ଚ ପରିମାଣ ଜଳପଥ ଯାନ ଅପେକ୍ଷା ଅଧିକ। ସେହି ଦୃଷ୍ଟିରୁ ବିଶ୍ୱ ମାନବ ସଭ୍ୟତାର ବିକାଶ ସହିତ ନୌବାଣିଜ୍ୟର ଉନ୍ନତି ହୋଇଆସୁଛି।



ଅଧୁନା ଓଡ଼ିଶାର ପୂର୍ବନାମ କଳିଙ୍ଗରେ ଖ୍ରୀଷ୍ଟପୂର୍ବ ସମୟରୁ ନୌବାଣିଜ୍ୟର ଗୌରବ ବିଷୟରେ ଜଣାଯାଏ। ବିଭିନ୍ନ ପରିବ୍ରାଜକଙ୍କ ବିବରଣୀ, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ତଥା

ବିଭିନ୍ନ କବିଙ୍କର ରଚନାରେ ଆମ ରାଜ୍ୟର ସମୃଦ୍ଧ ନୌବାଣିଜ୍ୟ ବିଷୟରେ ଜଣାଯାଏ। ବିଶ୍ୱ ପ୍ରସିଦ୍ଧ ନୌଶାସ୍ତ୍ରବିତ୍ ଟଲେମି ପ୍ରଥମ ଶତାବ୍ଦୀରେ ରଚିତ ବିଶ୍ୱ ଭୂଗୋଳ ଗ୍ରନ୍ଥରେ କଳିଙ୍ଗର ଛଅଟି ପ୍ରସିଦ୍ଧ ବନ୍ଦର ବିଷୟରେ ଉଲ୍ଲେଖ କରିଛନ୍ତି। ମନ୍ନଦ, କୋଣାଗାର, କଟିକର୍ଦ୍ଦମ, ପାଲୁର, ଅଫେଡେରିଆନ୍ ଓ ତାମ୍ରଲିପ୍ତି ବନ୍ଦର କଳିଙ୍ଗ ସାଗରର ଉନ୍ନତ ବନ୍ଦର ଥିଲା। ବର୍ତ୍ତମାନର ବଙ୍ଗୋପସାଗରକୁ ଇତିହାସରେ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗସାଗର ନାମରେ ଗ୍ରହଣ କରାଯାଇଥିଲା। ଇଂରେଜମାନଙ୍କର ଭାରତକୁ ଆଗମନ ପରେ ପଶ୍ଚିମବଙ୍ଗର କୋଲକାତାରେ ନିଜର ନୌବାଣିଜ୍ୟ କାର୍ଯ୍ୟାଳୟ ସ୍ଥାପନ କଲାପରେ କଳିଙ୍ଗସାଗର ପରିବର୍ତ୍ତେ ବଙ୍ଗୋପସାଗର ଜାତୀୟ ମାନଚିତ୍ରରେ ଚିହ୍ନିତ ହେଲା। ପ୍ରସିଦ୍ଧ ପରିବ୍ରାଜକ ହୁଏନ୍‌ସାଂ ନିଜ ଭ୍ରମଣ ବୃତ୍ତାନ୍ତରେ ଲେଖିଛନ୍ତି ଯେ, ଚୀନ୍‌ଦେଶର ରାଜକୁମାରୀ ବୌଦ୍ଧ ତନ୍ତ୍ର ଶିକ୍ଷା କରିବା ନିମିତ୍ତ ପୋତଦ୍ୱାରା କଳିଙ୍ଗସାଗରରେ ଆସି ମହାନଦୀର ମୁହାଣ (ମନ୍ନଦବନ୍ଦର) ଦେଇ ଚେଲିତୋଳ ବନ୍ଦରକୁ ଯାତ୍ରା କରିଥିଲେ। ସେଠାରୁ ସେ ପାଲିଙ୍କି ଓ ହସ୍ତୀପୃଷ୍ଠରେ ପୁରାତନ ବୌଦ୍ଧ ବିଶ୍ୱବିଦ୍ୟାଳୟ ପୁଷ୍ପଗିରିକୁ ଯାଇ ତନ୍ତ୍ରଶିକ୍ଷା କରିବା ପରେ, ଆଗମନ କରିଥିବା ପଥରେ ପ୍ରତ୍ୟାବର୍ତ୍ତନ କରିଥିଲେ। ଅଧୁନା କେନ୍ଦ୍ରାପଡ଼ା ଜିଲ୍ଲାର ରତ୍ନଗିରି ପାହାଡ଼ ଓ ପୁଷ୍ପଗିରି ବୌଦ୍ଧ ବିଶ୍ୱବିଦ୍ୟାଳୟ ଭଗ୍ନାବଶେଷ ପରିଦୃଷ୍ଟ ହୁଏ।

ଖ୍ରୀଷ୍ଟପୂର୍ବ ୨୬୧ରେ ମଗଧ ରାଜା ଅଶୋକ କଳିଙ୍ଗ ଆକ୍ରମଣ କରିବାର ଅନ୍ୟତମ ପ୍ରମୁଖ କାରଣ ଥିଲା ସାଧବମାନଙ୍କର ନୌଯାତ୍ରାର ସୁଯୋଗ ନେଇ ବିଶ୍ୱର ବିଭିନ୍ନ ରାଜ୍ୟସହ ବାଣିଜ୍ୟ କରିବା ଓ ନିଜର ପ୍ରଚାର କରିବା। ମଗଧ ରାଜ୍ୟ ସମୃଦ୍ଧିଶାଳୀ ଥିଲେ ମଧ୍ୟ ଜଳକ୍ଷେତ୍ର ବ୍ୟବହାର ସୁଯୋଗ ନଥିବାରୁ ଅନ୍ତର୍ଜାତୀୟ ବ୍ୟବସାୟ କରିପାରୁ ନଥିଲେ। କଳିଙ୍ଗ ବିଜୟ ପରେ ଅଶୋକ ବୌଦ୍ଧଧର୍ମର ପ୍ରସାର କଳ୍ପେ ନିଜର ଦୁହିତା ସଂଘମିତ୍ରା ଆଠଟି ପରିବାର ଓ ବୋଧିବ ବୃକ୍ଷ ସହ ତାମ୍ରଲିପ୍ତି ବନ୍ଦରରୁ ସିଂହଳକୁ ନୌଯାତ୍ରା କରିଥିଲେ ବୋଲି ବୌଦ୍ଧଜାତକ ଗ୍ରନ୍ଥରେ ଉଲ୍ଲେଖ କରାଯାଇଛି। ପରବର୍ତ୍ତୀ ସମୟରେ କବି ସମ୍ରାଟ ଉପେନ୍ଦ୍ରଭଞ୍ଜ କଳିଙ୍ଗର ବୋଇତ ସିଂହଳ ଦ୍ୱୀପରେ ଯାଇ ଲାଗିବା ଓ ସେଠାରେ ଥିବା ସାଧବାଣୀମାନେ ଆମର ପାରଂପରିକ ଶୈଳୀରେ ବୋଇତକୁ ବନ୍ଦାପନା କରିବା ଓ ହୁଳହୁଳି ଦେବା ବିଷୟ ବର୍ଣ୍ଣନା କରି କଳିଙ୍ଗର ପ୍ରତିଷ୍ଠିତ ନୌବାଣିଜ୍ୟ ବିଷୟରେ ଅଧିକ ସୂଚନା ଦେଇଛନ୍ତି। ପ୍ରସିଦ୍ଧ କବି କାଳିଦାସ ରଘୁବଂଶ କାବ୍ୟରେ କଳିଙ୍ଗ ରାଜାଙ୍କୁ କେବଳ ମହେନ୍ଦ୍ର ପର୍ବତର ଅଧୀଶ୍ୱର ନୁହେଁ ତତ୍‌ସହିତ ମହୋଦଧିର ପତି ଭାବରେ ବର୍ଣ୍ଣନା କରିଛନ୍ତି।

ଅସୌ ମହେନ୍ଦ୍ରାପି ସମାଜ ସାରଃ
ପତି ମହେନ୍ଦ୍ରସ୍ୟ ମହୋଦଧେଶ୍ଚ

ନୌବାଣିଜ୍ୟର ଦୁଇଟି ଦିଗ ରହିଛି। ପ୍ରଥମତଃ ଉନ୍ନତମାନର ଓ ଭାସଯୋଗ୍ୟ ବିଭିନ୍ନ ଜଳଯାନ ବା ବୋଇତ ନିର୍ମାଣ ଦ୍ୱିତୀୟତଃ ବିଦେଶରେ ବୋଇତରେ ରପ୍ତାନୀ ବା ଆମଦାନୀ ହେଉଥିବା ପଣ୍ୟଦ୍ରବ୍ୟ ସଂପର୍କରେ ନିର୍ଭୁଲ ସୂଚନା ଓ ବ୍ୟବସାୟିକ ଦକ୍ଷତା। ଉଭୟ ଦିଗରେ କଳିଙ୍ଗର କୈବର୍ତ୍ତ ଓ ସାଧବମାନଙ୍କର ପାରଦର୍ଶିତା ଥିଲା। ଭୋଜରାଜ ସ୍ୱରଚିତ 'ଯୁକ୍ତି କଳ୍ପତରୁ' ଗ୍ରନ୍ଥରେ ଆବଶ୍ୟକ ଅନୁଯାୟୀ ବିଭିନ୍ନ ଆକାରର ଓ ସୁଦୃଢ଼ ଜଳଯାନ ନିର୍ମାଣ ବିଷୟରେ ବିସ୍ତୃତ ବିବରଣୀ ଦେଇଛନ୍ତି। ଓଡ଼ିଶାର ପ୍ରାମାଣିକ ନୌଶାସ୍ତ୍ର 'ଅର୍ଣ୍ଣବ ବିହାର'ରୁ ପ୍ରାଚୀନ କଳିଙ୍ଗର ଗୌରବମଣ୍ଡିତ ନୌବାଣିଜ୍ୟ ବିଷୟରେ ସୂଚନା ମିଳିଛି। ଏହି ଶାସ୍ତ୍ରରେ 'ବହିତ୍ରକୀର୍ତ୍ତି ବୈଭବମ୍', 'ଜଳଯାନମ୍' ଏବଂ 'ବିଶାଖା ନିର୍ଦ୍ଦେଶମ୍' ଆଦି ନୌଶାସ୍ତ୍ରଗୁଡ଼ିକର ଉଲ୍ଲେଖ ଥିବାରୁ, କଳିଙ୍ଗର କୈବର୍ତ୍ତ ଓ ସାଧବମାନେ ଯେ ଖ୍ରୀଷ୍ଟପୂର୍ବ ସମୟରୁ ଜଳଯାନ ନିର୍ମାଣ ଓ ନୌଯାତ୍ରା ପରିଚାଳନାରେ ଦକ୍ଷ ଥିଲେ ବୋଲି ଜଣାଯାଏ।

ଜଳଯାନର ପ୍ରସ୍ତରମୂର୍ତ୍ତି ଓଡ଼ିଶାର ପୁରୀ ଜଗନ୍ନାଥ ମନ୍ଦିର ଭୋଗ ମଣ୍ଡପର ପୂର୍ବ ବାହ୍ୟ ପାର୍ଶ୍ୱରେ ଦେଖିବାକୁ ମିଳେ। ସବୁଠାରୁ ତାତ୍ପର୍ଯ୍ୟ ପୂର୍ଣ୍ଣ ବିଷୟ ଏହି ଯେ, ବୋଇତରେ ଗଜପତି ମହାରାଜା ଆସୀନ ହୋଇଥିବା ବେଳେ ନାରୀମାନେ ଆହୁଲା ଚାଳନା କରି ସେହି ବୋଇତକୁ ଚଳାଉଛନ୍ତି। ଭୁବନେଶ୍ୱରରେ ଥିବା ବୋଇତାଳ ମନ୍ଦିରର ଉପରିଭାଗ ଓଲଟ ବୋଇତ ସଦୃଶ। କୋଣାର୍କ ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଓଡ଼ିଶାର ଗଜପତିଙ୍କୁ ଗ୍ରୀକ୍‌ର ବଣିକମାନେ ଜିରାଫ୍ ଉପହାର

ଦେଉଥିବାର ପ୍ରସ୍ତର ମୂର୍ତ୍ତି, ତ୍ରୟୋଦଶ ଶତାବ୍ଦୀରେ କଳିଙ୍ଗ ସହ ଗ୍ରୀକ୍‌ର ବାଣିଜ୍ୟିକ ସମ୍ପର୍କ ଥିବା ପ୍ରମାଣିତ କରିଛି । ଏହା ବ୍ୟତୀତ ଓଡ଼ିଶାର ଜନଜୀବନରେ 'ଖୁଲଣା ସୁନ୍ଦରୀ' ଓ ଖୁଦୁରୁକୁଣୀ (ତଅପୋଇ) ଓଷା ପ୍ରଭୃତି ବହୁକାଳରୁ ଆଦର ଲାଭ କରୁଥିବା ଦୃଷ୍ଟିରୁ, ଓଡ଼ିଆମାନେ ଯେ ଯୁଗେ ଯୁଗେ ନୌବାଣିଜ୍ୟ ପ୍ରିୟ, ସେ କଥା ପ୍ରମାଣିତ ହୋଇଛି । ବିଶେଷତଃ କାର୍ତ୍ତିକ ମାସର ପୂର୍ଣ୍ଣମୀ ତିଥିରେ ସମସ୍ତ ଓଡ଼ିଆ ରମଣୀମାନେ ପ୍ରାତଃ କାଳରେ କଦଳୀ ପାଟୁକା ବା ସୋଲ ଓ ଜରିରେ ତିଆରି ଛୋଟ ବୋଇତର ପ୍ରତୀକ କରି ସେଥିରେ ପାନ ଗୁଆ ଥୋଇ, ଦୀପ ଜଳାଇ ସେମାନେ ବସବାସ କରୁଥିବା ସ୍ଥଳରେ ଥିବା ସମୁଦ୍ର, ନଦୀ ବା ଜଳାଶୟରେ ଭସାଇ ଦେଇଥାଆନ୍ତି । ସେ ସମୟରେ ଆ–କା–ମା–ବୈ, ପାନ ଗୁଆ ଥୋଇ । ପାନ ଗୁଆ ତୋର, ମାସକ ଧରମ ମୋର ବୋଲି କହି ହୁଳହୁଳି ଦେଇଥାଆନ୍ତି । 'ଆକାମାବୈ'ର ତତ୍ତ୍ୱବିତ୍‌ମାନେ ବହୁ ଅର୍ଥ କରୁଥିଲେ ମଧ୍ୟ ନୌବାଣିଜ୍ୟ ଦୃଷ୍ଟିରୁ ଆଷାଢ଼ଠାରୁ କାର୍ତ୍ତିକ ମାସ ଯାଏଁ ନୌଯାତ୍ରାକୁ ଭୟ କର ନାହିଁ ଅର୍ଥକୁ ଅଧିକ ଗ୍ରହଣ କରାଯାଇଛି । ସତେଯେପରି ସାମାଜିକ ଧର୍ମ ଓ ବାଣିଜ୍ୟ ଏକାକାର ହୋଇ କମନୀୟ ଭାବ ବହନ କରିଅଛନ୍ତି । ବିଶେଷତଃ ଖୁଦୁରୁକୁଣୀ ଓଷା କଳିଙ୍ଗ ନୌବାଣିଜ୍ୟର ସର୍ବଶ୍ରେଷ୍ଠ ପରିଚୟ ସ୍ମାରକୀ ତଥା ସାମାଜିକ ଓ ଅର୍ଥନୈତିକ ପରିଚୟ ଭାବରେ ରହିଛି ବୋଲି ପ୍ରସିଦ୍ଧ କବି ଓ ସମାଲୋଚକ ଡ.ମାୟାଧର ମାନସିଂହ ସ୍ୱରଚିତ "The Sage of LordJagannath" ପୁସ୍ତକରେ ଲେଖିଛନ୍ତି । ତାଙ୍କ ଭାଷାରେ, "The Lovely festival of the simple village girls reflects the socio-economic conditions of the Oriyas in historic times much more sharply than many a research paper". ନୌବାଣିଜ୍ୟ ସହିତ ଓଡ଼ିଆ ଜାତିର ସମ୍ପର୍କ ଅତି ପୁରାତନ ଓ ଭାବୋଦ୍ଦୀପକ, ଯାହାକୁ ପ୍ରକାଶ କରି ହେବନାହିଁ ।

ଓଡ଼ିଶାର ଇତିହାସକୁ ଆଲୋଚନା କଲେ, ତହିଁରେ ସୂର୍ଯ୍ୟ ବଂଶୀରାଜା କପିଳେନ୍ଦ୍ରଦେବଙ୍କ ସମୟରେ ସାଧବମାନେ ଅଧିକ ପରାକ୍ରମ ଓ ଶକ୍ତି ପ୍ରଦର୍ଶନ ପୂର୍ବକ ଏସିଆ ମହାଦେଶ ଦ୍ୱୀପପୁଞ୍ଜ ସହ ଚୀନ୍, ଜାପାନ, ପେରୁ, ସିଂହଳ, ମାଲେସିଆ, କାମ୍ବୋଡିଆ, ବର୍ମା, ଇନ୍ଦୋନେସିଆ ପ୍ରଭୃତି ଦେଶକୁ ନୌବାଣିଜ୍ୟ ନିମିତ୍ତ ଯାତ୍ରା କରି ଉପନିବେଶ ସ୍ଥାପନ କରିଥିଲେ । ସେ ଉପନିବେଶ ସେଠାକାର ନାଗରିକମାନଙ୍କୁ ଶୋଷଣ କରିବା ନିମିତ୍ତ ଉଦ୍ଦିଷ୍ଟ ନଥିଲା ବରଂ ସେମାନଙ୍କ ସହ ସୁସମ୍ପର୍କ ସ୍ଥାପନ କରି କଳିଙ୍ଗ ସଭ୍ୟତାର ପ୍ରଚାର ପ୍ରସାର ନିମିତ୍ତ ଅଭିପ୍ରେତ ଥିଲା । ସେଥିଯୋଗୁଁ ଏବେ ମଧ୍ୟ ଜାଭା, ବାଲି ପ୍ରଭୃତି ଦ୍ୱୀପରେ ଉତ୍କଳୀୟ ସଂସ୍କୃତିର ପ୍ରତିଫଳନ ସେମାନଙ୍କର ରୀତିନୀତିରେ ପ୍ରତିଷ୍ଠା ଲାଭ କରି ପରମ୍ପରାରେ ପରିଣତ ହୋଇଛି । ଏହା ହିଁ କଳିଙ୍ଗ ଓ ଉତ୍କଳ ସାଧବ ପରମ୍ପରାର ସମଗ୍ର ବିଶ୍ୱକୁ ବିଶ୍ୱ ଭ୍ରାତୃତ୍ୱମୂଳକ ନିବେଦନ ।

ଇଂରେଜମାନଙ୍କର ଶାସନ କାଳରେ ଓଡ଼ିଶାର ନୌବାଣିଜ୍ୟିକ ପ୍ରତିଷ୍ଠାର ହାନି ହୋଇଥିଲା । ସେସମୟରେ ପୂର୍ବ ପ୍ରତିଷ୍ଠିତ ବନ୍ଦରଗୁଡ଼ିକ ଅବହେଳିତ ଅବସ୍ଥାରେ ରହିଲେ । ବାଲେଶ୍ୱର, ହରିଶପୁର, ମରିଚପୁର ପ୍ରଭୃତି ନୌବାଣିଜ୍ୟ କେନ୍ଦ୍ରଗୁଡ଼ିକ ମଧ୍ୟ କ୍ରମଶଃ ଗୁରୁତ୍ୱ ହରାଇ ବସିଲେ । ତତ୍‌କାଳୀନ ଓଡ଼ିଶାର ରପ୍ତାନୀ ପ୍ରାୟ ଲୋପପାଇଲା ଓ କେବଳ ନଦୀମାନଙ୍କରେ ଅନ୍ତର୍ବାଣିଜ୍ୟ ଛୋଟ ଛୋଟ ଡଙ୍ଗାଦ୍ୱାରା ଚାଲୁରହିଲା । ବନ୍ଦରର ଅଭାବ ୧୮୬୬ ମସିହାରେ ଓଡ଼ିଶାରେ ହୋଇଥିବା ନଅଙ୍କ ଦୁର୍ଭିକ୍ଷ ସମୟରେ ଇଂରେଜ ଶାସକମାନେ ଅନୁଭବ କଲେ । ସେସମୟରେ ପ୍ରଶାସକ ଜନ୍‌ବିମ୍‌ସ ବିଦେଶରୁ ଚାଉଳ ଜାହାଜରେ ଆଣି ଓଡ଼ିଶା ଉପକୂଳରେ ପହଞ୍ଚାଇବା ପାଇଁ କୌଣସି ଉପଯୁକ୍ତ ବନ୍ଦର ପାଇନଥିଲେ । ଫଳରେ କଲିକତା ବନ୍ଦରରୁ ଜାହାଜ ଭଡ଼ା କରି ବ୍ରହ୍ମଦେଶରୁ ଚାଉଳ ଆମଦାନୀ କରାଗଲା । ସେ ନିଜର ଶାସକୀୟ ଟିପ୍‌ପଣୀରେ ଲେଖିଛନ୍ତି ଯେ, ଦିନେ ବିଶ୍ୱରେ ସମୃଦ୍ଧ ଥିବା ନୌବାଣିଜ୍ୟ ନିପୁଣ ଜାତି, କିଭଳି ନିଜ ଉପକୂଳରେ ଗୋଟିଏ ଜାହାଜ ଚଳାଚଳ କରିପାରିଲା ନାହିଁ, ତାହା ବିସ୍ମୟର କଥା ।

ଭାରତ ସ୍ୱାଧୀନତା ଲାଭ କରିବା ପରେ ପୂର୍ବପାକିସ୍ଥାନକୁ ପୂର୍ବ ଉପକୂଳର ଚିଟାଗଙ୍ଗ ବନ୍ଦର ଚାଲିଯିବା ପରେ ସେହି କ୍ଷତିକୁ ଭରଣା କରିବା ପାଇଁ କେନ୍ଦ୍ର ସରକାର ବହୁ ବିଶେଷଜ୍ଞଙ୍କ ଦ୍ୱାରା ଅନୁଶୀଳନ କରି ନୂତନ ବନ୍ଦର ନିର୍ମାଣ ନିମିତ୍ତ ମହାନଦୀ ମୁହାଣସ୍ଥ ପାରାଦ୍ୱୀପକୁ ସୁପାରିଶ କଲେ । କେନ୍ଦ୍ର ସରକାର

ସେହି ପ୍ରସ୍ତାବକୁ ଗ୍ରହଣ କଲେ ଓ ୧୯୫୮ ମସିହାରେ ତାହାକୁ ଏକ କ୍ଷୁଦ୍ର ବନ୍ଦର ଭାବେ ସ୍ୱୀକୃତି ଦେଲେ। ୧୯୫୮–୫୯ ଆର୍ଥିକ ବର୍ଷରେ କ୍ଷୁଦ୍ରବନ୍ଦର ପାରାଦ୍ୱୀପରୁ ୨୪୦୦୦ ମେଟ୍ରିକ୍‌ଟନ୍ ଲୁହାପଥର ରପ୍ତାନୀ କରାଯାଇଥିଲା। ସେତେବେଳେ ବଡ଼ ଜାହାଜଗୁଡ଼ିକ ସମୁଦ୍ର ବକ୍ଷରେ ରହୁଥିଲେ ଓ କୂଳରୁ ଷ୍ଟିମର ଯୋଗେ ଲୁହାପଥରକୁ ଜାହାଜ ପର୍ଯ୍ୟନ୍ତ ନିଆଯାଇ ଖଲାସ କରାଯାଉଥିଲା। କ୍ଷୁଦ୍ର ବନ୍ଦରର ଭଗ୍ନାବଶେଷ ବର୍ତ୍ତମାନ ସୁଦ୍ଧା ପାରାଦ୍ୱୀପ ନିକଟସ୍ଥ ଚଉମୁହାଣିଠାରେ ରହିଅଛି। ପରେ ଜାପାନ ସରକାର ପାରାଦ୍ୱୀପରୁ ଅଧିକ ଲୁହାପଥର ଆମଦାନୀ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ଏକ ବୃହତ୍ ବନ୍ଦର ନିର୍ମାଣ କରି ତାହା ମଧ୍ୟକୁ ଜାହାଜକୁ ଆଣି ପଣ୍ୟଦ୍ରବ୍ୟ କାରବାର କରିବାପାଇଁ ଭାରତ ସରକାର ଚିନ୍ତା କଲେ। ତତ୍‌କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ବହୁ ପ୍ରଚେଷ୍ଟା କରି ଓ ବିଭିନ୍ନ ସଂସ୍ଥାରୁ ଆବଶ୍ୟକ ଅନୁମୋଦନ ଆଣି, ପାରାଦ୍ୱୀପରେ ବୃହତ୍ ବନ୍ଦର ନିର୍ମାଣ ନିମିତ୍ତ ସ୍ଥିର କଲେ। ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଓ ଅତୀତରେ ଭାରତ ସରକାରଙ୍କୁ ଜଣେ ଦକ୍ଷ ବିମାନଚାଳକ ଭାବରେ ବିପଦ ସମୟରେ ସାହାଯ୍ୟ କରିଥିବାରୁ, ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହେରୁ ପ୍ରକଳ୍ପକୁ ଅନୁମୋଦନ କରି, ୧୯୬୨ ମସିହା ଜାନୁଆରୀ ତିନି ତାରିଖ ଦିନ, ବନ୍ଦରର ଶିଳାନ୍ୟାସ କରିଥିଲେ। ସେଥିରେ ପଣ୍ଡିତ ଜବାହରଲାଲ୍ ନେହେରୁଙ୍କ ଦସ୍ତଖତରେ ଓଡ଼ିଆରେ ଲେଖାଥିଲା, ଏହା ହିଁ ମହାଜାତିର ନିର୍ଦ୍ଦେଶ, ପୁଣି ଏକ ବିରାଟ ଅଭିଯାନ ପଥରେ ମୋର ଏହି ଆହ୍ୱାନ। ବର୍ତ୍ତମାନ ସେହି ଆଧାରଶିଳାକୁ ପାରାଦ୍ୱୀପର ସେକ୍ଟର ୨୪ରେ ଥିବା ଜବାହର ଅତିଥି ଭବନ ସମ୍ମୁଖରେ ସ୍ଥାନିତ କରାଯାଇଛି। ୧୯୬୨ରେ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ୧୯୬୬ ମସିହାରେ ଲୌହପଥର ବୋଝେଇ ବର୍ଥର ନିର୍ମାଣ କାର୍ଯ୍ୟ ଶେଷ ହେଲା। ରାଜ୍ୟ ସରକାରଙ୍କ ଦ୍ୱାରା ଆରମ୍ଭ ହୋଇଥିବା ପାରାଦ୍ୱୀପ ବନ୍ଦରକୁ କେନ୍ଦ୍ର ସରକାର ତା ୧.୬.୬୫ରେ ନିଜ ହାତକୁ ନେଇ ତା ୧୮.୪.୧୯୬୬ରେ ସ୍ୱାଧୀନ ଭାରତର ପ୍ରଥମ ନୂତନ ବୃହତ୍ ବନ୍ଦର ଭାବରେ ମାନ୍ୟତା ଦେଇଥିଲେ। ବର୍ତ୍ତମାନ କୋଡିଏଟି ବିଭିନ୍ନ ଜାହାଜ ରହଣି ସ୍ଥଳ (ବର୍ଥ ଓ ଜେଟି)ର ସମାବେଶରେ ପାରାଦ୍ୱୀପ ବନ୍ଦର ପୃଥିବୀର ଏକ ପ୍ରତିଷ୍ଠିତ ଗଭୀର ବୃହତ୍ ବନ୍ଦର। ୧୯୬୬ ମସିହାରେ ୧୪,୪୩୦ ମେଟ୍ରିକ୍‌ଟନ୍ ଲୁହାପଥର କାରବାର କରିଥିବା ବନ୍ଦର ଗତ ଆର୍ଥିକ ବର୍ଷରେ ୧୦୨ ନିୟୁତ ଟନ୍ ବିବିଧ ପଣ୍ୟଦ୍ରବ୍ୟ କାରବାର କରି ଭାରତରେ ପଣ୍ୟଦ୍ରବ୍ୟ କାରବାର କ୍ଷେତ୍ରରେ ଦ୍ୱିତୀୟସ୍ଥାନ ଅଧିକାର କରିଛି।

ଆଧୁନିକ ଯୁଗରେ ପାରାଦ୍ୱୀପ ବନ୍ଦର କଳିଙ୍ଗର ହୃତ ନୌବାଣିଜ୍ୟିକ ପ୍ରସିଦ୍ଧିର ପୁନରୁଦ୍ଧାର କରିବାକୁ ସମର୍ଥ ହୋଇ ପ୍ରତ୍ୟେକ ଓଡ଼ିଆଙ୍କର ଗୌରବ ହୋଇଛି। ଗୋପାଳପୁର ଓ ଧାମରା ଭାରତ ସରକାରଙ୍କ ଦ୍ୱାରା କ୍ଷୁଦ୍ରବନ୍ଦରର ମାନ୍ୟତା ଲାଭ କରି ପଣ୍ୟଦ୍ରବ୍ୟ ଆମଦାନୀ ଓ ରପ୍ତାନୀ କରୁଛନ୍ତି। ଏହା ବ୍ୟତୀତ ପ୍ରସ୍ତାବିତ ନୂତନ ବନ୍ଦର ସୋନାପୁର, ପାଲୁର, ବାଳିହରଚଣ୍ଡୀ, ଅସ୍ତରଙ୍ଗ, ଜଟାଧାରୀ ମୁହାଁଣ, ବରୁଣେଇ ମୁହାଁଣ, ଚୂଡ଼ାମଣି, ଇଂଚୁରୀ, ଚାନ୍ଦିପୁର, ବାହାବଳପୁର, କୀର୍ତ୍ତନିଆ, ବିଚିତ୍ରପୁର ବା ତଳସାରି କାର୍ଯ୍ୟକାରୀ ହେଲେ ଖ୍ରୀଷ୍ଟପୂର୍ବ ସମୟରୁ ଅର୍ଜନ କରିଥିବା ନୌବାଣିଜ୍ୟିକ ସୁଖ୍ୟାତିକୁ ଓଡ଼ିଶା ଅବ୍ୟାହତ ରଖିବାରେ ସକ୍ଷମ ହୋଇପାରିବ।

ଆତିଥ୍ୟ, ଏମ୍.ଆଇ.ଜି–୧–୨୨୭
ସତ୍ୟସାଇ ଏନ୍‌କ୍ଲେଭ, ଲେନ୍–୨୨
କୋଳଥିଆ, ଖଣ୍ଡଗିରି, ଭୁବନେଶ୍ୱର–୭୫୧୦୩୦



# ରସଗୋଲା: ନୀଳାଦ୍ରି ବିଜେର ନୈବେଦ୍ୟ

**ଅସିତ ମହାନ୍ତି**

ରସଗୋଲା ଓଡ଼ିଶାର । ଏଥିରେ କୌଣସି ସନ୍ଦେହ ନାହିଁ । ଯଥେଷ୍ଟ ତଥ୍ୟ, ପ୍ରମାଣ ବି ଏ ବାବଦରେ ରହିଛି । ଶ୍ରୀଜଗନ୍ନାଥ ମନ୍ଦିରର ପାରମ୍ପରିକ ଭୋଗ ଭିତରେ ମଧ୍ୟ ଏହା ସ୍ଥାନ ପାଇଛି । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ଅନ୍ତିମପର୍ବ 'ନୀଳାଦ୍ରି ବିଜେ'ରେ ଏହା ପାରମ୍ପରିକ ଭାବରେ ଶ୍ରୀଜଗନ୍ନାଥଙ୍କ ପକ୍ଷରୁ ଦେବୀ ଲକ୍ଷ୍ମୀଙ୍କୁ ଅର୍ପିତ ହୋଇଥାଏ । ଅଥଚ ଦୁର୍ଭାଗ୍ୟର ବିଷୟ ଏହି ଯେ ବହୁ ଫମ୍ପା ଓ ମନଗଢ଼ା ତଥ୍ୟକୁ ନେଇ ପଡ଼ୋଶୀ ପଶ୍ଚିମବଙ୍ଗ 'ରସଗୋଲା' ନାମକ ମିଠା ଓ 'ରସଗୋଲା' ଶବ୍ଦକୁ ନିଜର ବୋଲି ଦାବି କରୁଛି । ଶ୍ରୀମନ୍ଦିରର ଏହି 'ନୀଳାଦ୍ରି ବିଜେ'ର ନୈବେଦ୍ୟ ତାଙ୍କ ପାଇଁ କେବଳ ଏକ ପଣ ।



ରସଗୋଲା ଗୋଟିଏ ଛୋଟ ଆଉ ନରମ ମିଠା । ଆକାର ବାଟୁଳିଠାରୁ ଟିକିଏ ବଡ଼ ଅଥଚ ତାହାକୁ ନେଇ ଏକ 'ମିଠାଯୁଦ୍ଧ' ଜାରି ରହିଛି ଦୁଇ ପଡ଼ୋଶୀ ରାଜ୍ୟ ବଙ୍ଗଳା ଓ ଓଡ଼ିଶା ମଧ୍ୟରେ । ୨୦୧୫ ମସିହା ଜୁଲାଇ ମାସ ୩୦ ତାରିଖରେ ଓଡ଼ିଶାରେ 'ରସଗୋଲା ଦିବସ' ପାଳନ କରି ବଙ୍ଗଳାକୁ ଏକ ଜୋରଦାର ଜବାବ ଦେଇଛି ଓଡ଼ିଶା । 'ରସଗୋଲା ଓଡ଼ିଶାର' ଓ 'ରସଗୋଲା ଶ୍ରୀଜଗନ୍ନାଥ ଓ ଦେବୀ ଲକ୍ଷ୍ମୀଙ୍କ ନୀଳାଦ୍ରି ବିଜେ' ନୀତିର ବୋଲି କହିବାକୁ ହେଲେ, ବଙ୍ଗଳାର ଦାବିକୁ ତଥ୍ୟ ଓ ଯୁକ୍ତି ବଳରେ ଖଣ୍ଡନ କରିବା ସହିତ ଓଡ଼ିଶାର ଦାବିକୁ ପ୍ରାମାଣିକ ଭାବରେ ସାବ୍ୟସ୍ତ କରିବାକୁ ପଡ଼ିବ ।

ଗତ ୨୦୧୫ ମସିହାର ମଧ୍ୟଭାଗରେ ରାଜ୍ୟ ସରକାରଙ୍କ ପକ୍ଷରୁ ପାହାଳ ରସଗୋଲା ପାଇଁ ଜି.ଆଇ. (ଭୌଗୋଳିକ ଉପଦର୍ଶନ) ମାନ୍ୟତା ହାସଲ ଉଦ୍ୟମ ଆରମ୍ଭ ହୋଇଥିଲା । ଏହି ମାନ୍ୟତାର ବିଶେଷତ୍ୱ ହେଉଛି– କୌଣସି ନିର୍ଦ୍ଦିଷ୍ଟ ସ୍ଥାନରୁ ଉଦ୍ଭବ ହେଉଥିବା ଉତ୍ପାଦନ ବା ସାମଗ୍ରୀକୁ ଏହାଦ୍ୱାରା ସ୍ୱତନ୍ତ୍ର ଭାବରେ ଚିହ୍ନିତ କରାଯାଏ । ୨୦୦୫–୦୬ରେ ଓଡ଼ିଶାର କୋଟପାଡ଼ ହସ୍ତତନ୍ତ ଲୁଗା ଓ ଇକତ, ୨୦୦୮–୦୯ରେ କୋଣାର୍କର ପଥର ଖୋଦେଇ, ପଟ୍ଟଚିତ୍ର ଓ ପିପିଲିର ଚାନ୍ଦୁଆ କାମ, ୨୦୦୯–୧୦ରେ ଖଣ୍ଡୁଆ ଶାଢୀ, ୨୦୧୧–୧୨ରେ ଗୋପାଳପୁରର ଟସର ବୁଣା, ଗଞ୍ଜାମର କିଆ ଫୁଲ ଓ ଦ୍ରବଣ (ରୁହ), ୨୦୧୨–୧୩ରେ ଧଳାପଥରର ପରଦା ଓ ତନ୍ତବୁଣା, ସମ୍ବଲପୁରୀ ବାନ୍ଧଶାଢୀ ଓ ତନ୍ତବୁଣା ଲୁଗା, ବୋମକାଇ ଶାଢୀ ଓ ଲୁଗା ଏବଂ ବ୍ରହ୍ମପୁରୀ ପାଟ (ଫୋଡ଼ା କୁମ୍ଭ) ଶାଢୀ ଓ ଯୋଡ଼, ୨୦୧୩–୧୪ରେ ଓଡ଼ିଶା ପଟ୍ଟଚିତ୍ର

(ଲୋଗୋ) ଏହି ମାନ୍ୟତାରେ ପଞ୍ଜୀକୃତ ହୋଇଛି। କିନ୍ତୁ ସେହିସବୁ ସାମଗ୍ରୀର ଜି.ଆଇ. ମାନ୍ୟତା ହାସଲ ନେଇ କୌଣସି ବିବାଦର ସୂତ୍ରପାତ ହୋଇନଥିଲା। ହେଲେ ରସଗୋଲା ଯେ ଓଡ଼ିଶାର– ଏ ଦାବି ପାଇଁ ଉଦ୍ୟମ, ଓଡ଼ିଶା ଓ ବଙ୍ଗ ମଧ୍ୟରେ ଦୀର୍ଘଦିନ ଧରି ସୁପ୍ତ ଥିବା ଏକ ବିବାଦକୁ ପୁଣି ଥରେ ତେଜିଦେଲା। ବଙ୍ଗବାସୀ ଚମକି ଉଠିପଡ଼ିଲେ ଏବଂ 'ରସଗୋଲା କେବଳ ଆମର' ବୋଲି ଦୃପ୍ତ କଣ୍ଠରେ ଦାବି କଲେ। ଓଡ଼ିଶାର ସଚେତନ ମହଲ ମଧ୍ୟ ପଛରେ ପଡ଼ିନଥିଲେ। ସମ୍ବାଦପତ୍ର, ପତ୍ରପତ୍ରିକା, ଟେଲିଭିଜନ ଚ୍ୟାନେଲ– ସବୁଠି ଏ ନେଇ ଖବର, ଆଲୋଚନା, ବିତର୍କ ସରଗରମ ହେଲା। ବିଧାନସଭାରେ ବି କଥା ଉଠିଲା। ଫଳରେ ରାଜ୍ୟ ସରକାର ୨୨ ସେପ୍ଟେମ୍ବର, ୨୦୧୫ରେ ତିନିଟି କମିଟି ଗଢ଼ିଦେଲେ। ସେହି ତିନି କମିଟିର କାମ ଥିଲା– ୧. ରସଗୋଲାର ଉଦ୍ଭବ ବା ଆଦିଭୂମି ଯେ ଓଡ଼ିଶା, ସେ ବାବଦରେ ତଥ୍ୟ, ପ୍ରମାଣ ସଂଗ୍ରହ କରି ତାହାର ଜି.ଆଇ. ମାନ୍ୟତା ପାଇଁ ଭାରତ ସରକାରଙ୍କ ବୌଦ୍ଧିକ ସଂପଦ (ଇଣ୍ଟେଲେକ୍ଚୁଆଲ୍ ପ୍ରପର୍ଟି) ସଂସ୍ଥାକୁ ଆବେଦନ କରିବା, ୨. ରସଗୋଲାର ଉଦ୍ଭବ ସ୍ଥଳ ବା ଆଦିଭୂମି ବୋଲି ପଶ୍ଚିମବଙ୍ଗ ଯେଉଁ ଦାବି କରୁଛି, ସେହି ଦାବିର ଅଯଥାର୍ଥତା ସାବ୍ୟସ୍ତ କରିବା ଏବଂ ୩. ବଙ୍ଗର ଯୁକ୍ତିକୁ ଖଣ୍ଡନ ଏବଂ ଓଡ଼ିଶାର ଦାବିକୁ ମଣ୍ଡନ କରି ରସଗୋଲା ଯେ ଓଡ଼ିଶାର ତାହା ସାବ୍ୟସ୍ତ କରିବା ପାଇଁ ଦାବିପତ୍ର ଦେବା।

ଏ ଭିତରେ କେତେକ ଜି.ଆଇ. ବିଶେଷଜ୍ଞ ଗୋଟିଏ ଯୁକ୍ତି ନେଇ ଉଭା ହୋଇଛନ୍ତି ଯେ ରସଗୋଲା ପରି ଏକ ଖାଦ୍ୟ–ଉତ୍ପାଦ ପାଇଁ ଜି.ଆଇ. ମାନ୍ୟତା ଦାବି ଅଯଥାର୍ଥ। କିନ୍ତୁ ତିରୁପତିର ଲଡ଼ୁ, ମଧ୍ୟପ୍ରଦେଶର ରତଲାମି ସେଓ, ଧାରୱାଡ଼ର ପେଡ଼ା, ହାଇଦ୍ରାବାଦର ହାଲିମ ଓ ଜଇନଗର (ପଶ୍ଚିମବଙ୍ଗ)ର ମୁଆଁ ପରି ଖାଦ୍ୟସାମଗ୍ରୀକୁ ଯଦି ଜି.ଆଇ. ମାନ୍ୟତା ମିଳିଛି, ତେବେ 'ଓଡ଼ିଶାର ରସଗୋଲା' ପାଇଁ ସେହି ମାନ୍ୟତା ଦାବି କାହିଁକି ଯଥାର୍ଥ ହେବ ନାହିଁ?

ଓଡ଼ିଶା ହେଉ ବା ବଙ୍ଗଳା– ରସଗୋଲାର ପ୍ରସ୍ତୁତି ଠିକ୍ କେବେଠାରୁ ଓ କେଉଁଠୁ ଆରମ୍ଭ, ତାହାର ଇତିହାସ ଅଜ୍ଞାତ। ତେବେ ବଙ୍ଗଳାରୁ ଏହାର ଉଦ୍ଭବ ବୋଲି ଯେଉଁମାନେ କହନ୍ତି ସେମାନଙ୍କ ପାଇଁ ଗଢ଼ା ହୋଇଛି ନାନା ରୋଚକ କାହାଣୀ।

**କାହାଣୀ: କର୍ଣ୍ଣୱାଲିସ୍**

ବଙ୍ଗଦେଶରେ ଗଢ଼ା ସେହିପରି ଏକ କାହାଣୀ କହେ, ଇଂରେଜ ରାଜତ୍ୱ କାଳରେ ଲର୍ଡ଼ କର୍ଣ୍ଣୱାଲିସ୍ ଥିଲେ ଭାରତର ବଡ଼ଲାଟ୍। ଥରେ ଜମିଦାରମାନଙ୍କଠାରୁ ଅଧିକ ଖଜଣା ପାଇବା ପାଇଁ ସେମାନଙ୍କୁ ସେ ଖୁସି କରିବାକୁ ଚାହିଁଲେ। ସେମାନଙ୍କ ପାଇଁ ଏକ ବଡ଼ ଭୋଜିସଭାର ଆୟୋଜନ କରାଗଲା। ସେତେବେଳର ପ୍ରଥା ଅନୁସାରେ ବଡ଼ ବଡ଼ ଭୋଜିସଭାରେ ବରେଣ୍ୟ ଅତିଥିମାନଙ୍କୁ ମିଠା 'ପୁଡ଼ିଂ' ପରିବେଷଣ କରାଯାଉଥିଲା। କିନ୍ତୁ ଯେଉଁ ବଙ୍ଗାଳୀ ରୋଷେଇଆ ଜଣକ ପୁଡ଼ିଂ ତିଆରି କରିବାରେ ନିଯୁକ୍ତ ଥିଲା, ସେ ହଠାତ୍ ଅସୁସ୍ଥ ହୋଇପଡ଼ିବାରୁ ସେହି ଦାୟିତ୍ୱ ଆଉ ଜଣଙ୍କ ଉପରେ ପଡ଼ିଲା। ସେ ଲୋକଟି ପୁଡ଼ିଂ ତିଆରି ଜାଣି ନଥିଲା। ଫଳରେ ଯେଉଁ କ୍ଷୀରରେ ପୁଡ଼ିଂ ତିଆରି ହେବା କଥା, ସେହି କ୍ଷୀରକୁ ଗରମ କରି ଠିକ୍ ଭାବରେ ସେ ପ୍ରକ୍ରିୟାକରଣ କରିପାରିଲା ନାହିଁ। ଫଳରେ କ୍ଷୀରତକ ଛିଣ୍ଡିଗଲା। ସେଇ ଛିଣ୍ଡାକ୍ଷୀରର ଛେନାକୁ କ'ଣ କରିବ ଜାଣି ନପାରି ସେହି ଲୋକଟି ତାହାକୁ ଗୋଟିଏ ଧୋତିରେ ବାନ୍ଧି ଟାଙ୍ଗିଦେଲା। କିନ୍ତୁ କେମିତି କେଜାଣି ରାତିରେ ତାହାର ଗଣ୍ଠି ଖୋଲିଯାଇ ପାଣି ନିଗିଡ଼ି ଯାଇଥିବା ଛେନାତକ ତଳେ ଥିବା ଗୋଟିଏ କଡ଼େଇ ଭିତରେ ଅଜାଡ଼ି ହୋଇ ପଡ଼ିଲା। ସେହି କଡ଼େଇରେ ଚିନିସିରା ରଖାଯାଇଥିଲା। ପରଦିନ ସକାଳେ ଦେଖିବା ବେଳକୁ ଛେନାତକ ଚିନିସିରାରେ ଭାସୁଛି। ସେଥିରୁ ଟିକିଏ ନେଇ ସେ ଚାଖି ଦେଖିଲା, ଖୁବ୍ ସୁଆଦିଆ ଲାଗୁଛି। ପୁଡ଼ିଂ ବଦଳରେ ସେଇ ଚିନିସିରା–ଭିଜା ଛେନାରୁ କିଛିକିଛି ଅତିଥିମାନଙ୍କୁ ପରିବେଷଣ କରାଗଲା। ସେପରି ସୁଆଦିଆ ମିଠା ସେମାନଙ୍କ ଭିତରୁ କେହି ବି ଆଗରୁ ଖାଇ ନଥିଲେ। ତେଣୁ ସମସ୍ତେ ତାହାର ଉଚ୍ଚ ପ୍ରଶଂସା କଲେ। ସେହି କାହାଣୀ ଅନୁସାରେ, ତାହା ହିଁ ଥିଲା ରସଗୋଲାର ଆଦି ରୂପ।

କିନ୍ତୁ ଏହି କାହାଣୀକୁ ସତ ସାବ୍ୟସ୍ତ କରିବା ପାଇଁ ସେପରି କିଛି ନିର୍ଭରଯୋଗ୍ୟ ତଥ୍ୟ, ପ୍ରମାଣ ମିଳେନାହିଁ। କିନ୍ତୁ କାହାଣୀଟିକୁ ଯଦି ସତ ବୋଲି ଗ୍ରହଣ କରାଯାଏ, ତେବେ

ଦେଖାଯିବ ଯେ ଲର୍ଡ଼ କର୍ଣ୍ଣୱାଲିସ୍ ଇଂରେଜ ଶାସିତ ଭାରତର ପ୍ରଥମ ବଡ଼ଲାଟ୍ (ଗଭର୍ଣ୍ଣର ଜେନେରାଲ) ଥିଲେ ୧୭୮୬ରୁ ୧୭୯୩ ପର୍ଯ୍ୟନ୍ତ। ଅର୍ଥାତ ଏହି କାହାଣୀ ଅନୁସାରେ ବଙ୍ଗଳାରେ ରସଗୋଲାର ପ୍ରଥମ ପ୍ରସ୍ତୁତିର ସମୟ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗ। କିନ୍ତୁ ସେହି ବଙ୍ଗବାସୀ ଦେଉଥିବା ତଥ୍ୟ ଅନୁସାରେ, କଲିକତାରେ ରସଗୋଲା ପ୍ରସ୍ତୁତ ହୋଇଛି ତାହାର ପ୍ରାୟ ୮୦-୯୦ ବର୍ଷ ପରେ, ୧୮୬୮ ମସିହାରେ।

'ରସଗୋଲା' ପୁସ୍ତକର ଲେଖକ ଶ୍ରୀ ଭୌମିକ ଇତିହାସ ଓ ସଂସ୍କୃତିର ଚର୍ଚ୍ଚା ସମ୍ବଳିତ ପ୍ରବନ୍ଧ ଲେଖୁଥିବା ଜଣେ ଲେଖକ ଭାବରେ ବଙ୍ଗଳାର ବିଦ୍ୱତ ସମାଜରେ ସୁପ୍ରତିଷ୍ଠିତ ବୋଲି ପୁସ୍ତକର ମଲାଟ ପୃଷ୍ଠାରେ ସୂଚିତ ହୋଇଛି। ଅଥଚ ତାଙ୍କ ପୁସ୍ତକର ଏହି ଉଦ୍ଧୃତି ପାଠ କଲେ ତାଙ୍କର ବକ୍ତବ୍ୟ କି ବିଭ୍ରାନ୍ତିକର ତାହା ଅନାୟାସରେ ବୁଝିହୁଏ । 'କ୍ଷୀରମୋହନ'ର ନାମାନ୍ତର ହେଉଛି 'କ୍ଷୀରସାଗର'। 'ଉତ୍କଳ ମିଷ୍ଟାନ୍ନ ବ୍ୟବସାୟୀ ସମିତି'ର ସଭାପତି ବିମ୍ବାଧର ବେହେରାଙ୍କ ଅନୁସାରେ– ଛେନାର ଛୋଟ ଛୋଟ ଗୁଳିକୁ ସିରାରେ ସିଝାଇ ଏବଂ ତାହାକୁ ସିଝା କ୍ଷୀରରେ ପକାଇ 'କ୍ଷୀରସାଗର' ପ୍ରସ୍ତୁତ ହୁଏ । ଏହାର ଅନ୍ୟନାମ କ୍ଷୀରମୋହନ। ଏଣୁ ଏହାର ମୁଖ୍ୟ ଉପାଦାନ କ୍ଷୀର ଓ ଛେନା। ଏଣୁ ଏହାକୁ 'ଛେନାର କ୍ଷୀରମୋହନ' କହିବା ଭୁଲ କାହିଁକି ହେବ ? ପୁଣି ତାହା କିପରି 'ସୁନାର ପଥରବାଟି' ପରି ହେବ ? 'କ୍ଷୀରମୋହନ' ପ୍ରକୃତରେ 'କ୍ଷୀରଗୋଲକ' ନୁହେଁ କ୍ଷୀରର ସିରାରେ ଅବଗାହନ କରୁଥିବା ଛେନାଗୋଲକ। ଓଡ଼ିଶାର ପ୍ରସିଦ୍ଧ ଓ ପାରଂପରିକ ରସାବଳିର ପ୍ରସ୍ତୁତି ବିଧି ମଧ୍ୟ ମୋଟାମୋଟି ଏହି ଧରଣର।

**ଛେନା କେବଳ ବଙ୍ଗଳାର ?**

ଶ୍ରୀ ଭୌମିକ ତାଙ୍କ ପୁସ୍ତକରେ ଛେନା ସଂପର୍କରେ ଗୋଟିଏ ହାସ୍ୟାସ୍ପଦ ଦାବି କରି କହିଛନ୍ତି, ''ଛେନା ଶବ୍ଦଟି ବଙ୍ଗରେ ହିଁ ପ୍ରଚଳିତ ହୋଇଥିଲା। ସଂସ୍କୃତ ସାହିତ୍ୟ ବା ଅଭିଧାନରେ 'ଛେନା' ଶବ୍ଦ ନାହିଁ। ସେଠାରେ ଗରମ ଦୁଧକୁ ଦହି ସଂଯୋଗରେ ନଷ୍ଟ କରି ଦେବାର ବିକୃତ ଦ୍ରବ୍ୟକୁ 'ଆମିକ୍ଷା', 'କିଲାଟ' ଏବଂ 'ଦଧିକୁର୍ଚ୍ଚିକା' କୁହାହୋଇଛି। ସଂସ୍କୃତ 'ଛିନ୍ନ' ଶବ୍ଦରୁ 'ଛାନା' ବା 'ଛେନା' ଆସିଛି। ଏହି ଶବ୍ଦଟି ବଙ୍ଗଳାର ନିଜସ୍ୱ ଶବ୍ଦ।'' କିନ୍ତୁ ଓଡ଼ିଶାର ଆଦିକବି ସାରଳା ଦାସଙ୍କ 'ମହାଭାରତ' ଓ ବଳରାମ ଦାସଙ୍କ 'ରାମାୟଣ'ଠାରୁ ଆରମ୍ଭ କରି ପରବର୍ତ୍ତୀ କାଳର ଅନେକ ରଚନାରେ କେବଳ 'ଛେନା' ନୁହେଁ, ଛେନାରୁ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟର ମଧ୍ୟ ପ୍ରଚୁର ଉଲ୍ଲେଖ ମିଳେ। ତୁଳନାତ୍ମକ ଭାବରେ ସେସମୟର ବଙ୍ଗଳା ସାହିତ୍ୟ ପ୍ରାୟ କିଛି ନାହିଁ।

ଓଡ଼ିଶାର ଆଦିକବି ହେଉଛନ୍ତି ସାରଳା ଦାସ। ତାଙ୍କ 'ମହାଭାରତ'ର 'ମଧ୍ୟପର୍ବ'ରେ ଥିବା ବର୍ଣ୍ଣନା ଅନୁସାରେ, ଧର୍ମଯଜ୍ଞର ଆୟୋଜନ କାଳରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ବାରୁଣାବନ୍ତ ଘେନି ଆସିଛନ୍ତି ଏବଂ ମାତା କୁନ୍ତୀ ନିଜ ପୁତ୍ରମାନଙ୍କୁ ଓ ତାଙ୍କୁ ଅନେକ ସୁସ୍ୱାଦୁ ଖାଦ୍ୟ ପରଷିଛନ୍ତି। ସେହି ଖାଦ୍ୟଦ୍ରବ୍ୟ ମଧ୍ୟରେ ଛେନା ଓ ଛେନାଜାତ ସାମଗ୍ରୀ ରହିଛି। ତାହାର ବର୍ଣ୍ଣନା ପ୍ରସଙ୍ଗରେ ସାରଳା ଦାସ ଲେଖିଛନ୍ତି,

ଚକୁଳି ଛୁଞ୍ଚି ପତର ଛେନା ମନୋହର
ଖିରୀ ଖିରିସା ଶାକର ସକଳ ଦ୍ରବ୍ୟ ସାର ।

ସେହିପରି 'ଦାଣ୍ଡି ରାମାୟଣ' ବା 'ଜଗମୋହନ ରାମାୟଣ' ଭାବରେ କଥିତ ବଳରାମ ଦାସଙ୍କ 'ରାମାୟଣ'। ସେଥିରେ ମଧ୍ୟ ଛେନା ଓ ଛେନାଜାତ ସାମଗ୍ରୀର ପ୍ରଚୁର ବର୍ଣ୍ଣନା ଅଛି। ଏହାର ପ୍ରଥମ ସଂପାଦକ ଓ ପ୍ରକାଶକ ପଣ୍ଡିତ ଗୋବିନ୍ଦ ରଥ। ବାଙ୍କିର ପାଟପୁର (ପଦ୍ମନାଭପୁର) ଶାସନରେ ୧୮୪୮ ମସିହାରେ ତାଙ୍କର ଜନ୍ମ। ୧୯୧୮ ମସିହା ମେ ମାସ ୨୯ ତାରିଖରେ ଇହଲୀଳା ସମ୍ବରଣ କରିବା ପୂର୍ବରୁ ଓଡ଼ିଆ ଭାଷା ସାହିତ୍ୟ ପାଇଁ ସେ ଅନେକ କାମ କରିଥିଲେ। ୨୦୦ରୁ ଊର୍ଦ୍ଧ୍ୱ ପୁସ୍ତକର ସଂଗ୍ରହ, ସଂପାଦନା ଓ ରଚନା କରିଥିଲେ। କଟକରେ 'ରଥ ପ୍ରେସ' ନାମରେ ଏକ ମୁଦ୍ରଣାଳୟ ପ୍ରତିଷ୍ଠା କରି ବିଦଗ୍ଧକବି ଅଭିମନ୍ୟୁ ସାମନ୍ତ ସିଂହାର, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ କବିସୂର୍ଯ୍ୟ ବଳଦେବ ରଥ ପ୍ରମୁଖଙ୍କ ରଚିତ ପ୍ରାଚୀନ ଓଡ଼ିଆ କାବ୍ୟର ପ୍ରକାଶନ ସହିତ ଆଧୁନିକ ଓଡ଼ିଆ ସାହିତ୍ୟର ଜନକ ଫକୀର ମୋହନ ସେନାପତିଙ୍କର କେତେକ ପୁସ୍ତକ ମଧ୍ୟ ପ୍ରକାଶ କରିଥିଲେ। ସେ ପ୍ରକାଶ କରିଥିବା 'ଦାଣ୍ଡି ବାଲ୍ମୀକି ରାମାୟଣ' ଏ ପ୍ରସଙ୍ଗରେ ବିଶେଷ ଉଲ୍ଲେଖନୀୟ। ତାହାର ଦ୍ୱିତୀୟ ସଂସ୍କରଣ ଏବେ ଭୁବନେଶ୍ୱରର ପ୍ରାଚୀନ ଗବେଷଣା ଅନୁଷ୍ଠାନ

'କେଦାରନାଥ ଗବେଷଣା ପ୍ରତିଷ୍ଠାନ'ରେ ଉପଲବ୍ଧ । ସେଥିରେ 'ରସଗୋଲା' ରହିଛି ।

ବଳରାମ ଦାସଙ୍କ ରଚିତ ରାମାୟଣର 'ଅଯୋଧ୍ୟା କାଣ୍ଡ'ରେ ଥିବା ବର୍ଣ୍ଣନା ଅନୁସାରେ, ରାମଙ୍କ ବନବାସ ପରେ ଭରତ ଓ ଶତ୍ରୁଘ୍ନ ତାଙ୍କୁ ଫେରାଇ ଆଣିବା ପାଇଁ ଯାଇ ଭରଦ୍ୱାଜ ଋଷିଙ୍କ ଆଶ୍ରମରେ ଆତିଥ୍ୟ ଗ୍ରହଣ କରିଛନ୍ତି । ସେତେବେଳେ ଭରଦ୍ୱାଜ ଋଷି ମାୟାବ୍ରାହ୍ମଣଙ୍କ ଦ୍ୱାରା ପ୍ରସ୍ତୁତ କରାଇ ଭରତ ଓ ଶତ୍ରୁଘ୍ନ ଏବଂ ତାଙ୍କର ଅନୁଚରବର୍ଗଙ୍କୁ ଯେଉଁସବୁ ଖାଦ୍ୟଦ୍ରବ୍ୟ ପରିବେଷଣ କରିଛନ୍ତି, ସେଥି ମଧ୍ୟରେ 'ଦୁଧ ଛେନା' ରହିଛି । ଛେନାରୁ ପ୍ରସ୍ତୁତ ସାମଗ୍ରୀ ମଧ୍ୟରେ ରହିଛି 'ଛେନାପୁରୀ' 'ଛେନା ଲଡୁ', 'ରସଗୋଲା' ଓ 'ରସାବଳି'। ତାହାର ପୃଷ୍ଠା ୭୫-୭୬ରେ ଥିବା ବର୍ଣ୍ଣନା ଅନୁସାରେ, ବଳରାମ ଦାସ ଲେଖିଛନ୍ତି–

'ହିଙ୍ଗୁ ଜିରା ମରିଚ ନଡ଼ିଆ ଦୁଧଛେନା
ଘୃତରେ କରି ନାନାଦି ପିଷ୍ଟକ ରଚନା ।
ମାଛ ମାଏଁସ ଯେ ଛଡ଼ା ଝଡ଼ା ଜଣ ପ୍ରତି
ପଣା ପଇଡ଼ ଯେ ଆଣି ବଳେ ଯାଚି ଦନ୍ତି ।
କ୍ଷୀରି କ୍ଷୀରିଷା ଶାକର ପରଷନ୍ତି ଆଣି
ଏମନ୍ତ ଅନେକ ଦ୍ରବ୍ୟ କେ ପାରେ ବଖାଣି ।
ନାଡ଼ୀ ସରପୁଳି ଯେ ଆରିଷା ଛେନା ପୁରୀ
କାକରା ଛେନାଲଡୁ ଯେ ମାଲପୁଆ ପୁରୀ ।
ସଜମରା ଘିଅ ଆଣି ଦନ୍ତି ବଡ଼ା ବଡ଼ା
ଗଜା କଚୁରୀ ପଣସ ଖୋସା ବିରିବରା ।
କୋରା ରସଗୋଲା ଯେ ଅମୃତ ରସାବଳି
ମଣ୍ଡା ନାନମାନ ଅମୃତପାଣି କଦଳୀ ।'

ସେହିପରି ବ୍ରଜନାଥ ବଡ଼ଜେନାଙ୍କ 'ଅମ୍ବିକା ବିଳାସ' ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ରହିଛି ଛେନା ଓ ଛେନାରୁ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟର ପ୍ରଚୁର ଉଲ୍ଲେଖ ।

ଏ ପ୍ରସଙ୍ଗରେ ବିଶେଷ ଉଲ୍ଲେଖନୀୟ ଯେ ରସଗୋଲାର ମୁଖ୍ୟ ଉପାଦାନ ଛେନା ହୋଇଥିବାରୁ, ଏହାକୁ କେବଳ ବଙ୍ଗଳାର ବୋଲି କହି, ରସଗୋଲା କେବଳ ବଙ୍ଗଳାର ଏହା ସାବ୍ୟସ୍ତ କରିବା ପାଇଁ ଏକ ହାସ୍ୟାସ୍ପଦ ଉଦ୍ୟମ କରିଛନ୍ତି 'ରସଗୋଲା' ପୁସ୍ତକର ଲେଖକ ହରିପଦ ଭୌମିକ । କିନ୍ତୁ ସାରଳା ଦାସ, ବଳରାମ ଦାସ, ବ୍ରଜନାଥ ବଡ଼ଜେନା ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କର ଉପରୋକ୍ତ କୃତିଗୁଡ଼ିକର ଉଲ୍ଲେଖ ତାଙ୍କର ଏହି ଦାବିକୁ ଅସାର ପ୍ରତିପାଦିତ କରେ । କାରଣ, ଗବେଷକଙ୍କ ମତରେ ସାରଳା ଦାସଙ୍କ ସମୟ ହେଉଛି ସୂର୍ଯ୍ୟବଂଶୀ ଗଜପତି ମହାରାଜା କପିଳେନ୍ଦ୍ର ଦେବ (୧୪୩୫-୬୮) ଓ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ (୧୪୬୮-୯୭)ଙ୍କ ସମୟ । ବଳରାମ ଦାସଙ୍କ ସମୟ ୧୪୭୨-୧୫୫୦ ଖ୍ରୀଷ୍ଟାବ୍ଦ ଏବଂ ତାହା ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱର ସମୟ । ବ୍ରଜନାଥ ବଡ଼ଜେନାଙ୍କ ସମୟ ୧୭୩୦-୧୮୦୦ ଖ୍ରୀଷ୍ଟାବ୍ଦ ଏବଂ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ସମୟ ୧୭୬୦-୧୮୦୬ ଖ୍ରୀଷ୍ଟାବ୍ଦ । ଏସବୁ ବଙ୍ଗଳାରେ ନବୀନ ଚନ୍ଦ୍ର ଦାଶଙ୍କ ତଥାକଥିତ 'ରସଗୋଲା'ର ଉଦ୍ଭବ କାଳ ବା ୧୮୬୮ର ବହୁ ପୂର୍ବବର୍ତ୍ତୀ ।

**'ଆମିକ୍ଷା' ଆକ୍ଷେପ**

ଏବେ ଦେଖାଯାଉ ଶ୍ରୀ ଭୌମିକଙ୍କ 'ଆମିକ୍ଷା' ଆକ୍ଷେପ ପ୍ରସଙ୍ଗକୁ । 'ରସଗୋଲ୍ଲା' ପୁସ୍ତକରେ ସେ କହିଛନ୍ତି, ସଂସ୍କୃତ ସାହିତ୍ୟ ବା ଅଭିଧାନରେ 'ଛେନା' ଶବ୍ଦ ନାହିଁ ଅଛି 'ଆମିକ୍ଷା' । କିନ୍ତୁ 'ଆମିକ୍ଷା' କ'ଣ ଛେନା ନୁହେଁ ? ଏ ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ଗୁପ୍ତ ଯୁଗରେ ଅମର ସିଂହଙ୍କ ଦ୍ୱାରା ରଚିତ କୋଷଗ୍ରନ୍ଥ 'ଅମରକୋଷ'ରେ 'ଆମିକ୍ଷା'ର ଉଲ୍ଲେଖ ଅଛି । 'ଅମରକୋଷ'ର ରଚନାକାଳ ପ୍ରାୟ ୪୦୦ ଖ୍ରୀଷ୍ଟାବ୍ଦ । 'ଆମିକ୍ଷା'ର ପ୍ରସ୍ତୁତି ବିଧିରୁ ସ୍ପଷ୍ଟ ସୂଚିତ ଯେ ଏହା କ୍ଷୀରଛେନାର ଏକ ସଂସ୍କୃତ ପ୍ରତିଶବ୍ଦ । ଉଷ୍ମ କ୍ଷୀରରେ ଦହି (ବା ଅମ୍ଳ ଦ୍ରବ୍ୟ) ଯୋଗ କଲେ ଆମିକ୍ଷା (କ୍ଷୀରଛେନା) ପ୍ରସ୍ତୁତ ହୁଏ । 'ରସଗୋଲ୍ଲା' ପୁସ୍ତକର 'ଛାନା ନାମକରଣ' (ଛେନା ନାମକରଣ) ଅଧ୍ୟାୟରେ ମଧ୍ୟ ଶ୍ରୀ ଭୌମିକ ଏହାକୁ ସ୍ୱୀକାର କରିଛନ୍ତି । ଏହା ସତ୍ତ୍ୱେ ''ପ୍ରାଚୀନ ଭାରତରେ 'ଛେନା' ନଥିଲା'ଆମିକ୍ଷା' ଥିଲା'' ବୋଲି ସେ ଯାହା କହିଛନ୍ତି, ତାହାର ଯଥାର୍ଥତା କିଛି ନାହିଁ । କାରଣ 'ଛେନା' ଓ 'ଆମିକ୍ଷା' ସମାନ । ପୁଣି 'ଅମରକୋଷ'ରେ ଛେନାର ପ୍ରସ୍ତୁତିବିଧି ସଂପର୍କରେ ସ୍ପଷ୍ଟ ଉଲ୍ଲେଖ ଥିବା ବେଳେ, ନିଜ ପୁସ୍ତକରେ ''ପ୍ରାଚୀନ ଭାରତରେ

'ଛେନା'ର ବ୍ୟବହାର ନଥିଲା'' ବୋଲି ସେ କହିବା ଅତ୍ୟନ୍ତ ଅସମୀଚୀନ।

ଏ ପ୍ରସଙ୍ଗରେ ଏକ ଆକସ୍ମିକ ସଂଯୋଗ ହେଲା– ଯେଉଁ ୧୮୬୮ ମସିହାରେ ବଙ୍ଗଳାରେ 'ରସଗୋଲା'ର ଆବିଷ୍କାର ହେଲା ବୋଲି କୁହାଯାଉଛି, ସେହି ୧୮୬୮ ମସିହାରେ ଓଡ଼ିଶାରେ ଓ ଓଡ଼ିଆ ଭାଷାରେ 'ଉତ୍କଳ ଭାଷାର୍ଥାଭିଧାନ' ନାମରେ ଏକ ଶବ୍ଦକୋଷ ପ୍ରକାଶ ପାଇଛି। ତାହାର ପୃ–୮୦ରେ ଅଛି 'ଛେନା' ଶବ୍ଦ । ତାହାର ପ୍ରତିଶବ୍ଦ ଓ ଅର୍ଥଭାବେ 'ଆମିକ୍ଷା' ଓ 'ଦୁଗ୍ଧର ବିକାର' ବୋଲି ସ୍ପଷ୍ଟ ଉଲ୍ଲେଖ ଅଛି। ଏଣୁ ଯାହା 'ଆମିକ୍ଷା', ତାହା 'ଛେନା'।

**'ଛେନା' ଦୁଧର ଶବ !**

ଏଥିରେ କୌଣସି ସନ୍ଦେହ ନାହିଁ ଯେ 'ଛେନା' ଶବ୍ଦର ମୂଳ ହେଉଛି ସଂସ୍କୃତ 'ଛିନ୍ନ'। ଓଡ଼ିଆରେ ମଧ୍ୟ ଏ ଦୃଷ୍ଟିରୁ 'ଛେନା ଛିଣ୍ଡିବା'ର ପ୍ରୟୋଗ ଅଛି। ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ତାଙ୍କ 'ଶବ୍ଦତ୍ତ୍ୱବୋଧ ଅଭିଧାନ'ରେ ମଧ୍ୟ 'ଛେନା' 'ଛିନ୍ନ' ଶବ୍ଦରୁ ସୃଷ୍ଟ ବୋଲି କହିଛନ୍ତି। ତାଙ୍କ ଅନୁସାରେ, ଏହା 'ଦୁଗ୍ଧ ବିକାର ବିଶେଷ'। କିନ୍ତୁ 'ଛିନ୍ନ'କୁ ଆଧାର କରି ଶ୍ରୀ ଭୌମିକ ତାଙ୍କ 'ରସଗୋଲ୍ଲା' ପୁସ୍ତକରେ ଛେନାର ଯେଉଁ ବିକୃତ ଅର୍ଥ କରିଛନ୍ତି, ତାହା ସଂପୂର୍ଣ୍ଣ ଭିତ୍ତିହୀନ ମନେହୁଏ। ସେ କହିଛନ୍ତି, ଛେନା ହୁଏ ଦୁଧକୁ ଛିନ୍ନ କରି। ଅମ୍ଳ ସହଯୋଗରେ ଦୁଧକୁ ଛିଣ୍ଡାଇ ଛେନା ହେଉଥିବାରୁ ସଂସ୍କାରର ଜଟିଳ ଜାଲରେ ଅବଙ୍ଗାଳୀ ଭାରତୀୟଙ୍କ ପାଇଁ ତାହା 'ନା–ପାକ' (ଅ–ପାକ) ହୋଇଯାଏ। ଏଣୁ ବଙ୍ଗଦେଶ ବ୍ୟତୀତ ଭାରତରେ ସର୍ବତ୍ର ମିଷ୍ଟାନ୍ନର ପ୍ରଧାନ ଉପକରଣ କ୍ଷୀର। ବଙ୍ଗଦେଶ– କେବଳ ବଙ୍ଗଦେଶ କିନ୍ତୁ ଛେନାକୁ ଅଛୁଆଁ କରି ରଖି ନାହିଁ। ବରଂ ତାହାକୁ ଉପକରଣ ରୂପେ ଉପଯୋଗ କରି ପ୍ରସ୍ତୁତ କରିଛି ନାନା ମିଠା। ଶ୍ରୀ ଭୌମିକ ପୁଣି ଏତିକିରେ ଅଟକି ନାହାନ୍ତି। ଏ ଦିଗରେ ଆଉ ପାଦେ ଆଗେଇ ଯାଇ ଛେନାକୁ ଏକ ମୃତ ପଦାର୍ଥ ରୂପେ ଗ୍ରହଣ କରାଯାଉଥିଲା ବୋଲି ମଧ୍ୟ କହିଛନ୍ତି ।

କିନ୍ତୁ କେବଳ ଯେ ହରିପଦ ଭୌମିକ ଏପରି ମତ ଦିଅନ୍ତି, ତା' ନୁହେଁ। ରସଗୋଲାକୁ ବଙ୍ଗଳାର ବୋଲି ସୂଚାଇବାକୁ ଯାଇ ଭାରତୀୟ ଖାଦ୍ୟର ଖ୍ୟାତନାମା ଗବେଷକ କେ.ଟି. ଆଚାୟା ମଧ୍ୟ ତାଙ୍କ 'ଏ ହିଷ୍ଟୋରିକାଲ ଡିକ୍ସନାରୀ ଅଫ ଇଣ୍ଡିଆନ ଫୁଡ଼'ରେ ଏହାକୁ ସମର୍ଥନ କରନ୍ତି। ରସଗୋଲାର ମୁଖ୍ୟ ଉପାଦାନ ଛେନା ହୋଇଥିବାରୁ ଛେନା ପ୍ରସ୍ତୁତିର ଇତିହାସକୁ ସେ ପର୍ତ୍ତୁଗୀଜମାନଙ୍କର ଭାରତ ଆଗମନର ଇତିହାସ ସହିତ ଯୋଡ଼ିଛନ୍ତି। ତାଙ୍କ ଅନୁସାରେ, ପର୍ତ୍ତୁଗୀଜମାନେ ହୁଗୁଳିର ଚନ୍ଦନ ନଗରଠାରେ ବାଣିଜ୍ୟ ଘାଟି ସ୍ଥାପନ କରିବା ପରେ ବଙ୍ଗାଳୀମାନଙ୍କୁ ଛେନାର ପ୍ରସ୍ତୁତି ଶିଖାଇଥିଲେ।

କିନ୍ତୁ ଇତିହାସ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଯେ ପର୍ତ୍ତୁଗୀଜମାନେ ଭାରତକୁ ଆସିଲେ ଷୋଡ଼ଶ ଶତାବ୍ଦୀର ତୃତୀୟ ଦଶକରେ। କେବଳ ଯେ ହୁଗୁଳି ନଦୀତଟର ଚନ୍ଦନ ନଗର ତାଙ୍କର ବାଣିଜ୍ୟପେଣ୍ଠ ଥିଲା, ତାହା ନୁହେଁ । ସମକାଳରେ ଓଡ଼ିଶାର ବାଲେଶ୍ୱରଠାରେ ମଧ୍ୟ ତାଙ୍କର ବାଣିଜ୍ୟପେଣ୍ଠ ରହିଥିଲା। ତେଣୁ ବଙ୍ଗାଳୀମାନେ ଯଦି ସେମାନଙ୍କଠାରୁ କ୍ଷୀରଛେନାର ପ୍ରସ୍ତୁତି ବିଧି ଶିଖିପାରିଲେ, ତେବେ ଓଡ଼ିଆମାନେ ଶିଖିବାରେ କି ଅସୁବିଧା ଥିଲା ? ଅନ୍ୟ ଦୃଷ୍ଟିରୁ ଦେଖିଲେ, ସାରଳା ଦାସ ଓ ବଳରାମ ଦାସଙ୍କ କୃତିରେ 'ଛେନା'ର ଉଲ୍ଲେଖ ଅଛି ଏବଂ ଏହା ପର୍ତ୍ତୁଗୀଜମାନଙ୍କ କଲିକତା ଆଗମନର ପୂର୍ବବର୍ତ୍ତୀ।

**ଛେନା ପାଇଁ ମନ୍ଦିର ମନା !**

ଅନ୍ୟ କେତେକ ଖାଦ୍ୟ ଗବେଷକ ନିଜ ନିଜର ଲେଖାରେ, 'କ୍ଷୀରର ବିକାର' ହେତୁ ଛେନା ଦେବଭୋଗ ନୁହେଁ ତେଣୁ ତା'ପାଇଁ ମନ୍ଦିର ମନା ବୋଲି ଦର୍ଶାଇଛନ୍ତି। ଶ୍ରୀ ଭୌମିକ ଓ ଶ୍ରୀ ଆଚାୟା ମଧ୍ୟ ସେମାନଙ୍କର ପକ୍ଷଧର। କିନ୍ତୁ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ସମେତ ଅନ୍ୟାନ୍ୟ ଦେବଦେବୀ ମନ୍ଦିରରେ ଛେନାରୁ ପ୍ରସ୍ତୁତ ସାମଗ୍ରୀ ଭୋଗ ରୂପେ ସୁପ୍ରାଚୀନ କାଳରୁ ପ୍ରଚଳିତ ରହିଆସିଛି। ଶ୍ରୀଜଗନ୍ନାଥଙ୍କ ଅଣସର ଓ ନବକଳେବର ସମୟର ମହାଅଣସର ଗୁପ୍ତନୀତିର ଭୋଗନୈବେଦ୍ୟ ମଧ୍ୟରେ ଛେନା ଏକ ମୁଖ୍ୟ ଉପାଦାନ ରୂପେ ଉପଯୋଗ ହୁଏ। ଏହାବ୍ୟତୀତ ଶ୍ରୀଗୁଣ୍ଡିଚା ଓ ବାହୁଡ଼ାଯାତ୍ରା ସମୟରେ, ମାଉସୀ ମା' ମନ୍ଦିରର ପ୍ରସିଦ୍ଧ ପୋଡ଼ପିଠା ଓ ରଥଉପରର ଅଧରପଣା, ଚନ୍ଦନଯାତ୍ରା ସମୟର ତାଡ଼ିଆ ଓ ମାଣ୍ଡୁଅ ଭୋଗ ଏବଂ କେଳି, ଘେଉଳି ଓ ପାରିଜାତକ ଆଦି ପିଠାରେ ଛେନା ଏକ ମୁଖ୍ୟ

ମାଡ ମାରି ଗଡରେ ପହଞ୍ଚାଉଥିଲେ । ଭୋଇ ମୂଳ ନିଜ ଦ୍ୱାରା ନିର୍ବାଚିତ ପାଇକଙ୍କୁ ୨୭ଜଣରେ ଗୋଟିଏ ଦଳ ଗଠନକରି ଗଡଠାରେ ପାଇକରାୟଙ୍କ ଅଧୀନରେ ଦେଉଥିଲେ । ଗ୍ରାମମାନଙ୍କରୁ ପାଇକମାନେ ପାଇକରାୟଙ୍କ ପାଖରେ ପହଞ୍ଚିବା ଦିନଠାରୁ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ତାଙ୍କ ନିର୍ଦ୍ଦେଶରେ ଚାଳିତ ହେଉଥିଲେ । ଗଡନାୟକ, ପାଇକରାୟ ଓ ଗ୍ରାମମାନଙ୍କରୁ ସଂଗୃହିତ ପାଇକମାନେ ଗଜପତି ମହାରାଜାଙ୍କ ସେନା ଦକ୍ଷ ବାହିନୀପତିଙ୍କ ଶିବିରରେ ଏକତ୍ରିତ ହେଉଥିଲେ । ଯୁଦ୍ଧ ସମୟରେ ପ୍ରତି ୫ ଦଳ (୨୭ X ୫୧୩୫) ବା ୧୩୫ ଜଣ ପାଇକଙ୍କ ପାଇଁ ଜଣେ ବୈଦ୍ୟ, ୬ଜଣ ପାଚକ, ୧୨ ଜଣ ବାରିକ, ଯୋଗାଡିଆ ୩ଟି ବଳଦ ଗାଡି, ଧ୍ୱଜାଧାରି ୩ଜଣ ଓ ବୋଝିଆ ୨୭ ଜଣକୁ ନେଇ ଗୋଟିଏ ଦଳ ଗଠିତ ହେଉଥିଲା । ୧ ଦଳ ୨୭ ଜଣ ପାଇକ, ୭୦ ଦଳ – ୧ ଭିଆଣ । ଏକ ଭିଆଣ ପାଇକଙ୍କ ପାଇଁ ୮୦ ଜଣ ଗଡ ନାୟକ ନିଯୁକ୍ତି ହେଉଥିଲେ । ଗଡନାୟକମାନେ ସହକାରୀ ସେନାପତି ହେଲେ ମଧ ସେବକର ଭୂମିକା ଗ୍ରହଣ କରିଥାନ୍ତି । ପାଇକମାନଙ୍କ ପାଇଁ ଖାଦ୍ୟ ଯୋଗାଣ, ସ୍ୱାସ୍ଥ୍ୟ ସଂପର୍କରେ ବୁଝୁଥିଲେ ଓ ପାଇମାନଙ୍କ ଘରକୁ ସମ୍ବାଦ ପ୍ରେରଣର ଦାୟିତ୍ୱ ନେଉଥିଲେ । ଭୋଇ ମୂଳ ସୈନ୍ୟ ନିର୍ବାଚନ କରି ପାଇକମାନଙ୍କୁ ପାଇକରାୟଙ୍କ ଅଧୀନରେ ଦେଉଥିଲେ । ପାଇକମାନେ ଆଦେଶ ଅମାନ୍ୟ କଲେ ପାଇକରାୟ ସେମାନଙ୍କୁ କାର୍ଯ୍ୟରୁ ବହିଷ୍କାର କରି 'ହରିକାଠ' ପ୍ରଦାନ କରୁଥିଲେ । ହରିକାଠର ଅର୍ଥ ହେଲା ଜେଲ ଦଣ୍ଡ ବୁଝାଉଥିଲା । କୌଣସି ସେନାପତି ବିଶ୍ୱାସଘାତକ କଲେ ତା'ର ବଂଶକୁ ହରିକାଠ ଓ ସେନାପତିକୁ ଶୂଳିରେ ବସାଯାଉଥିଲା । କୌଣସି ନିର୍ଦ୍ଦିଷ୍ଟ ଆଦେଶ ଉଲଙ୍ଘନ କଲେ ବିଶିଷ୍ଟ କର୍ମଚାରୀଙ୍କୁ କାର୍ଯ୍ୟରୁ ବହିଷ୍କାର କରାଯାଇ ସେମାନଙ୍କ ମୁଖକୁ ବିଭିନ୍ନ ପ୍ରକାର ରଙ୍ଗରେ ସ୍ଥାୟୀ ଚିତ୍ର କରାଯାଇ ସେମାନଙ୍କୁ ଛାଡି ଦିଆଯାଉଥିଲା । ଏମାନେ ଦେଶର କୁତ୍ସିତ ବ୍ୟକ୍ତି ବୋଲି ବିବେଚିତ ହେଉଥିଲେ । ଓଡିଆ ପାଇକମାନଙ୍କର ବେଶ–ପୋଷାକ ଓ ଯୁଦ୍ଧାସ୍ତ୍ରର ସର୍ବ ପ୍ରଥମ ପ୍ରାଚୀନତା ରୂପ ଦେଖିବାକୁ ମିଳେ । ଭୁବନେଶ୍ୱରସ୍ଥ ଉଦୟ ଗିରିର ରାଣୀ ଗୁମ୍ଫାରେ ଖୋଦିତ ଚିତ୍ର ଏହାର ପ୍ରମାଣ । ପାଇକମାନଙ୍କର ପୋଷାକ ସଂପର୍କରେ ବିଭିନ୍ନ ପ୍ରାଚୀନ ସାହିତ୍ୟ, ବିଭିନ୍ନ ମନ୍ଦିରରେ ଖୋଦିତ ଯୁଦ୍ଧରତ ପାଇକମାନଙ୍କର ଚିତ୍ର ସେସମୟରେ ପାଇକମାନଙ୍କର ବେଶ ପୋଷାକ ସଂପର୍କରେ ସୂଚନା ଦିଏ । ପାଇକମାନେ ଉଭୟ ପୁରୁଷ ଓ ସ୍ତ୍ରୀ ପିନ୍ଧାଲୁଗାକୁ ପାଇକଛା ମାରି ପିନ୍ଧୁଥିଲେ । ଯୁଦ୍ଧ ସମୟରେ ଏମାନେ ମୁଣ୍ଡର ଲମ୍ବା କେଶକୁ ଗଣ୍ଠି ପକାଇ ବାନ୍ଧିଦେଉଥିଲେ । ପାଇକମାନେ ହାତରେ ବଳା ଓ ଗୋଡରେ ତୋଡ ପିନ୍ଧୁଥିଲେ । ଶରୀରର ବିଭିନ୍ନ ଅଂଶ ଯଥା ହାତରେ କଙ୍କଣ, ମୁଣ୍ଡରେ ଧଳା ପଗଡି, ବାହୁରେ ବାହୁଟି, ଅଣ୍ଟାରେ ଧଳା ପାଗେଟି, ବେତଣ ବକ୍ଷରେ ମୁକ୍ତାମାଳ, କଟିରେ ଖଣ୍ଡା, ଲଲାଟରେ କସ୍ତୁରୀ ଓ ସିନ୍ଦୂର ଟୋପା, କର୍ଣ୍ଣରେ କୁଣ୍ଡଳ, ଡାହାଣ ହାତରେ ଶର, ଡାହାଣ ଗୋଡରେ ନୂପୁର, ବାମ ହାତରେ ଧନୁ ଆଦି ଧାରଣ କରୁଥିଲେ । ପାଇକମାନଙ୍କର ଲମ୍ବାନିଶ, ଗାଲମୋଟାକଲି, ଛାତିରେ ସାଞ୍ଜୁ ଓ ଅଣ୍ଟାରେ ଦୋକଛା ଥାଏ । ଶକ୍ତିକୁ ଆରାଧନା କରି ପାଇକମାନେ ବିଜୟ ଟୀକା ପିନ୍ଧୁଥିଲେ । ଏହାକୁ ସିନ୍ଦୂର ଶିରୀ କୁହାଯାଏ । ସାରଳା ଦାସଙ୍କ ମହାଭାରତରେ ପାଇକମାନଙ୍କର ବେଶଭୂଷା ସଂପର୍କରେ ବିସ୍ତୃତ ବର୍ଣ୍ଣନା ରହିଛି । ଅଭିମନ୍ୟୁ ସାମନ୍ତ ସିଂହାରଙ୍କର 'ବିଦଗ୍ଧ ଚିନ୍ତାମଣି' କାବ୍ୟର ୬୫ ଛନ୍ଦରେ ଗୋପାଳ ବାଳକମାନଙ୍କର ମାଲ ବିନ୍ଧାରଣ କ୍ରୀଡାର ଯେଉଁ ବର୍ଣ୍ଣନା ରହିଛି ତାହା ପାଇକମାନଙ୍କର ଖେଳକୁ ମନେ ପକାଇ ଦିଏ । ଚତୁରଙ୍ଗ ଓଡିଆ ପାଇକ ସେନା ଭିନ୍ନ ଭିନ୍ନ ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ । ଜଣେ ଜଣେ ପାଇକ ଏକାଧିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥିଲେ । ବୀର ସର୍ବସ୍ୱ ଗ୍ରନ୍ଥ ଅନୁଯାୟୀ ପାଇକମାନେ ୫୦ ପ୍ରକାରର ଯୁଦ୍ଧାସ୍ତ୍ର ବ୍ୟବହାରରେ ନିପୁଣ ଥିଲେ । ଓଡିଆ ପାଇକମାନେ ସର୍ବାଧିକ ୪୦ଟି ବ୍ୟୂହ ରଚନା ପଦ୍ଧତି ଜାଣିଥିଲେ । ପାଇକମାନେ ଯୁଦ୍ଧରେ ବିଭିନ୍ନ ପ୍ରକାର ପାରମ୍ପରିକ ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ । ସେଗୁଡିକ ହେଲା– ତୋପ, ତୋଡାଦାର, ବନ୍ଧୁକ, ଧନୁତୀର, ତାର, ତରବାରୀ, ତେଣ୍ଟା, ଗୁପ୍ତି, କଟାର, ବର୍ଚ୍ଛା, କାତି, ଛୁରୀ, ବାଙ୍କଛୁରୀ ଫାର୍ସା, ମୁଦ୍ଗର, କୁନ୍ତ ଭାଲୀ ଇତ୍ୟାଦି । ପାଇକମାନେ ବ୍ୟବହାର କରୁଥିଲେ ଧ୍ୱଜବନ୍ଧ ଖଣ୍ଡା ନଖ ବନ୍ଧ ଖଣ୍ଡା, ରାଜ ବନ୍ଧଖଣ୍ଡା, ପାନବନ୍ଧ ଖଣ୍ଡା, ଧ୍ୱଂସ ବନ୍ଧ ଖଣ୍ଡା, କୁର୍ମବନ୍ଧ ଖଣ୍ଡା, ଇତ୍ୟାଦି । ଏବେ ମଧ ଖଣ୍ଡାୟତ ସମାଜରେ ଯେଉଁ ପାଇକଙ୍କର ପୁରୁଣା ଅସ୍ତ୍ରଶସ୍ତ୍ର ରହିଛି ତାକୁ ପୂଜାର୍ଚ୍ଚନା କରନ୍ତି । ଦଶହରା

ସମୟରେ ପାଇକମାନଙ୍କର ବଂଶଧରମାନେ ଦଶହରା ପଡିଆରେ ଗୀତ ଗାଇ ଖଣ୍ଡା ଖେଳ କରିଥାନ୍ତି ।

ଉଡ୍ର ବା ଓଡିଶା ଏକ ତନ୍ତ୍ର ପୀଠ ଥିଲା । ଓଡିଆ ପାଇକମାନେ ଯୁଦ୍ଧ କୌଶଳ ସହିତ ମନ୍ତ୍ର ପ୍ରୟୋଗ କରୁଥିଲେ । ମନ୍ତ୍ର ଜପଦ୍ୱାରା ପାଇକମାନଙ୍କର ଏକାଗ୍ରତା ବୃଦ୍ଧି ସହିତ କର୍ମ ସଚେତନତା ସୃଷ୍ଟି ହୋଇଥାଏ । ମନ୍ତ୍ର ଉଚ୍ଚାରଣ ଦ୍ୱାରା ଶରୀରରେ ବାୟୁ ସଞ୍ଚାଳନ ଠିକ୍ ଭାବରେ ହୋଇଥାଏ ଏବଂ ଯୁଦ୍ଧ ପାଇଁ ଶକ୍ତି ପ୍ରଦାନ କରେ । ଉଡ୍ର ପାଇକମାନେ ଜାଣିଥିବା ୨୦ଟି ମନ୍ତ୍ର ବିଭିନ୍ନ ପୋଥିରୁ ସଂଗୃହିତ ହୋଇଅଛି । ପତାକା ବା ଧ୍ୱଜା ପାଇକମାନଙ୍କର ଆତ୍ମ ସମ୍ମାନ ଓ ସ୍ୱାଭିମାନର ପ୍ରତୀକ ଅଟେ । ଯୁଦ୍ଧ କ୍ଷେତ୍ରରେ ଧ୍ୱଜ ଦଣ୍ଡର ବ୍ୟବହାର ପ୍ରାୟ ପ୍ରତ୍ୟେକ ଦେଶରେ ଥିଲା । ଯୁଦ୍ଧ କ୍ଷେତ୍ରରେ ବିପୁଳ ସେନା ବାହିନୀ ମଧ୍ୟରେ କୌଣସି ନିର୍ଦ୍ଦେଶ ଓ ସୂଚନା ଦେବାକୁ ଭିନ୍ନ ଭିନ୍ନ ବିଷୟରେ ଭିନ୍ନ ଶୋଭିତ ଦଣ୍ଡ ବା ପତାକା ବ୍ୟବହାର କରାଯାଉଥିଲା । ଓଡିଆ ପାଇକ ସେନା ଯୁଦ୍ଧରେ ମୀନ କେତନ, ଫରକା ବୀର ଘଣ୍ଟା, ଓଳମାଳ, ଆଲମ୍ୱ, ଢ଼ାଗା, ସୁଦଣ୍ଡ, ସୁମଦଣ୍ଡ, ଉଦଣ୍ଡ ପ୍ରଭୃତି ପତାକା ଓ ଦଣ୍ଡର ବ୍ୟବହାର କରୁଥିଲେ । ଏ ସଂପର୍କରେ କହ୍ନେଇ ଚମ୍ପତି ରାୟଙ୍କ ପାଇକ ଖେଦା ପୁସ୍ତକରେ ଉଲ୍ଲେଖ ଅଛି –

କହିବା ଶୁଣ ରଂଜାଇ
ପାଇକର ପଣ ଯହିଁ ଅଛଇ ଯେ
ଜାତି ଟେକ ବୋଲି ତାକୁ କହି, ପାଇକରେ ॥
ବାନା ଗହନ ଅଟଇ
ସାହା ଅଟେ ତାକୁ ମା' ବରୁଣେଇ ଯେ
ନାମ କହିବା ବୁଝାଇ ପାଇକରେ ॥
ଆଦି ଆଲମ୍ୱ ନିଶାଣ
ଏମାନେ ଅଟଇ ବାନା ପ୍ରମାଣ ଯେ
ଧ୍ୱଜା ଯେ ଥାଇ ଗହନ ପାଇକରେ ॥
ପଛରେ ଥାଇ ଶଗଡି
ତହିଁରେ ଭିଡଇ ବାନାକୁ ଭିଡି
ଯହିଁ ଥାଏ ସୁନା ଛଡି, ପାଇକରେ ॥
ଢ଼ଗା, ଉଦଣ୍ଡ, ସୁଦଣ୍ଡ
ଆବର ଅଛଇ ସେ ସମଦଣ୍ଡ ଯେ
ଗାଢ଼ ସମରେ ଦୁରୁଦଣ୍ଡ ପାଇକରେ ॥
ଯୋଡା ଯେ ମୀନ ପତାକା
ସମର ଗହଣେ ମହତ ପକା
ଜାଣ ଗୁରୁଜେ ଫରକା ପାଇକରେ ॥
ବାନା ଦଶହାତ ହେବ
ଉକ୍ତ ପାତ ଶୁକ୍ଳ କଳା ମାନ ଥିବ
ମେଘା ତଳେ ଯୋଗ ହେବ, ପାଇକରେ ॥

ଘେରୁଆ ପାଇକ, ଛେକା ପାଇକ, ଡାକୁଆ ପାଇକ, ଅନ୍ଧାରିଆ ପାଇକ, ଛଟୋଇ ପାଇକ, ହାତୀ ନାୟକ ପାଇକ, ଶିକୁଳା ପାଇକ ମୁରୁଣି ଓ ମରୁଡି ପାଇକ, ରୁକା ପାଇକ, ବାଦ୍ୟ ପାଇକ, ଜଳପାଇକ ବା ପୋତ ପାଇକ ଇତ୍ୟାଦି ସମସ୍ତଙ୍କର ଏକତ୍ରିକରଣରେ ପାଇକ ବାହିନୀ ଗଠିତ । ଉଡ୍ର ବା ଓଡିଆ ପାଇକମାନେ ୧୦ ପ୍ରକାର କର୍ମରେ ଦକ୍ଷତା ଅର୍ଜନ କରିଥିଲେ । ୫ଟି କୃଷି କର୍ମ ଯଥା– କର୍ଷଣ, ବପନ , ବେଉଷଣ, କଟା ଓ ପିଟା । ଯଦ୍ଧରେ ୫ଟି କର୍ମ ଯଥା – ପା' ଶିକ୍ଷା ଯୁଦ୍ଧ କୌଶଳ ଶିକ୍ଷା କୁସ୍ତି କସରତ ଶିକ୍ଷା, ଯୁଦ୍ଧ ବାଦ୍ୟ ଶିକ୍ଷା, ପାଇକ ବୋଲି ଶିକ୍ଷା । ପାଇକ ସଂସ୍କୃତି ଓଡିଆ ସାଂସ୍କୃତିକ ଭାବଧାରାକୁ ବହୁ କ୍ଷେତ୍ରରେ ପ୍ରଭାବିତ ଓ ଅନୁପ୍ରାଣିତ କରି ଅଛି । ପାଇକ ନୃତ୍ୟ, ଗୀତ, ସଂଗୀତ କ୍ରୀଡା ଇତ୍ୟାଦି ପରବର୍ତ୍ତୀ ସମୟରେ ଆମ ଲୋକ ଗୀତ, ସଂଗୀତ, ନୃତ୍ୟରେ ରୂପାନ୍ତରିତ ହୋଇଅଛି । ଓଡିଆ ପାଇକର ବୀରତ୍ୱ ଆଦି ବଞ୍ଚି ରହିଛି ଲୋକ କଥା, କିମ୍ୱଦନ୍ତୀ, ଆଖ୍ୟାୟିକା ଶିଳାଲେଖ ଓ ତାମ୍ର ଫଳକରେ କାରୁକାର୍ଯ୍ୟ କାସିଆ କପିଳା, କାଞ୍ଚି ଅଭିଯାନ ଓ କଳାପାହାଡ ଆକ୍ରମଣ ଇତ୍ୟାଦି କିମ୍ୱଦନ୍ତୀରେ ପାଇକମାନଙ୍କର ବୀରତ୍ୱପୂର୍ଣ କାହାଣୀ ବର୍ଣ୍ଣିତ ଅଛି । କଳିଙ୍ଗ ସମ୍ରାଟ ମହାମେଘବାହନ ଐର ଖାରବେଳଙ୍କ ସାମରିକ ଅଭିଯାନ, କପିଳେନ୍ଦ୍ର ଦେବଙ୍କ ବୀରତ୍ୱପୂର୍ଣ୍ଣ କାହାଣୀ, ପୁରୁଷୋତ୍ତମ ଦେବଙ୍କ ସାମରିକ ଅଭିଯାନ ଇତ୍ୟାଦିରେ ପାଇକମାନଙ୍କର ସଂଘର୍ଷପୂର୍ଣ୍ଣ କାହାଣୀ ଉଲ୍ଲେଖ ଅଛି । ଲୋକଗୀତରେ ପାଇକମାନଙ୍କର ବେଶଭୂଷା, ଅସ୍ତ୍ରଶସ୍ତ୍ର ବ୍ୟବହାର, ପାଇକ ଓଗାଳ, କ୍ଷେତ୍ରୀୟ ବଚନ, ଯୁଦ୍ଧ କୌଶଳ ଇତ୍ୟାଦି ରହିଥାଏ । ପାଇକ ବାଦ୍ୟ

ଆମ ଲୋକ ବାଦ୍ୟକୁ ପ୍ରଭାବିତ କରିଅଛି । ପୁରୀ ସାହିଯାତରେ ବ୍ୟବହୃତ ହେଉଥିବା ବାଦ୍ୟ ପାଇକମାନଙ୍କର ବୀର ବାଦ୍ୟ ଅଟେ । ସାହିଯାତରେ ପ୍ରଚଳିତ ଥିବା ମୁଖ୍ୟ ଚାରି ମେଢ଼ ପର୍ଶୁରାମ ରାବଣ, ଦେବୀ ଓ ନାଗାଙ୍କ ନୃତ୍ୟ ହେଉଛି ପାଇକ ପରମ୍ପରାର ବୀରନୃତ୍ୟ । ସାହିଯାତ ନୃତ୍ୟରେ ଚାଲି ଓ ଠାଣି ବୀର ରସରେ ଆଚ୍ଛାଦିତ । ସାହିଯାତରେ ବ୍ୟବହୃତ ହେଉଥିବା ବାଦ୍ୟ ଚାଙ୍ଗୁ, କାହାଳୀ, ମହୁରୀ, ଭେରୀ, ଯୋଡି ନାଗରା, ଯୋଡି ମହୁରୀ, ତେଲିଙ୍ଗି ବାଜା, ଶିଙ୍ଗା, ଶଙ୍ଖ ଇତ୍ୟାଦି ବାଜିଥାଏ । ଏହି ବାଦ୍ୟ ପାଇକ ବାଦ୍ୟ ଭାବରେ ପରିଚିତ ଓ ଅନ୍ୟ ସାମାଜିକ ଉତ୍ସବରେ ମଧ୍ୟ ବାଜିଥାଏ । ଓଡିଆ ସାହିତ୍ୟରେ ମଧ୍ୟ ପାଇକ ପରମ୍ପରା ଓ ସଂସ୍କୃତି ସଂପର୍କରେ ଅନେକ ଆଲେଖ୍ୟ ଓ ସଂଦର୍ଭ ଉପସ୍ଥାପିତ ହୋଇଅଛି । କହ୍ନେଇ ଚମ୍ପତିରାୟଙ୍କ ରଚିତ ପାଇକ ଖେଦା ଓଡିଶାର ସମର କୌଶଳ, ଯୁଦ୍ଧାସ୍ତ୍ର, କ୍ଷେପଣାସ୍ତ୍ର, ବ୍ୟୁହ ରଚନା ଯୁଦ୍ଧ ଭେଦ, ଚତୁରଙ୍ଗ ସେନା, ସମର ପତାକା, ଯୁଦ୍ଧବାଦ୍ୟ ସଂଗୀତ ଯୁଦ୍ଧରେ ଆହତ ମାନଙ୍କ ପାଇଁ ଚିକିତ୍ସା ବ୍ୟବସ୍ଥା ପାଇକ ଜାତିର ଇତିହାସ, ଯୋଗ୍ୟତା, ଶ୍ରେଣୀ ବିଭାଗ, ଦୁର୍ଗ ଭେଦ ଓ ଯୁଦ୍ଧ ଦଣ୍ଡ ସଂପର୍କରେ ଉଲ୍ଲେଖ ଅଛି । ସାରଳା ଦାସଙ୍କ ଓଡିଆ ମହାଭାରତରେ ପାଇକମାନଙ୍କ ସଂପର୍କରେ ଅନେକ ତଥ୍ୟ ରହିଛି । ପୁରୁଷୋତ୍ତମ ଦାସଙ୍କ କାଞ୍ଚି କାବେରୀ ବ୍ରଜନାଥ ବଡଜେନାଙ୍କର ସମର ତରଙ୍ଗରେ ଯୁଦ୍ଧ ପକ୍ରିୟା ବର୍ଣ୍ଣିତ ଅଛି । ଚଇତି ଘୋଡା ନାଚ, ଛଉନାଚ, ଘୁମୁରା ନାଚରେ ପାଇକମାନଙ୍କର ସାଂସ୍କୃତିକ ପରିଚୟ ମିଳିଥାଏ । ଆଧୁନିକ ଯୁଗର ସୁନାମଧନ୍ୟ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ପାଇକ, ପାଇକବଧୂ ଇତ୍ୟାଦି କବିତା ରଚନା କରିଛନ୍ତି । ଗୋଦାବରୀଶ ମିଶ୍ର ଏହା ଉପରେ ଏକ ନାଟକ ରଚନା କରିଛନ୍ତି, ତାହାହେଲା ଅଠର ଶହ ସତର ଓ କବିତା ଉଠ କଙ୍କାଳ ରଚନା କରିଛନ୍ତି । କବି ସଚ୍ଚି ରାଉତରାୟଙ୍କ କବିତା ବଜାରେ ବଜା ପାଇକ ବଜା ପାଇକ ପରମ୍ପରା ଉପରେ ଆଧାରିତ । ପାଇକ ସଂସ୍କୃତି ଅନନ୍ୟ ଓ ଅସାଧାରଣ । ଏହା ଓଡିଆ ଜାତିର ପରିଚୟ ଓ ସ୍ୱାଭିମାନର ପ୍ରତୀକ । ପାଇକ ସଂସ୍କୃତି ଓଡିଆ ଜାତିର ଗର୍ବ ଓ ଗୌରବ ।

୧୮୦୩ ମସିହାରେ ଇଂରେଜମାନେ ଓଡିଶା ଅଧିକାର କଲେ । ପୂର୍ବ ଚୁକ୍ତି ଅନୁଯାୟୀ ଇଂରେଜମାନେ ଚାରୋଟି ମାହଲ ପୁରୀ ରାଜା ମୁକୁନ୍ଦ ଦେବ ଦ୍ୱିତୀୟ ଓ ପ୍ରଧାନମନ୍ତ୍ରୀ ଜୟୀ ରାଜଗୁରୁଙ୍କୁ ଫେରାଇବାର ବ୍ୟବସ୍ଥା ଥିଲା କିନ୍ତୁ ଇଂରେଜ କର୍ତ୍ତୃପକ୍ଷ ପୂର୍ବ ଚୁକ୍ତି ଅମାନ୍ୟ କରି ଚାରଟି ମାହଲ ଫେରେଇବାକୁ ଅନିଛା ପ୍ରକାଶ କଲେ । ଏହାଦ୍ୱାରା ରାଜା ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କଲେ । ରାଜା ମୁକୁନ୍ଦ ଦେବ ଦ୍ୱିତୀୟ ପରାସ୍ତ ଓ ବନ୍ଦୀ ହେଲେ ଏବଂ ଜୟୀ ରାଜଗୁରୁଙ୍କୁ ମେଦିନିପୁର ଜିଲ୍ଲାର ବାଘି ତୋଟାଠାରେ ଫାସୀ ଦିଆଗଲା । ଖୋର୍ଦ୍ଧା ଇଂରେଜ ସରକାରଙ୍କର ପ୍ରତ୍ୟକ୍ଷ ଶାସନାଧୀନ ହେଲା । ମେଜର ଫ୍ଲେଚର ୧୮୦୫ ମସିହାରେ ଖୋର୍ଦ୍ଧାରେ ଭୂବନ୍ଦୋବସ୍ତ କରାଇଥିଲେ । ଏହି ବନ୍ଦୋବସ୍ତ ଦ୍ୱାରା ବଂଶାନୁକ୍ରମିକ ଭାବରେ ପାଇକମାନେ ଭୋଗ କରି ଆସୁଥିବା ନିଷ୍କର ଜମିକୁ ଇଂରେଜମାନେ ନିଜ ହାତକୁ ନେଲେ । ଖୋର୍ଦ୍ଧା ଇଂରେଜମାନଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ଶାସିତ ହେବାର ପାଇକମାନେ ତାଙ୍କର ସାମରିକ ବୃତ୍ତି ହରାଇଲେ । ପାଇକମାନେ ତାଙ୍କର ନିଷ୍କର ଜମି ହରାଇ ନିସ୍ୱ ହୋଇଗଲେ । ପାଇକ ଓ ସାଧାରଣ ରୟତମାନଙ୍କର ବ୍ୟବସ୍ଥା ଖୋର୍ଦ୍ଧାରେ ଅତି ଶୋଚନୀୟ ହୋଇପଡିଥିଲା । ଇଂରେଜମାନଙ୍କର ଆର୍ଥିକ ନୀତି ଅନେକ ଜନଅସନ୍ତୋଷ ସୃଷ୍ଟି କରିଥିଲା । ଇଂରେଜ ସରକାରଙ୍କର ଏକ ଚାଟିଆ ଲବଣ ନୀତି ଫଳରେ ସାଧାରଣ ଜନତା ବହୁ ଅସୁବିଧାର ସମ୍ମୁଖୀନ ହେଲେ । କଉଡିର ବିମୁଦ୍ରୀକରଣ ମଧ୍ୟ ପାଇକ ବିଦ୍ରୋହ ପାଇଁ ପଥ ଉନ୍ମୁକ୍ତ କରିଥିଲା । ଭୂ ରାଜସ୍ୱ ନୀତି, ଜମିଦାର, ରୟତମାନଙ୍କୁ ଅସନ୍ତୁଷ୍ଟ କରିଥିଲା । ଇଂରେଜ ସରକାରଙ୍କର ପ୍ରଶାସନିକ ନୀତି ଯଥା– ବାରମ୍ବାର ସ୍ୱଳ୍ପ ମିଆଦୀ ବନ୍ଦୋବସ୍ତ କରିବା, ଭୂ ରାଜସ୍ୱ ବାରମ୍ବାର ମାତ୍ରାଧିକ ବୃଦ୍ଧି କରିବା ଏବଂ ପ୍ରାକୃତିକ ବିପର୍ଯ୍ୟୟ ସତ୍ତ୍ୱେ ଖଜଣା ହ୍ରାସ ନ କରିବା ପ୍ରଭୃତି ସାଧାରଣ ଜନତା ମନରେ ଗଭୀର ଅସନ୍ତୋଷ ସୃଷ୍ଟି କରିଥିଲା । ଖୋର୍ଦ୍ଧା ରାଜାଙ୍କର ବକ୍ସି ତଥା ସେନାଦକ୍ଷ ଜଗବନ୍ଧୁ ବିଦ୍ୟାଧର ଭ୍ରମରବରରାୟ ମହାପାତ୍ରଙ୍କର ଜମିଦାରୀ ରୋଢ଼ଙ୍ଗ ଗଡକୁ ଚକ୍ରାନ୍ତ କରି ତାଙ୍କଠାରୁ ଛଡାଇ ନିଆଗଲା । ଉପରୋକ୍ତ ଘଟଣା ୧୮୧୭ ମସିହା ପାଇକ ବିଦ୍ରୋହ ପାଇଁ ଏକ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରି ଥିଲା । ବକ୍ସି ଜଗବନ୍ଧୁ ପୁରୀଠାରେ ଅବସ୍ଥାପିତ ରାଜାଙ୍କୁ ସାକ୍ଷାତ କରି ବିଦ୍ରୋହର ନେତୃତ୍ୱ ନେବା ପାଇଁ ଅନୁରୋଧ

କରିଥିଲେ । ବକ୍ସି ଜଗବନ୍ଧୁଙ୍କର ଆଶା ଥିଲା ଖୋର୍ଦ୍ଧା ରାଜା ବିଦ୍ରୋହର ନେତୃତ୍ୱ ନେଲେ ତାଙ୍କ ଅଧୀନରେ ଥିବା ଗଡଜାତ ରାଜାମାନେ ବିଦ୍ରୋହରେ ଅଂଶ ଗ୍ରହଣ କରିବେ । କିନ୍ତୁ ରାଜା ବିଦ୍ରୋହରେ ନେତୃତ୍ୱ ନେବା ପାଇଁ ଅନିଚ୍ଛା ପ୍ରକାଶ କଲେ । ୧୮୧୭ ମସିହା ମାର୍ଚ୍ଚମାସ ଶେଷ ସପ୍ତାହରେ ଘୁମୁସରରୁ ୪୦୦ ଆଦିବାସୀ କନ୍ଧ ଆସି ଖୋର୍ଦ୍ଧାରେ ପହଞ୍ଚିବା ପରେ ବିଦ୍ରୋହ ଆରମ୍ଭ ହେଲା । ବକ୍ସି ଜଗବନ୍ଧୁଙ୍କୁ ସମର୍ଥନ କରି ଦଳେଇ, ଦଳବେହେରା ଓ ପାଇକମାନେ ବିଦ୍ରୋହରେ ଯୋଗଦାନ କରିଥିଲେ । ବାଣପୁରରେ ବିଦ୍ରୋହୀମାନେ ଥାନା, ସରକାରୀ କାର୍ଯ୍ୟାଳୟ, ଆକ୍ରମଣ କରିବା ସହିତ କୋଷାଗାର ଲୁଣ୍ଠନ କରିଥିଲେ । ବିଦ୍ରୋହୀମାନେ ବାଣପୁରରୁ ଖୋର୍ଦ୍ଧା, ଅଭିମୁଖେ ଯାତ୍ରା କଲେ । ଖୋର୍ଦ୍ଧାରେ ସେମାନେ ସରକାରୀ କାର୍ଯ୍ୟାଳୟରେ ଅଗ୍ନି ସଂଯୋଗ କଲେ ଏବଂ କୋଷାଗାର ଲୁଣ୍ଠନ କଲେ । ବିଦ୍ରୋହ ଦମନ କରିବା ଉଦ୍ଦେଶ୍ୟରେ ଇଂରେଜ କର୍ତ୍ତୃପକ୍ଷ ଲେଫ୍‌ଟନାଣ୍ଟ ଫିଡକସଙ୍କ ନେତୃତ୍ୱରେ ଏକ ସୈନ୍ୟ ଦଳକୁ ଖୋର୍ଦ୍ଧା ପଠାଇ ଥିଲେ ଓ ଅନ୍ୟ ଏକ ସୈନ୍ୟଦଳକୁ ଫାରିସଙ୍କ ନେତୃତ୍ୱରେ ପିପିଲି ଅଭିମୁଖେ ପଠାଇଲେ । ଲେଫ୍‌ଟନାଣ୍ଟ ଟ୍ରାଭିସଙ୍କ ନେତୃତ୍ୱରେ ୬୪ଜଣ ସିପାହୀଙ୍କୁ ନେଇ କଟକର ମାଜିଷ୍ଟ୍ରେଟ ଏଡ୍‌ୱାଡ ଇମ୍ପେ ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲେ । ମାଜିଷ୍ଟ୍ରେଟ ଏଡ୍‌ୱାଡ ଇମ୍ପେ ୧୮୧୭ ଏପ୍ରିଲ ୨ ତାରିଖ ଦିନ ଖୋର୍ଦ୍ଧା ନିକଟସ୍ଥ ଗଙ୍ଗପଡାରେ ପହଞ୍ଚିଲେ । ଖୋର୍ଦ୍ଧାରେ ବିଦ୍ରୋହ ଉଗ୍ରରୂପ ଧାରଣ କରିଥିବାର ଜାଣି ଇମ୍ପେ କଟକକୁ ଫେରି ଆସିଲେ । ୧୮୧୭ ମସିହା ଏପ୍ରିଲ ମାସ ୧୨ ତାରିଖ ଦିନ ବହୁ ସଂଖ୍ୟକ କନ୍ଧ ଗେହାରମାନେ ପୁରୀରେ ପ୍ରବେଶ କଲେ । ସେମାନେ ଦାରୋଗାଙ୍କ ସମେତ ଅନେକ ଗୃହରେ ଅଗ୍ନି ସଂଯୋଗ କଲେ । ସମୁଦ୍ର କୂଳସ୍ଥ ଜଜ୍‌ଙ୍କ ବଙ୍ଗଳାକୁ ଆକ୍ରମଣ କରିବା ପାଇଁ ବିଦ୍ରୋହୀମାନେ ଚେଷ୍ଟା କରୁଥିବା ସମୟରେ ସିପାହୀମାନଙ୍କ ଗୁଳିମାଡରେ ଛତ୍ରଭଙ୍ଗ ଦେଲେ । ୧୮୧୭ ମସିହା ଏପ୍ରିଲ ମାସ ୧୪ ତାରିଖ ଦିନ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ୫ ଶହରୁ ଅଧିକ ପାଇକ ତଥା କନ୍ଧ ଚୋହର ପୁରୀରେ ପ୍ରବେଶ କଲେ । ପୁରୀରେ ଇଂରେଜ ସୈନ୍ୟଙ୍କ ସଂଖ୍ୟା ଥିଲା ୧୮୦ । କ୍ୟାପଟେନ ୱାଲିଙ୍ଗଟନ କଟକ ଫେରି ଆସିଲେ । ପୁରୀରେ ପଣ୍ଡା ଓ ସାଧାରଣ ଜନତା ବିଦ୍ରୋହୀମାନଙ୍କ ସହିତ ଯୋଗଦେଲେ । ଖୋର୍ଦ୍ଧାରୁ ୫୦୦ରୁ ଅଧିକ ପାଇକ କିଲା ରୂପାସା ଆଡକୁ ଯାତ୍ରା କଲେ ଏବଂ ଗୋପ ଓ କୁଜଙ୍ଗ ର ପାଇକମାନଙ୍କୁ ବିଦ୍ରୋହରେ ଯୋଗ ଦେବା ପାଇଁ ପ୍ରବର୍ତ୍ତାଇ ଥିଲେ ।

ମରିଚପୁର, ହରୀଶପୁର ଓ ଗୋଲାରର ପୂର୍ବତନ ଜମିଦାରମାନେ ବିଦ୍ରୋହକୁ ସମର୍ଥନ କରିଥିଲେ । ମଲାଙ୍ଗମାନେ ବିଦ୍ରୋହୀମାନଙ୍କ ସହିତ ଯୋଗଦାନ କରିଥିଲେ । ପୁରୋଆ ଜମିଦାରଙ୍କ କଚେରି ଏବଂ କିଲା ରୂପାସା, ତାଳପଦାର ଜମିଦାରମାନଙ୍କର ଅମଲାଙ୍କ ଘରେ ଲୁଣ୍ଠନ କରିଥିଲେ । ବିଦ୍ରୋହୀମାନଙ୍କ ତୁଳନାରେ ଇଂରେଜମାନଙ୍କର ସାମରିକ ଶକ୍ତି ଯଥେଷ୍ଟ ଅଧିକ ଥିଲା । ବିଦ୍ରୋହ ଦମନ କରିବା ପାଇଁ ପାଞ୍ଚଟି କମ୍ପାନୀ ସୈନ୍ୟ କଟକ ଅଣାଯାଇଥିଲା । ଖୋର୍ଦ୍ଧା, ପୁରୀ ଓ ଗୋପରେ ସାମରିକ ଆଇନ ଜାରି କରାଗଲା । ଖୋର୍ଦ୍ଧାର ପୂର୍ବତନ ରାଜା ବିଦ୍ରୋହରେ ନେତୃତ୍ୱ ନେବେ ଏହା ଆଶଙ୍କା କରି ତାଙ୍କୁ ଓ ତାଙ୍କ ପରିବାରବର୍ଗଙ୍କୁ ପୁରୀରୁ କଟକ ଅଣାଯାଇ ଥିଲା । ସୈନ୍ୟମାନଙ୍କ ଘେରରେ କଟକ ଯାଉଥିବା ରାଜା ଇଂରେଜମାନଙ୍କଠାରୁ ଅଲଗା କରିବା ପାଇଁ ପିପିଲିଠାରେ ବିଦ୍ରୋହୀମାନେ ଉଦ୍ୟମ କରିଥିଲେ । ବ୍ରିଟିଶ ସୈନ୍ୟ ଓ ବିଦ୍ରୋହୀମାନଙ୍କ ମଧରେ ସଂଘର୍ଷ ଘଟି ୧୯ ଜଣ ବିଦ୍ରୋହୀ ମୃତ୍ୟୁ ବରଣ କରିଥିଲେ । ପିପିଲି, ଖୋର୍ଦ୍ଧା ପୁରୀରେ ୧୮୧୭ ମସିହା ମେ ମାସ ବେଳକୁ ବିଦ୍ରୋହ ପ୍ରଶମିତ ହୋଇଥିଲା । ବର୍ଷାଋତୁ ଆରମ୍ଭ ହୋଇଥିବାରୁ କୁଜଙ୍ଗ ବିଦ୍ରୋହ ଦମନରେ ବିଳମ୍ବ ଘଟିଥିଲା । ସେପ୍ଟେମ୍ବର ଶେଷ ସୁଦ୍ଧା କୁଜଙ୍ଗ ବିଦ୍ରୋହ ଦମନ ହୋଇଥିଲା ଓ ଅକ୍ଟୋବର ୧୨ ତାରିଖ ଦିନ କୁଜଙ୍ଗର ବିଦ୍ରୋହୀ ରାଜା ଇଂରେଜମାନଙ୍କ ନିକଟରେ ଆତ୍ମସମର୍ପଣ କଲେ । ଇଂରେଜ ସରକାର କଠୋର ହସ୍ତରେ ବିଦ୍ରୋହ ଦମନ କଲେ । ବକ୍ସି ଜଗବନ୍ଧୁ ଓ ତାଙ୍କ ଅନ୍ତରଙ୍ଗ ସହଯୋଗୀମାନେ ଜଙ୍ଗଲକୁ ପଳାୟନ କଲେ ଏବଂ ବିଦ୍ରୋହ ଚାଲୁ ରଖିଲେ । ଖୋର୍ଦ୍ଧାର ସାଧାରଣ ଜନତା ଏବଂ ନୟାଗଡ ଓ ଘୁମୁସୁର ରାଜାମାନଙ୍କର ସହାୟତାରେ ବକ୍ସି ଜଗବନ୍ଧୁ ନିଘଞ୍ଚ ଜଙ୍ଗଲରେ ସୁରକ୍ଷିତ ଆତ୍ମଗୋପନ କରିବାରେ ସମର୍ଥ ହୋଇଥିଲେ । ୧୮୧୮ ମସିହା ଏପ୍ରିଲ ମାସ ବେଳକୁ ବିଦ୍ରୋହୀମାନେ ଡକାୟତି, ଘରପୋଡି, ରାଜସ୍ୱ ଲୁଣ୍ଠନ କାର୍ଯ୍ୟରେ ଲିପ୍ତ ରହିଲେ ।

ଇଂରେଜ ସରକାର ଲକ୍ଷ୍ୟ କଲେ ଆତ୍ମଗୋପନକାରୀ ବିଦ୍ରୋହୀମାନେ ଆତ୍ମସମର୍ପଣ ନକଲେ ଆଇନ ଶୃଙ୍ଖଳା ପରିସ୍ଥିତିରେ ଉନ୍ନତି ଘଟିବ ନାହିଁ । ୧୮୧୭ ମସିହା ଏପ୍ରିଲ ପହିଲାରୁ ୧୮୧୯ ମାର୍ଚ୍ଚ ପହିଲା ପର୍ଯ୍ୟନ୍ତ ଅପରାଧରେ ଲିପ୍ତ ଥିବା ବିଦ୍ରୋହୀମାନଙ୍କୁ କ୍ଷମା ଦିଆଯିବ ବୋଲି ଘୋଷଣା କରାଗଲା । କିନ୍ତୁ ବକ୍ସି ଜଗବନ୍ଧୁ ଓ ତାଙ୍କର ମୁଖ୍ୟ ସହଯୋଗୀମାନଙ୍କ ପାଇଁ ଏହା ଲାଗୁ ହେବ ନାହିଁ । ଯେଉଁମାନେ ସେମାନଙ୍କୁ ଧରାଇ ଦେବେ ସେମାନଙ୍କୁ ପୁରସ୍କାର ପ୍ରଦାନ କରାଯିବା ପାଇଁ ଇଂରେଜ ସରକାର ଘୋଷଣା କଲେ । ଇଂରେଜ ସରକାରଙ୍କର ଏହି ଘୋଷଣା ଦ୍ୱାରା ଅନେକ ବିଦ୍ରୋହୀ ଆତ୍ମସମର୍ପଣ କଲେ । ଇଂରେଜ ସରକାର ଜଗବନ୍ଧୁ ଓ ତାଙ୍କର ପ୍ରମୁଖ ଅନୁଗାମୀମାନଙ୍କର ଭୂସମ୍ପତ୍ତି ବାଜ୍ୟାପ୍ତ କରିଥିଲେ କାରଣ ବିଦ୍ରୋହୀମାନଙ୍କ ମନୋବଳ ଭାଙ୍ଗି ସେମାନଙ୍କୁ ଆତ୍ମସମର୍ପଣ କରିବା ପାଇଁ ବାଧ୍ୟ କରିବା । ବକ୍ସି ଜଗବନ୍ଧୁଙ୍କ ପରିବାରର ସଦସ୍ୟମାନଙ୍କୁ ଇଂରେଜ ସରକାର ବନ୍ଦୀ କରିଥିଲେ । ୧୮୨୫ ମସିହାରେ ବକ୍ସି ଜଗବନ୍ଧୁ ସରକାରଙ୍କ ନିକଟରେ ଆତ୍ମ ସମର୍ପଣ କଲେ । ଦୀର୍ଘ ଆଠ ବର୍ଷ ଧରି ନିରବଚ୍ଛିନ୍ନ ଭାବରେ ବିଦ୍ରୋହ କରି ଆସୁଥିଲେ । ସରକାରଙ୍କଠାରୁ ମାସକୁ ୧୫୦ଟଙ୍କା ଭତ୍ତା ନେଇ କଟକଠାରେ ଅବସ୍ଥାନ କଲେ । ୧୮୨୯ ମସିହା ଜାନୁଆରୀ ୨୪ ତାରିଖ ଦିନ ତାଙ୍କ ସଂଗ୍ରାମୀ ଜୀବନର ଅବସାନ ଘଟିଲା । ସେ କଟକରେ ରହୁଥିବା ସ୍ଥାନର ନାମ ଆଜି ବକ୍ସିବଜାର ନାମରେ ପରିଚିତ । ୧୮୨୬ ମସିହାରେ ବକ୍ସିଜଗବନ୍ଧୁଙ୍କର ଘନିଷ୍ଠ ସହଯୋଗୀ କୃଷ୍ଣଚନ୍ଦ୍ର ବିଦ୍ୟାଧର ଆତ୍ମସମର୍ପଣ କଲେ । ଇଂରେଜ ସରକାର ଗୋପାଳ ଛୋଟରାୟ, ବିଷ୍ଣୁ ପାଇକରାୟ, ରାମ ସିଂ ଓ ନାଥ ପ୍ରଧାନଙ୍କୁ ଦେଶଦ୍ରୋହ ଅପରାଧରେ ମୃତ୍ୟୁଦଣ୍ଡ ପ୍ରଦାନ କରିଥିଲେ । ଅନେକ ବିଦ୍ରୋହୀଙ୍କୁ ଆଜୀବନ କାରାଦଣ୍ଡ ଓ କଳାପାଣିକୁ ନିର୍ବାସନ ଦଣ୍ଡରେ ଦଣ୍ଡିତ କରାଯାଇଥିଲା । ସଚ୍ଚିଦାନନ୍ଦ ପଟ୍ଟନାୟକ ଓ ପର୍ଶୁରାମ ରାଉତରାୟଙ୍କୁ ମଧ୍ୟ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଯାଇଥିଲା । ୧୦୬ ଜଣ ବିଦ୍ରୋହୀ କଳାପାଣି ଦଣ୍ଡରେ ନିର୍ବାସିତ ହୋଇଥିଲେ । ୨୬ ଜଣ ବିଦ୍ରୋହୀଙ୍କୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରାଗଲା । ତାପଙ୍ଗଗଡର ଦଳବେହେରା ମାଧବ ଚନ୍ଦ୍ର ରାଉତରାୟ ୧୮୨୭ ମସିହାରେ ୬ ଦିନ ଧରି ଯୁଦ୍ଧ କ୍ଷେତ୍ର କାଣ୍ଡଗୋଦାଠାରେ ଇଂରେଜମାନଙ୍କ ସହିତ ତୁମୁଳ ସଂଗ୍ରାମ କରିଥିଲେ । ତାପଙ୍ଗ ବିଦ୍ରୋହର ନଅ ବର୍ଷ ପରେ ଅରାଙ୍ଗ ଗଡର କୃତିବାସ ପାଟଶାଣୀ ୧୮୩୬ ମସିହାରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଥିଲେ । ୧୮୧୭ ମସିହାରୁ ୧୮୩୬ ମସିହା ପର୍ଯ୍ୟନ୍ତ ପାଇକମାନେ ନିରବଚ୍ଛିନ୍ନ ଭାବରେ ଇଂରେଜ ଶକ୍ତି ବିରୁଦ୍ଧରେ ସଂଗ୍ରାମ କରି ଆସିଥିଲେ । ୧୮୧୭ ମସିହା ପାଇକ ବିଦ୍ରୋହର ବ୍ୟାପକତା ଓ ବିଦ୍ରୋହ ପାଇଁ ପ୍ରସ୍ତୁତ ବିଦ୍ରୋହରେ ଅଂଶ ଗ୍ରହଣ କରିଥିବା ବିଦ୍ରୋହୀମାନଙ୍କର ସାମାଜିକ ସ୍ଥିତି, ସେମାନଙ୍କର ଉଦ୍ଦେଶ୍ୟ, ବିଦ୍ରୋହର ଅଗ୍ରଗତି ସଂପର୍କରେ ଅନୁଶୀଳନ କଲେ ଏହା ସ୍ପଷ୍ଟ ପ୍ରମାଣିତ ହୁଏ ଯେ ପାଇକ ବିଦ୍ରୋହ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ । ଯଥାଶୀଘ୍ର ଏହାକୁ ମାନ୍ୟତା ପ୍ରଦାନ କରିବା ଉଚିତ । ଏଥିପାଇଁ ପ୍ରତ୍ୟେକ ଓଡିଆମାନେ ନିସ୍ୱାର୍ଥପର ଭାବରେ ସଂଗ୍ରାମ ଜାରି ରଖିବା ଆବଶ୍ୟକ । ଏହା ହେବ ପାଇକ ବିଦ୍ରୋହୀମାନଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା – ୭୫୨୦୫୪



# ଶିଶୁମାନଙ୍କର ପ୍ରିୟ ନେହେରୁ

ଡକ୍ଟର ସୌରୀବଂଧୁ କର

୧୪ ନଭେମ୍ବର । ଭାରତର ପ୍ରତ୍ୟେକ ସ୍ଥାନରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଜନ୍ମ ଦିବସକୁ ଶିଶୁ ଦିବସ ଭାବେ ପାଳନ କରାଯାଏ । ନେହେରୁ ଥିଲେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ । ତାଙ୍କ ନେତୃତ୍ୱରେ ଭାରତର ଦ୍ରୁତ ବିକାଶ ଘଟିଥିଲା । ତାଙ୍କର ପିଲାମାନଙ୍କ ପ୍ରତି ଗଭୀର ସ୍ନେହ, ଶ୍ରଦ୍ଧା ଓ ମମତା ଥିଲା । ତେଣୁ ତାଙ୍କୁ ଚାଚା ନେହେରୁ ଭାବରେ ଡାକନ୍ତି ।



ନେହେରୁ ଥିଲେ ଅତ୍ୟନ୍ତ ଧନାଢ୍ୟ ପରିବାରର ସନ୍ତାନ । ତାଙ୍କ ବାପା ପଣ୍ଡିତ ମୋତିଲାଲ ନେହେରୁ ଥିଲେ ବିଶିଷ୍ଟ ଓକିଲ । ତାଙ୍କ ପିଲାଦିନ ସଂପର୍କରେ ନେହେରୁ ଲେଖିଥିଲେ–'' ଉନ୍ନତ ପରିବାରର ଏକମାତ୍ର ପୁତ୍ର, ବିଶେଷତଃ ଭାରତରେ, ଖରାପ ହେବାର ସମ୍ଭାବନା ଥାଏ । ଯଦି ସେ ପିଲାଟିକୁ ଏଗାର ବର୍ଷ ହେବା ପର୍ଯ୍ୟନ୍ତ ଆଉ ପିଲାପିଲି ହୋଇ ନଥାନ୍ତି, ତେବେ ଖରାପ ନ ହେବ ବୋଲି ଆଶା କରି ହେବନାହିଁ । ମୋର ଦୁଇଟି ଯାକ ଭଉଣୀ ମୋଠାରୁ ଖୁବ୍ ଛୋଟ ଏବଂ ଆମ୍ଭମାନଙ୍କ ଭିତରେ ବୟସର ପାର୍ଥକ୍ୟ ଖୁବ୍ ବେଶୀ । ସୁତରାଂ ମୁଁ ଏକ ପ୍ରକାର ସାଥିହୀନ ଭାବରେ ଏକୁଟିଆ ହୋଇ ପିଲାବେଳ କଟାଇଲି । ସ୍କୁଲ ପିଲାମାନଙ୍କୁ ମଧ୍ୟ ସାଥି କରି ପାରି ନଥିଲି, କାରଣ ମୋତେ କୌଣସି ପ୍ରାଇମେରୀ ସ୍କୁଲ ବା କିଣ୍ଡର ଗାର୍ଟେନକୁ ପଠାଯାଇ ନଥିଲା । ଘରୋଇ ଶିକ୍ଷୟିତ୍ରୀ ଓ ଘରୋଇ ଶିକ୍ଷକମାନଙ୍କ ଉପରେ ମୋର ଶିକ୍ଷାର ଭାର ଦେଇ ସମସ୍ତେ ନିଶ୍ଚିନ୍ତ ଥିଲେ ।''

ନେହେରୁଙ୍କ ପିଲାଦିନ ଏଇମିତି ଏକୁଟିଆ କଟିଥିଲା । ସେ କିନ୍ତୁ ଖରାପ ହୋଇଯାଇନଥିଲେ । ସେ କ୍ରମଶଃ ନିଜକୁ ତିଆରି କରିଥିଲେ ଏବଂ ସମୟକ୍ରମେ ହେଲେ ଦେଶର କର୍ଣ୍ଣଧାର । ବ୍ରିଟିଶ୍ ଶାସନ ବିରୁଦ୍ଧରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଯେଉଁ ଅସହଯୋଗ ଆନ୍ଦୋଳନ ହେଲା, ସେଥିରେ ସେ ଯୋଗ ଦେଇ ଅନେକବାର ଜେଲ୍ ବରଣ କରିଥିଲେ । ତାଙ୍କ ଜେଲ୍ ଜୀବନ କାହାଣୀ ଅତ୍ୟନ୍ତ

ରୋମାଞ୍ଚକର। ସେ ବହି ପଢ଼ିବାକୁ ବହୁତ ଭଲ ପାଉଥିଲେ। ଜେଲ୍‌ରେ ଥିବାବେଳେ ଭ୍ରମଣକାରୀମାନଙ୍କ ବୃତ୍ତାନ୍ତ ପଢୁଥିଲେ। ହୁଏନ୍‌ସାଂ, ମାର୍କୋପୋଲ, ଲବନବତୁଟାଇ ଇତ୍ୟାଦି ପୁରାତନ ପରିବ୍ରାଜକ, ସ୍ୱେନହେଡିନଙ୍କ ପରି ଆଧୁନିକ ଲୋକଙ୍କର ମଧ୍ୟ ଏସିଆ ଭ୍ରମଣ ଓ ତିବ୍ବତର ଚୋରିଚଙ୍କର ଆଶ୍ଚର୍ଯ୍ୟ କାହାଣୀ ପଢ଼ିବାକୁ ତାଙ୍କୁ ଭଲ ଲାଗେ। ସେ ସାଢ଼େ ୧୩ ମାସ ଡେରାଡୁନ ଜେଲ୍‌ର ଗୋଟିଏ ଛୋଟ କୋଠରୀରେ ରହିଲେ। ଏହି କୋଠରୀର ଚୂନଦିଆ କାନ୍ଥ। ଆବଡ଼ାଖାବଡ଼ା ଚଟାଣ, ପୋକଖିଆ କଡ଼ିବର୍ଗା ଥିବା ଛାତ ତାଙ୍କର ପ୍ରିୟ ହୋଇଯାଇଥିଲା। ସେ ସେହି ଜେଲ୍‌ରେ ଥିବାବେଳେ ନାନା ପ୍ରକାର ଜୀବଜନ୍ତୁଙ୍କୁ ଦେଖୁଥିଲେ। ତାଙ୍କ ସେଲ୍‌ରେ ଶହଶହ ସଂଖ୍ୟାରେ ବିରୁଡ଼ି ଓ ଭଅଁର ରହୁଥିଲେ। ସେମାନଙ୍କୁ ସେଠାରୁ ତଡ଼ିବା ପାଇଁ ସେ କେବେ ଚେଷ୍ଟା କରି ନଥିଲେ। ଚେମଣିଆ ମଧ୍ୟ ବାସ କରୁଥିଲା। ସେମାନେ ତାଙ୍କୁ କେବେ ଆକ୍ରମଣ କରିବାକୁ ଚେଷ୍ଟା କରୁନଥିଲେ। ସେମାନେ ପରସ୍ପରକୁ ଶ୍ରଦ୍ଧା କରି ଚଳୁଥିଲେ। ସେ ପିମ୍ପୁଡ଼ି, ଉଇ ଓ ଅନ୍ୟ କୀଟମାନଙ୍କୁ ଲକ୍ଷ୍ୟ କରନ୍ତି। ଏପରିକି ସଂଧ୍ୟା ହେଲେ ଝିଟିପିଟି ସବୁ ବାହାରି ଶିକାର ଖୋଜନ୍ତି। ଡେରାଡୁନ ଜେଲ୍‌ରେ ନାନା ପ୍ରକାର ପକ୍ଷୀଥିଲେ। କୋଇଲି ଗାନରେ ସେ ଆମୋଦିତ ହେଉଥିଲେ, ଥରେ ଗୋଟିଏ କାକତୁଆ ଆସି ତାଙ୍କ ପାଖରେ ପହଞ୍ଚିଲା। କି ଦିନ, କି ରାତି, କି ଖରା, କି ବର୍ଷା ସର୍ବଦା ଏହା ଏକ ସ୍ୱରରେ ଅବିଶ୍ରାମ ଚିତ୍କାର କରୁଥାଏ। ବିଭିନ୍ନ ଜେଲ୍‌ରେ ରହିବା ବେଳେ ସେ ତାଙ୍କ ପରିବେଷ୍ଟନୀରେ ଅନେକ ଜୀବଜନ୍ତୁଙ୍କୁ ଦେଖି ସେମାନଙ୍କର ହାବଭାବକୁ ଲକ୍ଷ୍ୟ କରୁଥିଲେ।

ନେହେରୁ ତେଣୁ ପିଲାମାନଙ୍କ ମଧ୍ୟରେ ବିଭିନ୍ନ ଭାବନା ଜାଗ୍ରତ ହେଉ ତାହା ଚାହୁଁଥିଲେ। ପାହାଡ଼, ପର୍ବତ, ନଦୀ, ସମୁଦ୍ର, ଜଂଗଲ, ଗଛବୃକ୍ଷଠାରୁ ଆରମ୍ଭ କରି ସମସ୍ତ ପ୍ରକୃତି ଓ ଜୀବଜନ୍ତୁ ଯେପରି ତାଙ୍କୁ ଆଚ୍ଛନ୍ନ କରିଥିଲା। ତେଣୁ ସେ ଚାହୁଁଥିଲେ ଶିଶୁମାନଙ୍କ ଭାବନାରେ ଏହା ପ୍ରତିଫଳିତ ହେଉ। ସେମାନେ ପ୍ରକୃତିକୁ, ଜୀବଜନ୍ତୁଙ୍କୁ, ମନୁଷ୍ୟକୁ ଭଲ ପାଇବାକୁ ଶିଖନ୍ତୁ।

ଏଠାରେ ଗୋଟିଏ ଘଟଣା ଅବତାରଣା କରିବାର ଲୋଭ ସମ୍ବରଣ କରିପାରୁନି। ନେହେରୁ ଥିଲେ ଅତିମାତ୍ରାରେ ମାନବବାଦୀ। ସେ ଗୋଟିଏ ଛୋଟିଆ ଝିଅର ଦୁଃଖରେ ଦ୍ରବୀଭୂତ ହୋଇଯାଇଥିଲେ। ଏହା କେରଳର ଟେଲିଚେରୀ ଅଞ୍ଚଳର ଘଟଣା। ସେଠାରେ ଗୋଟିଏ ଛୋଟ ଟେଲିଫୋନ୍ ଏକ୍‌ସଚେଞ୍ଜ ଥିଲା। ଜଣେ ଅସ୍ପୃଶ୍ୟ ଗରିବ ମହିଳା ସେଠାରେ ଝାଡୁଦାର ଭାବରେ କାର୍ଯ୍ୟ କରୁଥିଲା। କିଛିଦିନ ପରେ ସେ ମରିଗଲା। ସେହି କାର୍ଯ୍ୟଟିକୁ ତା'ର ଛୋଟ ଝିଅଟି କରିବାକୁ ଲାଗିଲା। ତାଙ୍କୁ ମାସ ଶେଷରେ କିଛି ପାରିଶ୍ରମିକ ମିଳୁଥିଲା। ସେହି ଝିଅଟି ନିତିଦିନ ସେହି କାର୍ଯ୍ୟ କରେ ଓ ସ୍କୁଲରେ ପାଠପଢ଼େ। ସେ ପାଠ ପଢ଼ି ମାଟ୍ରିକ୍ ପାଶ୍ କଲା ଏବଂ ଚାକିରି ପାଇଁ ସରକାରଙ୍କର ବିଭିନ୍ନ ବିଭାଗକୁ ଚିଠି ଲେଖିଲା। ମାତ୍ର ତା'ର ଦରଖାସ୍ତକୁ ବିଚାରକୁ ନିଆଗଲା ନାହିଁ। କାରଣ ଚାକିରି ପାଇଁ ତା'ର ବୟସ ବେଶୀ ହୋଇଯାଇଥିଲା। ଏହି ଘଟଣାଟିକୁ ଜଣେ ଟେଲିଫୋନ୍ ଅପରେଟର ସେଠାକାର ଜଣେ ତରୁଣ ପ୍ରଗତିଶୀଳ ଓକିଲର ଦୃଷ୍ଟିକୁ ଆଣିଲେ। ତରୁଣ ଓକିଲ ଏ ସଂପର୍କରେ ପ୍ରଧାନମନ୍ତ୍ରୀ ଜବାହରଲାଲଙ୍କୁ ଲେଖି ପ୍ରତିକାର ପାଇଁ ଅନୁରୋଧ କଲେ। ଚିଠି ପାଇବା ମାତ୍ରେ ଗୋଟିଏ ଦିନ ମଧ୍ୟ ଡେରି ନ କରି ପ୍ରଧାନମନ୍ତ୍ରୀ ନେହେରୁ ସେତେବେଳର ମାନ୍ଦ୍ରାଜର ରାଜ୍ୟପାଳ ଶ୍ରୀ ପ୍ରକାଶଙ୍କୁ ଚିଠିଲେଖି ନିୟମ ଯାହା ଥାଉଁନା କାହିଁକି ସେଇ ଝିଅଟିକୁ ଚାକିରି ଦେବାକୁ କହିଲେ। ତା'ପରେ ସେଇ ଝିଅଟିକୁ ଟେଲିଫୋନ୍ ଡିପାର୍ଟମେଣ୍ଟରେ ଚାକିରି ମିଳିଥିଲା। ଏହା ଥିଲା ପଣ୍ଡିତ ନେହେରୁଙ୍କର ମହାନତା। ବୁଦ୍ଧଙ୍କର କରୁଣା ଓ ଗାନ୍ଧୀଙ୍କର ଅହିଂସାର ସମନ୍ୱୟ। ନେହେରୁଙ୍କ ଜୀବନରେ ଏଇମିତି ଅନେକ ଛୋଟବଡ଼ ଘଟଣା ଦେଖିବାକୁ ମିଳେ। ନାମହୀନ, ପରିଚୟହୀନ ପ୍ରତି ତାଙ୍କ ହୃଦୟର ଦୟାର୍ଦ୍ର ମନୋଭାବ ଓ ପ୍ରେମ ବହୁଭାବରେ ଫୁଟି ଉଠିଥିଲା। ସେଥିପାଇଁ ସେ ଭାରତର ଅଗଣିତ ଶିଶୁମାନଙ୍କର 'ଚାଚା' ନେହେରୁ' ଭାବରେ ପରିଚିତ ଥିଲେ।

ଗଜପତି ନଗର, ଭୁବନେଶ୍ୱର–୭୫୧୦୦୫



# ଅତୀତ ଓଡ଼ିଶାର ନୌବାଣିଜ୍ୟ

ଅଧ୍ୟାପକ ଡକ୍ଟର ଅଶୋକ କୁମାର ମହାନ୍ତି

ଆଜିର ଓଡ଼ିଶା ଅତୀତର କଳିଙ୍ଗ ଓ ଉତ୍କଳର ଅବିକଳ ନୁହେଁ। ଉପାନ୍ତ ଓଡ଼ିଶା ଭୂମିକୁ ମିଶାଇ ଯାହାକୁ ଆମେ ଏବେ ପୂରା ଓଡ଼ିଶା ପ୍ରଦେଶ ବୋଲି କହୁଛୁ ବା ଯାହା ଭାଷାଭିତ୍ତିରେ ଆମକୁ ସ୍ୱତନ୍ତ୍ର ଓଡ଼ିଶା ହିସାବରେ ମିଳିଲା, ତାହା ମଧ୍ୟ ପୂରା ଓଡ଼ିଶା ନୁହେଁ।

ଗଙ୍ଗାଠାରୁ ଦକ୍ଷିଣକୁ ଗୋଦାବରୀ ଯାଏଁ, ନହେଲେ ଅନ୍ତତଃ ବଂଶଧାରା ଯାଏଁ, ମୁଖଲିଙ୍ଗ ସମେତ ଉପକୂଳଭୂମିର ନାଁ ଥିଲା 'କଳିଙ୍ଗ'। ତାହା ହିଁ ସେ କାଳର ଓଡ଼ିଶା।

ଏହାଛଡ଼ା ଭୂମି ଭିତରକୁ ମେଦିନୀପୁରରୁ ଗୟାଯାଏଁ ଥିଲା ସେକାଳ 'ଉକ୍‌କଳ' ବା ସଂସ୍କୃତରେ 'ଉତ୍କଳ'। ଉତ୍କଳର ଗଜପତି କପିଳେନ୍ଦ୍ର ଓ ପୁରୁଷୋତ୍ତମଦେବ କାଞ୍ଚି ଅଭିଯାନ କରିଥିବା ଇତିହାସରେ ପ୍ରାମାଣିକ ସତ୍ୟ। କପିଳେନ୍ଦ୍ରଦେବ ଗଙ୍ଗାଠାରୁ ଗୋଦାବରୀ ଓ କାବେରୀ ପର୍ଯ୍ୟନ୍ତ ସାମ୍ରାଜ୍ୟ ବୃଦ୍ଧି କରିଥିଲେ। ଉତ୍କଳର ଗଜପତିଙ୍କୁ 'ନବକୋଟି କର୍ଣ୍ଣାଟ, କଳବର୍ଗ, ଗୌଡ଼େଶ୍ୱର' ଉପାଧିରେ ମଧ୍ୟ ଭୂଷିତ କରାଯାଇଥିଲା। ଉତ୍କର୍ଷ କଳାର ଦେଶ 'ଉତ୍କଳ' ମଧ୍ୟ ଏବେ ଓଡ଼ିଶାର ନାମ ଥିଲା।

ପୁଣି ଉତ୍କଳର ପଶ୍ଚିମକୁ ଥିଲା 'କୋଶଳ'। ଏହା ଅବିଭକ୍ତ ମଧ୍ୟପ୍ରଦେଶର ରାୟପୁର, ଜବଲପୁର ଘେନି ଦିନେ ଓଡ଼ିଶାର ଯାଜପୁର ଯାଏଁ ବ୍ୟାପିଥିଲା।

ଏଇ ତିନୋଟି ମିଶି ଦିନେ ହୋଇଥିଲା 'ତ୍ରିକଳିଙ୍ଗ'। ଦଶମ ଏକାଦଶ ଶତକର ଓଡ଼ିଶାର ସୋମବଂଶୀ ସମ୍ରାଟମାନେ ଥିଲେ 'ତ୍ରିକଳିଙ୍ଗାଧିପତି'। ଏମାନେ ଅବିଭକ୍ତ ମଧ୍ୟପ୍ରଦେଶର ତ୍ରିପୁରୀଠାରୁ ସୋନପୁର ବାଟେ ଯାଜପୁର ପର୍ଯ୍ୟନ୍ତ ବିଭିନ୍ନ ସମୟରେ ରାଜଧାନୀ ବଦଳାଇ ସାମ୍ରାଜ୍ୟମାନ କରିଥିଲେ।

ଏହାଛଡ଼ା ଏଇ ଭୂମିରେ ସୋନପୁର ପ୍ରଭୃତି ଅଞ୍ଚଳକୁ ଘେନି ସେକାଳର ଓଡ଼ (ଉଡ୍ର) ଭୂମି ଥିଲା। ପରେ ସେଇ ଓଡ଼ମାନେ ପୁରୀ ଅଞ୍ଚଳକୁ ଆସି କଳିଙ୍ଗରେ ଯେଉଁ ଖଣ୍ଡକରେ ରାଜ୍ୟ କରିଥିଲେ, ତାହାର ନାମ 'କଳିଙ୍ଗୋଡ଼' ବା 'କଙ୍ଗୋଦ'। ଖ୍ରୀ:ଅ ଅଷ୍ଟମ ଶତକର ତୋଷଳର ଭୌମକର ରାଜବଂଶର ଶାସିକାଦଣ୍ଡି ମହାଦେବୀଙ୍କ ତାମ୍ରଲେଖରେ ଏଇ ଭୂମିର ନାମ 'କଇଙ୍ଗୋଡ଼' (କଳିଙ୍ଗୋଡ୍ର) ବୋଲି ସ୍ପଷ୍ଟ ଲେଖାଅଛି।

ଏଇ ଉଡ୍ର ବା ଓଡ଼ କଥାଟିରୁ ନାମ ହୋଇଛି 'ଓଡ଼ିଶା'। ଉଡ୍ର ବିଷୟ ବା ଓଡ଼ବିଷ ପରବର୍ତ୍ତୀ ସମୟରେ 'ଓଡ଼ିଶା'ରେ ପରିଣତ ହୋଇଛି। ଓଡ଼ଈଶ (ଜଗନ୍ନାଥ) କଥାଟିରୁ ଓଡ଼ିଶା ହୋଇଥିବା ଅସମ୍ଭବ ନୁହେଁ। ଏବେ ମଧ୍ୟ ଖୋର୍ଦ୍ଧା ଓ ଗଞ୍ଜାମର ଲୋକେ ଜଗନ୍ନାଥଙ୍କ ସ୍ଥାନକୁ 'ଓଡ଼ିଶା' ବୋଲି କହନ୍ତି।

ଆଜିର ରାଜନୀତିକ ସୀମା ଦ୍ୱନ୍ଦ୍ୱ ଭିତରେ ପଶ୍ଚିମବଙ୍ଗ, ଅବିଭକ୍ତ ମଧ୍ୟପ୍ରଦେଶ, ମାଡ୍ରାସ ଅବିଭକ୍ତ ବିହାର, ଏଇ ପ୍ରଦେଶମାନଙ୍କ ଭିଡ଼ ଭିତରେ ଓଡ଼ିଶା ବହୁ କଷ୍ଟରେ ମଡ଼ା ନୂଆ ଜୀବନ ପାଇଲାପରି ନିଜର ପ୍ରାଣ ପ୍ରତିଷ୍ଠା କରି ନିଃଶ୍ୱାସ ମାରୁଛି। ସେକାଳର ଓଡ଼ିଶା ସେନା ଦୁଇଭାଗ ଥିଲେ। ୧) ଖଣ୍ଡାୟତ ସେନା, କୈବର୍ତ୍ତସେନା । ଏ ଦୁହେଁ ଏକ ଜାତିର ଲୋକ।

ବିଭିନ୍ନ ପୁରାଣ ପୃଷ୍ଠାରୁ ରାମାୟଣ, ମହାଭାରତଠାରୁ ବୌଦ୍ଧ ଜାତକ ପର୍ଯ୍ୟନ୍ତ ପ୍ରାଚୀନ ଗ୍ରନ୍ଥମାନଙ୍କରେ କଳିଙ୍ଗବାସୀମାନଙ୍କର ଶକ୍ତି, ସାହସ, ପରାକ୍ରମ, ବିଭବ, ସମୃଦ୍ଧି ଆଲୋଚ଼ନା ହୋଇ ଏ ଜାତିର ପ୍ରତିଷ୍ଠା ଓ ଗୌରବ ସ୍ୱୀକୃତି ଲାଭ କରିଛି। କଳିଙ୍ଗର ଏହି ଅସୀମ ସମ୍ପଦର କାରଣ ତାହାର ନୌବାଣିଜ୍ୟ।

ଖ୍ରୀ:ପୂ. ୪୬୦ ଅବ୍ଦରେ ନନ୍ଦ ବଂଶର ପ୍ରଥମ ରାଜା ମହାପଦ୍ମନନ୍ଦ ବା ନନ୍ଦବର୍ଦ୍ଧନ କଳିଙ୍ଗକୁ ଜୟ କରିବା ଓ ମଗଧ ରାଜା ଅଶୋକ କଳିଙ୍ଗ ଆକ୍ରମଣ ଇତ୍ୟାଦି ନନ୍ଦବଂଶୀୟ ରାଜାଙ୍କଠାରୁ ମୌର୍ଯ୍ୟବଂଶୀୟ ନୃପତିମାନଙ୍କ ପର୍ଯ୍ୟନ୍ତ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧଯାତ୍ରା କେବଳ କଳିଙ୍ଗ ବୀରତ୍ୱ ଓ ବିଭବ ପାଇଁ। ଏ ବିଭବର ମୂଳ କାରଣ କେବଳ କଳିଙ୍ଗବାସୀଙ୍କର ସମୁଦ୍ର ବାଣିଜ୍ୟ।

ବୁଦ୍ଧଦେବଙ୍କର ଆବିର୍ଭାବ ପୂର୍ବରୁ ଏ ଦେଶରେ ନୌବାଣିଜ୍ୟ ପ୍ରସିଦ୍ଧି ଲାଭ କରିଥିଲା। ବ୍ରହ୍ମଦେଶରେ ଦୁଇଟି ବଣିକଭ୍ରାତା ତପସୁ ଓ ପାଲିକତ ବୁଦ୍ଧଦେବଙ୍କୁ ଉପହାର ଦେବା ନିମନ୍ତେ ବୋଇତରେ ପ୍ରାୟ ପାଞ୍ଚଶହ ଗାଡ଼ି ଜିନିଷ ବୋଝେଇକରି କଳିଙ୍ଗର ଉତ୍ତର-ପୂର୍ବାଞ୍ଚଳ ଉପକୂଳରେ ଥିବା 'ଆଡ଼ଜିତା' ନାମକ ବନ୍ଦରରେ ଜାହାଜରୁ ଅବତରଣ କଲେ। ଏହି ଆଡ଼ଜିତା ବନ୍ଦରରୁ ସେମାନେ ସ୍ଥଳପଥରେ ମଗଧ ଯାତ୍ରା କଲେ। ଏହି 'ଆଡ଼ଜିତା' ବନ୍ଦରର ଠିକଣା ଏପର୍ଯ୍ୟନ୍ତ ଜଣାଯାଇନାହିଁ। ଏପରିକି ଖ୍ରୀଷ୍ଟ ପ୍ରଥମ ଶତକରେ ଲିଖିତ ଟଲେମିଙ୍କ 'ପ୍ରାଚୀନ ଭୂଗୋଳ'ରେ ମଧ୍ୟ ଏ ବନ୍ଦରର ଉଲ୍ଲେଖ ନାହିଁ।

ଅଶୋକଙ୍କ କଳିଙ୍ଗ ବିଜୟର ବହୁକାଳ ପୂର୍ବରୁ ବ୍ରହ୍ମଦେଶରେ କଳିଙ୍ଗ ଉପନିବେଶ ସ୍ଥାପିତ ହୋଇଥିଲା। ମହୋଦଧିର ଅସୀମ, ଅନନ୍ତ, ଭୀଷଣ, ଉନ୍ମୁକ୍ତ ବକ୍ଷରେ କଳିଙ୍ଗବାସୀ ବ୍ରହ୍ମଦେଶ ପର୍ଯ୍ୟନ୍ତ ଯାଇ ବ୍ରହ୍ମଦେଶରେ 'କଳିଙ୍ଗରାଟ' ବୋଲି ଖ୍ରୀ:ପୂ. ସପ୍ତମ ଶତକରେ ଗୋଟିଏ ରାଜ୍ୟ କରିଥିଲେ। ତା'ପାଖକୁ ଲାଗି ଭୂମି ଭିତରକୁ ଉତ୍କଳ ବା 'ଉତ୍କଳରାଟ' ବୋଲି ରାଜ୍ୟଟିଏ ମଧ୍ୟ କରାଯାଇଥିଲା। ପ୍ରଫେସର ଜେରିନ୍ ଖ୍ରୀ:ପୂ. ୧ମ ଶତକରେ ଲେଖା ହୋଇଥିବା ଟଲେମିଙ୍କ 'ପ୍ରାଚୀନ ଭାରତର ଭୂଗୋଳ' ଉପରେ ଲେଖିଥିବା ଟୀକାରେ ଏହି ମତପୋଷଣ କରିଅଛନ୍ତି। ସୁତରାଂ ଖ୍ରୀଷ୍ଟଜନ୍ମର ୮୦୦ ବର୍ଷ ପୂର୍ବେ କଳିଙ୍ଗର ଲୋକେ ଜାହାଜର ନିର୍ମାଣ ଓ ନୌବାଣିଜ୍ୟରେ ପ୍ରସିଦ୍ଧିଲାଭ କରିଥିଲେ।

ଖ୍ରୀ:ପୂ ଚତୁର୍ଥ ଶତକରେ ମେଘାସ୍ଥିନିସ୍‌ଙ୍କ ଭାରତ ବିବରଣୀରୁ ଜଣାଯାଏ ଯେ ଲଙ୍କାଦ୍ୱୀପ ଓ କଳିଙ୍ଗ ମଧ୍ୟରେ ହାତୀର ବାଣିଜ୍ୟ ସମୁଦ୍ର ପଥରେ ଚାଲିଥିଲା। ଓଡ଼ିଶାର ଜଙ୍ଗଲଗୁଡ଼ିକ ହାତୀ ନିମନ୍ତେ ପ୍ରସିଦ୍ଧ ଥିଲା। କଳିଙ୍ଗରାଜା ଲଙ୍କାରୁ 'ହାତୀ ବୋଇତ' ନାମରେ ବଡ଼ ବୋଇତ ତିଆରିକରି ସମୁଦ୍ର ପଥରେ ହାତୀମାନଙ୍କୁ ନିଜ ଦେଶକୁ ଆଣୁଥିଲେ। ହାତୀଗୁମ୍ଫା ଅନୁଶାସନରୁ ଜଣାଯାଏ ସମ୍ରାଟ ଖାରବେଳ ପାଣ୍ଡ୍ୟରାଜାଙ୍କଠାରୁ ବହୁତ ହାତୀ ଜାହାଜ ଉପହାର ପାଇଥିଲେ। ଏପରି ବିଶାଳ ବୋଇତ ନିର୍ମାଣକରି ଯାତାୟାତ କରିବା ଖ୍ରୀ:ପୂ ସପ୍ତମ ଓ ଅଷ୍ଟମ ଶତାବ୍ଦୀ ପୂର୍ବରୁ କଳିଙ୍ଗର ସମୁଦ୍ରବାଣିଜ୍ୟର ସୂଚନା ଦିଏ। ଖ୍ରୀ:ପୂ ୩ୟ ଓ ୪ର୍ଥ ଶତକରେ ଅନୁଶାସନମାନଙ୍କରେ ଲେଖାଅଛି ଯେ, ସମୁଦ୍ରଯାତ୍ରା ଓ ସମୁଦ୍ର ବାଣିଜ୍ୟ ସେତେବେଳେ କଳିଙ୍ଗ ରାଜକୁମାରମାନଙ୍କର ଶିକ୍ଷା ବିଧାନର ଅନ୍ତର୍ଗତ ହୋଇଥିଲା। ଏହାର ବହୁ ପୂର୍ବରୁ ଏହା ନିଶ୍ଚୟ ଜନସାଧାରଣ ଓ ବଣିକମାନଙ୍କର ପାଠ୍ୟ ହୋଇଥିବ।

ଓଡ଼ିଶାର ପ୍ରସିଦ୍ଧ ଇତିହାସ ଲେଖକ ହଣ୍ଟର ସାହେବ କହନ୍ତି, ପ୍ରାଚୀନଯୁଗରେ ମଧ୍ୟ କଳିଙ୍ଗ ବାଣିଜ୍ୟର ପ୍ରଧାନ କେନ୍ଦ୍ରସ୍ଥଳୀ ଥିଲା। ସୂକ୍ଷ୍ମବସ୍ତ୍ର ବୟନ କରିବାରେ କଳିଙ୍ଗର ଖ୍ୟାତି ଥିଲା। କଳିଙ୍ଗର ରାଜା ଥରେ ଅଯୋଧ୍ୟା ରାଜାଙ୍କୁ ଏହି ସୂକ୍ଷ୍ମ ବସ୍ତ୍ରରୁ ଖଣ୍ଡିଏ ଉପହାର ଦେଇଥିଲେ। ଜଣେ ପୁରୋହିତ ନାରୀ ତାକୁ ପରିଧାନ କରିବାରୁ ଲୋକମାନେ ଉଲଗ୍ନ ବୋଲି ଘୃଣା କଲେ। ଏହି ସୂକ୍ଷ୍ମବସ୍ତ୍ର ଜାହାଜରେ ଦୂର ବିଦେଶକୁ ଯାଉଥିଲା।

ଖ୍ରୀ:ପୂ ପଞ୍ଚମ ଓ ଚତୁର୍ଥ ଶତାବ୍ଦୀରେ ବୌଦ୍ଧଧର୍ମର କବଳରୁ ନିଜ ହିନ୍ଦୁଧର୍ମକୁ ରକ୍ଷା କରିବା ନିମନ୍ତେ କଳିଙ୍ଗର ହିନ୍ଦୁମାନେ ନିଜ ନିଜ ଧର୍ମଶାସ୍ତ୍ର ସହ ଜାଭା, ସୁମାତ୍ରା, ବାଲିଦ୍ୱୀପକୁ ପଳାୟନ କରିଥିଲେ। ବାଳ ଗଙ୍ଗାଧର ତିଳକ ବାଲିଦ୍ୱୀପରୁ ଖଣ୍ଡିଏ ଶ୍ରୀମଦ୍ ଭଗବତ୍ ଗୀତା ପାଇଥିଲେ। ଏବେ ମଧ୍ୟ ମାଳୟ ଓ ସିଙ୍ଗାପୁରରେ 'କ୍ଲିଙ୍ଗ୍' ବୋଲି ଗୋଟିଏ ଜାତି ବାସ କରନ୍ତି। ଏହି 'କ୍ଲିଙ୍ଗ୍'ମାନେ ପ୍ରାଚୀନ କଳିଙ୍ଗବାସୀଙ୍କର ବଂଶଧର। କଣ୍ଟିଲୋରୁ ଯାଇଥିବା ବାସନକୁସନ କାଳକ୍ରମେ ସେଠାରେ ଏତେ ଲୋକପ୍ରିୟ ଯେ, ସେମାନଙ୍କ ଲୋକଭାଷାରେ ବାସନକୁସନକୁ 'କଣ୍ଟାଇଲୋ' ବୋଲି କହନ୍ତି।

ବ୍ରହ୍ମଦେଶର ଧର୍ମଶାସ୍ତ୍ରମାନଙ୍କରୁ ଜଣାଯାଏ ଯେ କଳିଙ୍ଗର ବୌଦ୍ଧମାନେ ପ୍ରଥମେ ଧର୍ମପ୍ରଚାର କରିବା ଉଦ୍ଦେଶ୍ୟରେ ବ୍ରହ୍ମଦେଶକୁ ଆସି କାଳକ୍ରମେ ଏ ଦେଶରେ ଆଧିପତ୍ୟ ବିସ୍ତାର କଲେ। ବ୍ରହ୍ମଦେଶ ମଧ୍ୟରେ ପ୍ରୋମ ନିକଟବର୍ତ୍ତୀ 'ତାରାକ୍ଷେତ୍ର' ପରବର୍ତ୍ତୀ ଉତ୍କଳୀୟ ହିନ୍ଦୁମାନଙ୍କର ପ୍ରଧାନ ବସତି ଥିଲା। ମାର୍ତ୍ତବାନ ଉପକୂଳରେ ଉତ୍କଳର ବଣିକମାନେ ଖ୍ରୀଷ୍ଟ ତୃତୀୟ ଶତାବ୍ଦୀରେ ଉପନିବେଶ ସ୍ଥାପନ

କରିଥିଲେ । ସେହି ଉପନିବେଶମାନଙ୍କ ମଧ୍ୟରେ 'ଥାଟନ' କିମ୍ବା 'ସୁଧର୍ମନଗର' ପ୍ରଧାନ ଥିଲା । ବ୍ରହ୍ମଦେଶର ପ୍ରାଚୀନ ମୁଦ୍ରା ଓ ମୋହରମାନଙ୍କରେ ହିନ୍ଦୁଧର୍ମର ଚିହ୍ନ ଓ ସଙ୍କେତ ଥିବାର ସୁପ୍ରସିଦ୍ଧ ଐତିହାସିକ ସାର୍ ଏ.ପି.ଫେରି ପ୍ରମାଣ କରି ଦେଖାଇଅଛନ୍ତି ।

ଖ୍ରୀଷ୍ଟ ୭୫ ଅବ୍ଦରେ ଦଳେ ହିନ୍ଦୁ କଳିଙ୍ଗରୁ ଯାଇ ଜାଭାଦ୍ୱୀପରେ ବାଣିଜ୍ୟ ବ୍ୟବସାୟ କରି କାଳକ୍ରମେ ଉପନିବେଶ ସ୍ଥାପନକରି ସେଠାରେ ଆଦିମ ଅଧିବାସୀମାନଙ୍କୁ ସଭ୍ୟ, ସୁଶିକ୍ଷିତ କଲେ, ମନ୍ଦିର ତୋଳିଲେ, ଏ ଦେଶକୁ ଜୟକରି ହିନ୍ଦୁରାଜ୍ୟ ସ୍ଥାପନ କଲେ । ଚୀନ ପରିବ୍ରାଜକ ଫାହିୟାନ୍ ଖ୍ରୀଷ୍ଟ ୪ର୍ଥ ଶତାବ୍ଦୀର ଶେଷାଂଶରେ ଜାଭାଦ୍ୱୀପରେ କେବଳ ହିନ୍ଦୁମାନଙ୍କୁ ଦେଖିଥିଲେ ଏବଂ ସେ ବ୍ରାହ୍ମଣ ନାବିକମାନଙ୍କଦ୍ୱାରା ଚାଳିତ ଜାହାଜରେ ଉତ୍କଳର ମୁଖ୍ୟ ବନ୍ଦର ତାମ୍ରଲିପ୍ତିଠାରୁ ଲଙ୍କା, ଲଙ୍କାରୁ ଜାଭା ଓ ଜାଭାରୁ ଚୀନ ଦେବାକୁ ଯାତ୍ରା କରିଥିଲେ ।

ପର୍ଯ୍ୟଟକ ଟାଭର୍ଣ୍ଣିୟର୍ (୧୬୬୬) କହନ୍ତି, କଳିଙ୍ଗର ପ୍ରଧାନ ବନ୍ଦର ମସଲିପଟ୍ଟନଠାରୁ ଜାହାଜମାନ ଯାତ୍ରାକରି ଆରାକାନ୍, ପେଗୁ, ଶ୍ୟାମ, ସୁମାତ୍ରା, କୋଚିନ୍, ଚାଇନା ଓ ମାଡ଼ାଗାସ୍କାର ପ୍ରଭୃତି ସ୍ଥାନମାନଙ୍କରେ ବାଣିଜ୍ୟ ବ୍ୟବସାୟ ଓ କଳିଙ୍ଗ ସଭ୍ୟତା ବିସ୍ତାର କରିଥିଲା । ଉତ୍କଳୀୟ ବଣିକମାନେ ଆରବସାଗର ପାରହୋଇ ଆଫ୍ରିକା ମହାଦେଶର ପୂର୍ବ ଉପକୂଳରେ ଥିବା ବନ୍ଦରମାନଙ୍କରେ ବ୍ୟବସାୟ ଚଳାଇଥିଲେ । 'କ୍ରାଫୋଡ଼୍' କହନ୍ତି, ଜାଭାର ହିନ୍ଦୁ ପ୍ରଭାବ ଓ ସଂସ୍କୃତି କଳିଙ୍ଗରୁ ଆନୀତ । ଏହି ସୁବିଶାଳ ବାଣିଜ୍ୟକୁ ନିରାପଦ କରିବା ପାଇଁ କଳିଙ୍ଗର ବିରାଟ ନୌସେନା ଥିଲା ।

ଖ୍ରୀଷ୍ଟ ପଞ୍ଚମ କିମ୍ବା ଷଷ୍ଠ ଶତାବ୍ଦୀରେ ନିର୍ମିତ ଭୁବନେଶ୍ୱର 'ବୋଇତାଳ' ମନ୍ଦିରର ଶିରୋଭାଗର ଆକୃତି ଠିକ୍ ଗୋଟିଏ ଓଲଟା ବୋଇତ ବା ଜାହାଜ । 'ବୋଇତାଳ' ଶବ୍ଦଟି ସଂସ୍କୃତ 'ବହିତ୍ର' ଶବ୍ଦର ଅପଭ୍ରଂଶ । ଏହି ମନ୍ଦିର ଶିଳ୍ପ ଉତ୍କଳର ନୌବାଣିଜ୍ୟ ଓ ଜାହାଜ ନିର୍ମାଣ କୌଶଳର ସୂଚନା ଦିଏ ।

ଖ୍ରୀଷ୍ଟ ୭୯୫ ଅବ୍ଦରେ କରବଂଶୀୟ ରାଜା ଶୁଭକର କେଶରୀ ତେନ୍‌ସୁଙ୍ଗ ନାମକ ଜଣେ ବୌଦ୍ଧ ସମ୍ରାଟ ଚୀନ୍ ରାଜାଙ୍କ ପାଖକୁ ଅନେକ ଉପହାର ସହିତ ଗୋଟିଏ ଖଣ୍ଡବ୍ୟୂହ ବା ଅନନ୍ତସାକସୂତ୍ର ପୁସ୍ତକ ଉପହାର ଦେଇଥିଲେ । ଏହି ଉପହାର ସବୁ କଳିଙ୍ଗର ସୁପ୍ରସିଦ୍ଧ ତାମ୍ରଲିପି କିମ୍ବା ଚେଳିତାଳୋ ବନ୍ଦରରୁ ଜାହାଜରେ ଯାଇଥିବ । କାରଣ ଏହି ସମୟରେ ତାମ୍ରଲିପ୍ତି ବନ୍ଦର ଚୀନସହ ବାଣିଜ୍ୟର ପ୍ରଧାନ କେନ୍ଦ୍ର ଥିଲା । କଳିଙ୍ଗ ସାଗରକୁ ଇଂରେଜମାନେ ଆସି ବଙ୍ଗୋପସାଗର ନାମରେ ନାମିତ କଲେ । ସେବେ ସମୁଦ୍ର ସୀମାରୁ ଦଶ କି.ମି. ଭିତରକୁ (ବ୍ରାହ୍ମଣୀ, ବୈତରଣୀ, ସାଳନ୍ଦୀ) ନଦୀର ମାନଚିତ୍ରରେ ନଦୀଙ୍କ ମୁହାଣ ତାମ୍ରଲିପ୍ତ ଥିଲା । ଧୀରେ ଧୀରେ ତାମ୍ରଲିପ୍ତି ବନ୍ଦର ଦଶ କି.ମି. ଭିତରକୁ ଚାନ୍ଦବାଲିକୁ ମାଡ଼ିଆସିଲା ।

ସୂକ୍ଷ୍ମବସ୍ତ୍ର ସକାଶେ କଳିଙ୍ଗର ପ୍ରସିଦ୍ଧି ଏପର୍ଯ୍ୟନ୍ତ ରହିଛି । ତାମିଲ ଦେଶରେ ଏହି କଳିଙ୍ଗ ସୂକ୍ଷ୍ମବସ୍ତ୍ରର ଏତେ ଆଦର ଥିଲା ଯେ ସେହି ଭାଷାରେ ବସ୍ତ୍ରକୁ 'କଳିଙ୍ଗ' ବୋଲି କହନ୍ତି । ସୂକ୍ଷ୍ମବସ୍ତ୍ର ଓ ସମ୍ବଲପୁରର ହୀରା ଖ୍ରୀ:ପୂ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀରେ ବହୁ ମୂଲ୍ୟରେ ସୁଦୂର ରୋମ୍ ନଗରୀରେ ମଧ୍ୟ ବିକ୍ରି ହେଉଥଲା ।

ଖ୍ରୀ ୬୩୦ରୁ ୬୪୩ ଅବ୍ଦ ମଧ୍ୟରେ ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ତାମ୍ରଲିପ୍ତ ବନ୍ଦରବାଟେ ଓଡ଼ିଶାକୁ ଆସିଥିଲେ । ସେତେବେଳେ ଓଡ଼ିଶାର ରାଜଧାନୀ 'ଚେଳିତାଳୋ' ଥିବାର ସେ ଲେଖିଯାଇଛନ୍ତି । 'ପ୍ରାଚୀ ମାହାତ୍ମ୍ୟ'ରୁ ଜଣାପଡ଼େ କୋଣାର୍କ ନିକଟବର୍ତ୍ତୀ ଚନ୍ଦ୍ରଭାଗାଠାରେ 'ଚିତ୍ରୋତ୍ପଳା' ନାମରେ ଗୋଟିଏ ନଦୀ ବହିଯାଉଥିଲା । ଏବେ ମଧ୍ୟ ଚନ୍ଦ୍ରଭାଗା ନିକଟରେ 'ଚିତ୍ର' ଓ 'ଉତ୍ପଳ' ନାମରେ ଦୁଇଟି ଗ୍ରାମ ରହିଛି, ଯାହା ପ୍ରସିଦ୍ଧ ନଗର ଓ ବନ୍ଦର ଥିଲା ବୋଲି ଅନୁମାନ କରାଯାଏ । ଏହି ବୃହତ୍ 'ଚିତ୍ରୋତ୍ପଳା' ନଗର ଓ ବନ୍ଦର 'ଚେଳିତାଳୋ' ହୋଇଥାଇପାରେ । ବହୁ ଦୂର ବିଦେଶର ବାଣିଜ୍ୟତରୀ ଓ ପୋତମାନ ଏହି ବନ୍ଦରରେ ଆଶ୍ରୟ ନେଉଥିଲେ ଓ ଉତ୍କଳୀୟମାନେ ଏହି ବନ୍ଦରରୁ ସମୁଦ୍ରପଥରେ ଦୂରବିଦେଶରେ ବାଣିଜ୍ୟ କରିବାକୁ ଯାତ୍ରା କରୁଥିଲେ । ଖ୍ରୀ ୧୨୭୮ ରେ ଲାଙ୍ଗୁଳା ନରସିଂହଦେବ କୋଣାର୍କ ମନ୍ଦିର ନିର୍ମାଣ ପାଇଁ କୌଣସି ଗଡ଼ଜାତ ଅଞ୍ଚଳରୁ ଜାହାଜ ଓ ନୌକା ସାହାଯ୍ୟରେ ଏହି 'ଚେଳିତାଳୋ' ବନ୍ଦର ବାଟେ ପଥର ସବୁ ବୁହାଇ ଆଣିଥିବେ ।

ମତାନ୍ତରେ 'ତୋଲେମି' ଖ୍ରୀଷ୍ଟିୟ ପ୍ରଥମ ଶତାବ୍ଦୀରେ 'ଭୂଚିତ୍ର' ନାମକ ଗ୍ରନ୍ଥରେ ଲେଖିଥିଲେ ମନଦ (ମହାନଦୀ) ପ୍ରଥମ ଶତାବ୍ଦୀର ବହୁକାଳ ପୂର୍ବେ ବାଣିଜ୍ୟ ଉପଯୋଗୀ ଥିଲା । ୭ମ ଶତାବ୍ଦୀ ବେଳକୁ ହୁଏନ୍‌ସାଂ ଓଡ଼ିଶା ଆସି ରତ୍ନଗିରି, ଲଳିତଗିରି, ଉଦୟଗିରି ପରିଭ୍ରମଣ କରି ଲେଖିଛନ୍ତି, ରତ୍ନଗିରିରେ ବୌଦ୍ଧମାନଙ୍କ ଦ୍ୱାରା ପରିଚାଳିତ ପୁଷ୍ପଗିରି ନାମରେ ଏକ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟ ଥିଲା । ପୁଷ୍ପଗିରି ନିକଟରେ 'ଚେଳିତାଳୋ' ବନ୍ଦର

ଥିଲା । ସମୁଦ୍ର ଖୁବ୍ ନିକଟରେ ଥିଲା । ହୁଏନ୍‌ସାଂ ଏକ ଶାନ୍ତ ନିର୍ମଳ ସନ୍ଧ୍ୟାରେ ଚେଳିତାଲୋର ସମୁଦ୍ର କୂଳରେ ଏକ ବାଲିସ୍ତୁପ ଉପରେ ଠିଆହୋଇ ବୋଇତଗୁଡ଼ିକର ଯାତାୟାତ ଦେଖୁଥିବାବେଳେ ସିଂହଳର ବୌଦ୍ଧଦନ୍ତ ସ୍ତୁପର ଉପରେ ଥିବା ଆଲୋକ ଦେଖିବାକୁ ପାଇଥିଲେ । ଏଣୁ ସେ ମହାନଦୀ ମୁହାଣବାଟେ ଲଳିତଗିରି ଯାଇଛନ୍ତି । ପାରାଦ୍ୱୀପ ଲୋକନାଥ ମନ୍ଦିର, ହାତୀ ମନ୍ଦିରର ବୌଦ୍ଧ ଧର୍ମସହ ସମ୍ପର୍କ ରହିଛି ।

ଉତ୍କଳୀୟ ନୌବାଣିଜ୍ୟର ଅନାଲୋଚିତ ଅଧ୍ୟାୟକୁ ଉନ୍ମୋଚିତ କଲେ ଜଣାଯାଏ 'କେବେକେବେ କେତେକ ସାଧବପୁଅ ଦରିଆ କୂଳରୁ ବୋଇତ ନମେଲି ବୋଇତ ମେଲୁଥିଲେ ମହାନଦୀର ବାଲିପଠାରୁ ।' ମହାନଦୀର ଗଡ଼ଗଡ଼ିଆ ଘାଟରୁ ପାରାଦ୍ୱୀପପଟକୁ ନଯାଇ ନରାଜ, ଆଠଗଡ଼, ବଡ଼ମ୍ବା, ବାଙ୍କି, ନୟାଗଡ଼, ସର୍ବୋପରି ନୂଆନଈ ଦେଇ କାକଟପୁର ଅଭିମୁଖେ ଏବଂ ସେଠୁ ପ୍ରାଚୀନ ପୁରୀ–କୋଣାର୍କ ମଧ୍ୟବର୍ତ୍ତୀ ପୋତାଶ୍ରୟ ଦେଇ ସାଧବପୁଅ ଯାଉଥିଲା ବାଲି, ଜାଭା, ସୁମାତ୍ରା ଦ୍ୱୀପ ଅଭିମୁଖେ । ଏହା ଥିଲା ପ୍ରାଚୀନ ପୁଣ୍ୟତୋୟା, ସୁନାବ୍ୟା, ପ୍ରାଚୀ ନଦୀର ଗତିପଥ ଓ ପରିବହନର ପଥ । ଏବେ ଏହି ପ୍ରାଚୀନ ନୌବାଣିଜ୍ୟର ସ୍ମାରକୀ ସ୍ୱରୂପ କଟକ ମହାନଦୀପଠାରେ 'ବାଲିଯାତ୍ରା' ଅନୁଷ୍ଠିତ ହେଉଅଛି ।

ମୋଗଲମାନେ ଓଡ଼ିଶା ଅଧିକାର କଲାବେଳକୁ ବାଲେଶ୍ୱର (ପ୍ରାଚୀନନାମ–ବାଲିଶ୍ୱର) ଗୋଟିଏ ପ୍ରସିଦ୍ଧ ବନ୍ଦର ଥିଲା । ଖ୍ରୀ ୧୫୧୪ରେ ପର୍ତ୍ତୁଗୀଜମାନେ ସୁବର୍ଣ୍ଣରେଖା ମୁହାଣରେ ଅବସ୍ଥିତ ପିପିଲି ବନ୍ଦରରେ ବାଣିଜ୍ୟ କୋଠି ଓ ପରେ ବାଲେଶ୍ୱରରେ ମଧ୍ୟ କୋଠି ସ୍ଥାପନ କରିଥିଲେ । ଖ୍ରୀ ୧୬୨୫ରେ ଓଲନ୍ଦାଜ (ଡଚ୍ ବା ହଲାଣ୍ଡ ଅଧିବାସୀ) ତା'ପରେ ଦିନାମାର୍ (ଡେନ୍‌ମାର୍କ ଅଧିବାସୀ) ଖ୍ରୀ.୧୬୪୨ରେ, ୧୬୩୩ରେ ଇଂରେଜମାନେ ଦେବୀନଦୀ ମୁହାଣରେ ହରିଶପୁରରେ ଓ ୧୬୪୨ରେ ବାଲେଶ୍ୱରରେ, ଶେଷରେ ଫରାସୀମାନେ ବାଲେଶ୍ୱରରେ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ । ବାଲେଶ୍ୱର ଓଡ଼ିଶାକୁ ୟୁରୋପୀୟମାନଙ୍କର ଆଗମନର ଦ୍ୱାରଦେଶ ସ୍ୱରୂପ ଥିଲା ।

ବୁଢ଼ାବଳଙ୍ଗ ନଦୀମୁହାଣ ବଳରାମଗଡ଼ିରୁ ବାଲେଶ୍ୱର ମୁଖ୍ୟବନ୍ଦର ବାଲିଘାଟ ମଧ୍ୟରେ ଅନେକ ଜାହାଜ ନିର୍ମାଣ କେନ୍ଦ୍ର ଥିଲା । ନୀଳଗିରି, ମୟୂରଭଞ୍ଜ ଓ ଜାଭାରୁ କାଠ ଆସୁଥିଲା । ମୟୂରଭଞ୍ଜର ଲୁହାଖଣି ନିକଟରେ ଲୁହାପଥର, ଚୂନପଥର, କାଠ–କୋଇଲା, ମାଟିକୋଇଲା ମିଶେଇ ତରଳେଇ ସେଥିରୁ କମାରମାନେ ଲୁହା କାଢୁଥିଲେ । ସେ ଲୁହା କଞ୍ଚାଲୁହା । ତାକୁ କିଣି ରେମୁଣାରେ ଆଉଥରେ ବନ୍ଦଭାଟିରେ ତରଳାଇ ସେ ଶୋଧିତ ଲୁହା ବା ଇସ୍ପାତରୁ ପାତ, କଣ୍ଟା, ବେଣ୍ଟ, ପେଚ୍, ଚାପଣି , ଲଙ୍ଗର ଆଦି ତିଆରି ହେଉଥିଲା । ସେଠୁ ସେ ଆସୁଥିଲା ବୁଢ଼ାବଳଙ୍ଗ ମୁହାଣକୁ । ଏଠାରେ ସମୁଦ୍ରଗାମୀ ଜାହାଜ ନିର୍ମାଣ କରାଯାଉଥିଲା ।

ବଳଙ୍ଗନଦୀର ମୁହାଣ କ୍ରମେ ପୋତିହୋଇ ଅଗଭୀର ହୋଇଯିବାରୁ ଜାହାଜ ଚଳାଚଳପାଇଁ ଅନୁପଯୁକ୍ତ ହୋଇଗଲା ଓ ବାଲେଶ୍ୱର ବନ୍ଦରର ମାନ୍ୟତା ହରାଇଲା । ସରକାରୀ ରେକର୍ଡ଼ରୁ ଜଣାଯାଏ ଖ୍ରୀ ୧୮୫୧ରେ ପ୍ରବଳ ସାମୁଦ୍ରିକ ଝଡ଼ରେ ବଳଙ୍ଗ ନଦୀ ମୁହାଣରେ ୪୪ଟା ଜାହାଜ ବୁଡ଼ିଯାଇଥିଲା । ତଥାପି ଖ୍ରୀ ୧୮୫୩ରେ ବାଲେଶ୍ୱର ବନ୍ଦରକୁ ୧୬୭ଟା ଜାହାଜ ଯିବାଆସିବା କରିଥିଲା । ଖ୍ରୀ ୧୮୭୬ରେ ୬୯ଟି ଜାହାଜର ଏହି ବନ୍ଦରରେ ରେଜେଷ୍ଟ୍ରିଭୁକ୍ତ ହୋଇଥିଲା । ବାଲେଶ୍ୱରରେ ଆଉ ଅତୀତର ନୌବାଣିଜ୍ୟର କୌଣସି ଅବଶେଷ ନାହିଁ । କେବଳ ଗୋଳା ପୋଖରୀରୁ ବାଲିଘାଟକୁ ସଂଯୋଗ କରୁଥିବା ରାସ୍ତାଟି ନାମ ପୋର୍ଟରୋଡ୍ ଥିବାରୁ ଏଠାରେ ଅତୀତରେ ବନ୍ଦର ଥିବା କଥା ସ୍ମରଣ କରାଇଦେଉଛି ।

ଆଜିର ପାରାଦ୍ୱୀପ ସେତେବେଳେ କୁଜଙ୍ଗ, କେନ୍ଦ୍ରାପଡ଼ା, ତିର୍ତ୍ତୋଲ ଆଦିକୁ ବୁଝାଉଥିଲା । ଏ ଅଞ୍ଚଳ ଧାନ, ପାନ, ଶୁଖୁଆ, ସୂତା, ସୂତାଲୁଗା, ସିଲ୍କ ବସ୍ତ୍ର ପାଇଁ ପ୍ରସିଦ୍ଧି ଲାଭ କରିଥିଲା । ଷୋଡ଼ଶ ଶତାବ୍ଦୀ ବେଳକୁ କୁଜଙ୍ଗ ଅଞ୍ଚଳର ଲୋକେ ସୁନାବିକ ଓ ପରାକ୍ରମୀ ଥିଲେ । ଷଣ୍ଢରାଜାଙ୍କ ନେତୃତ୍ୱରେ ଜଳଦସ୍ୟୁ କାମ କରୁଥିଲେ । ଜଳଯାନ ନିର୍ମାଣ କରିବାରେ ପାରଙ୍ଗମ ଥିଲେ । ଜଳଦସ୍ୟୁ କାମ କରୁଥିବାରୁ ଇଂରେଜମାନେ ଭୟରେ ପାରାଦ୍ୱୀପକୁ ନଆସି ହରିଶପୁର ବନ୍ଦରରେ ଓହ୍ଲାଇଥିଲେ ପ୍ରଥମେ । ୧୭୭୩ରେ ସମରସେନ୍ ଓ ଆକ୍ଟିଭ୍ ନାମକ ଦୁଇଟି ଇଂରେଜ ଜାହାଜକୁ କୁଜଙ୍ଗ ରାଜା ଆକ୍ରମଣ କରିଥିଲେ । ମହାନଦୀ ମୁହାଣ ଦେଇ ବହିଃଶତ୍ରୁ ଦେଶରେ ପ୍ରବେଶ ନକରିବା ପାଇଁ କୁଜଙ୍ଗ ରାଜା ପାରାଦ୍ୱୀପ ଲାଗି 'ମୁହାଣଚୌକିଆ' ଜାଗିର ପାଇଥିଲେ । ତାଙ୍କୁ 'ମୁହାଣ କୁମ୍ଭୀର' କୁହାଯାଉଥିଲା । ବହୁ ପ୍ରାଚୀନ କାଳରୁ ମହାନଦୀ ମୁହାଣ

ପାରାଦ୍ୱୀପରେ ନୌବାଣିଜ୍ୟ ଚାଲିଥିବାର ବହୁ ପ୍ରମାଣ ରହିଛି । ତା'ର ମୂକସାକ୍ଷୀ ହୁକିଟୋଲା, ବତୀଘର, ପରାଶର ମନ୍ଦିର, ଲୋକନାଥ ମନ୍ଦିର, ଚେଲିତୋଳା ବନ୍ଦର, ଲଳିତଗିରି, ରତ୍ନଗିରି, ବୋଇତର କୁଦ ଆଦି ଏହାର ପ୍ରମାଣ । ଚାଇନାମାନେ ବାଣିଜ୍ୟ କରୁଥିବା ଭାରତୀୟମାନଙ୍କୁ 'କୁନୁ' ବୋଲି କହୁଥିଲେ, ଯାହାକି କଳିଙ୍ଗ ଶବ୍ଦର ରୂପାନ୍ତର । ସେମାନେ କୁଜଙ୍ଗ ଆଖପାଖ ଅଞ୍ଚଳକୁ ବଉଳାଙ୍ଗ, ପାରିଅଙ୍ଗ, ବଡ଼ଙ୍ଗ, ପୁନଙ୍ଗ, ଅଡ଼ଙ୍ଗ ଆଦି ନାମ ଦେଇଥିଲେ । ଏହି ଅଞ୍ଚଳରୁ ଧାନ ମହାନଦୀବାଟେ ଚାଇନାକୁ ଯାଉଥିଲା ।

୧୮୬୬ ନଅଙ୍କ ଦୁର୍ଭିକ୍ଷ ପରେ ଫଲ୍ସ ପଏଣ୍ଟ ବନ୍ଦର କାର୍ଯ୍ୟ ଆରମ୍ଭ ହୋଇଥିଲା । ସର୍ବପ୍ରଥମେ ଫଲ୍ସ ପଏଣ୍ଟ ବନ୍ଦରରେ ୧୮୬୦-୬୧ରେ ଖଣ୍ଡେ ଜାହାଜ ୨୮୩୦ ଟନ୍ ମାଲ ଘେନି ଆସିଥିଲା । ନଅଙ୍କ ଦୁର୍ଭିକ୍ଷ ବେଳେ ଏହିଠାରେ ଚାଉଳ ଜାହାଜ ପହଞ୍ଚିଥିଲା । ସମୁଦ୍ରମଧ୍ୟର ଜାହାଜ ଓ ମାଛଧରା ଡଙ୍ଗାଗୁଡ଼ିକୁ ନୌସଙ୍କେତ ଦେବାପାଇଁ ବତୀଘର ତିଆରି ହୋଇଥିଲା । ୧୮୮୬-୮୮ ରେ ହୁକିଟୋଲାର ଗୋଦାମଘର ତିଆରି ହୋଇଥିଲା । ଏଠାରେ ବହୁ ପ୍ରାଚୀନ କୂଅ ଓ ଗୋଦାମଘର ଏବେବି ଅଛି । ହୁକିଟୋଲାକୁ କଂସାରୀଡିଆ ଦ୍ୱୀପ ବା ପ୍ଲେଡ଼ି ଦୀପ କହୁଥିଲେ । ଏଠାରେ ଧନୀଲୋକଙ୍କ ଦୁଆରେ କଂସା କବାଟ ଲାଗିଥିଲା । ମହାନଦୀ ମୁହାଣ ଦେଇ ଏକ ନଡ଼ିଆ ଜାହାଜ ଯାଉଥିବାବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧବେଳେ ଦୁର୍ଘଟଣାରେ ନଷ୍ଟ ହୋଇଥିଲା । ନଡ଼ିଆଗୁଡ଼ିକ ଭାସିଯାଇ ହୁକିଟୋଲାଠାରେ ଲାଗି ନଡ଼ିଆ ଜଙ୍ଗଲ ସୃଷ୍ଟି ହୋଇଛି ।

୧୮୧୭ ସେପ୍ଟେମ୍ବର ୧୩ରେ କେପ୍ଟନ୍ କେନେଟ ପାଇକମାନଙ୍କୁ ପରାସ୍ତକରି ପାରାଦ୍ୱୀପ ବନ୍ଦର ଅଧିକାର କରିଥିଲେ ଏବଂ ପରମଗୁରୁ ଓ ପାଟଯୋଗିନୀଙ୍କୁ ବନ୍ଦୀକରି କଟକ ନେଇ ଦ୍ୱୀପାନ୍ତର ଦଣ୍ଡ ଦେଇଥିଲେ । ପାରାଦ୍ୱୀପ ମୁହାଣକୁ ୧୮୬୦ ମେ ୨୩ ତାରିଖରେ ବନ୍ଦର ପାଇଁ ଇଂରେଜ ଘୋଷଣା କଲେ । ପାରାଦ୍ୱୀପ ମୁହାଣ ମୁହଁରେ କାର୍ଯ୍ୟ କରିବାପାଇଁ ମହାନଦୀ ମୁହାଣରେ ଥିଲା ବୋଇତକୁଦ । ପୂର୍ବେ ସାଧବପୁଅମାନେ ବୋଇତର ମଙ୍ଗ କୋଣରେ ମଙ୍ଗଳାଙ୍କ ପୂଜା କରନ୍ତି । ବିପଦ ପଡ଼ିଲେ ମଙ୍ଗଳା ବା ରାମଚଣ୍ଡୀଙ୍କୁ ସୁମରଣା କରନ୍ତି । ଏଥିପାଇଁ ଦରିଆ କୂଳରେ ବିଭିନ୍ନ ସ୍ଥାନରେ ମଙ୍ଗଳା ବା ରାମଚଣ୍ଡୀଙ୍କ ମନ୍ଦିର ଦେଖିବାକୁ ମିଳେ । ମଙ୍ଗଳା ପୂଜନ ପରମ୍ପରା ଓଡ଼ିଶାରୁ ପଶ୍ଚିମବଙ୍ଗ, ଶ୍ରୀଲଙ୍କା ଆଦି ଅଞ୍ଚଳକୁ ବ୍ୟାପିଥିଲା । ମହାଜ୍ଞାନୀ ପରାଶର ଓ କେତେଜଣ କୈବର୍ତ୍ତଙ୍କୁ ଧରି ଜଳପଥରେ ପାରାଦ୍ୱୀପରେ ପହଞ୍ଚି ସେହିଠାରେ ରହିଥିଲେ । ବର୍ତ୍ତମାନର କୈବର୍ତ୍ତମାନେ ହିଁ ତାଙ୍କର ବଂଶଧର ।

ଦିନେ ଜଣେ ବିଦେଶୀ ବଣିକର ବୋଇତଟି ବାଲିସ୍ତୂପ ପାଖରେ ଲାଗି ଯାଇଥିଲା । ସେହି ବଣିକ ପରାଶରଙ୍କ ପାଖକୁ ଯାଇ ନିଜର ଦୁଃଖ ଜଣାଇଲେ । ମହର୍ଷିଙ୍କ ଅଙ୍ଗୁଳିସ୍ପର୍ଶରେ ବୋଇତଟି ବାଲୁକାସ୍ତୂପରୁ ଖସି ଯାଇଥିଲା । ତା'ପରେ ବଣିକଟି ମହର୍ଷିଙ୍କ ପରିଚୟ ପାଇ ତାଙ୍କ ଚରଣ ବନ୍ଦନା କରି ବିଦାୟ ନେଇଥିଲେ । କିଛିଦିନ ପରେ ବଣିକ ଆସି ଦେଖିଲେ ମହର୍ଷି ନାହାନ୍ତି । ସେହି ବଣିକ ସେଠାରେ ଯେଉଁ ମନ୍ଦିର ନିର୍ମାଣ କଲେ ତାହା 'ପରାଶର ମନ୍ଦିର' ନାମରେ ନାମିତ । ଏହି ମନ୍ଦିରର ଚତୁଃପାର୍ଶ୍ୱରେ ବ୍ୟବହୃତ ମୁଦ୍ରା ବୌଦ୍ଧ ଦେବଦେବୀଙ୍କ ଆୟୁଧ ଓ ବୁଦ୍ଧଙ୍କର ପ୍ରତିମୂର୍ତ୍ତି ଅଙ୍କିତ ହେଲାପରି ଜଣାଯାଏ ।

କୈବର୍ତ୍ତମାନେ ଚୈତ୍ରପୂର୍ଣ୍ଣମୀ ଦିନ ମା' ବାସୁଳେଇଙ୍କୁ ପୂଜା କରନ୍ତି । ଏହି ବାସୁଳେଇ ବା ଦେବୀ ସିଂହଳରୁ ଆସିଥିଲେ ବୋଲି 'କୈବର୍ତ୍ତଗୀତା'ରୁ ପ୍ରମାଣ ମିଳେ । ପୂର୍ଣ୍ଣିମାଦିନ ପିଠାପଣାସହ ଘୋଡ଼ାନାଚ ଓ ବିଭିନ୍ନ ବାଦ୍ୟ ବଜାଇ ଗୀତ ଗାଆନ୍ତି । ଭାଦ୍ରବ ମାସରେ ଖୁଦୁରୁକୁଣୀ ଓଷା ଏ ଅଞ୍ଚଳରେ ବହୁଳ ଭାବରେ କରାଯାଏ । କାର୍ତ୍ତିକମାସରେ ଚଉରାମୂଳରେ ଆକାଶଦୀପ, ଝୋଟି, ଡଙ୍ଗାଚିତ୍ର, ସାଧବଚିତ୍ର, ଜଗନ୍ନାଥ, ଶଙ୍ଖଚିତ୍ର ଆଦି ଲେଖନ୍ତି । କାର୍ତ୍ତିକପୂର୍ଣ୍ଣମୀ ଡଙ୍ଗାଭସା, ବୋଇତବନ୍ଦା ଉତ୍ସବ ସହ ବାଲିଯାତ୍ରା ଉତ୍ସବ ସେହି ପୂର୍ବ ଗୌରବ ନୌସଂସ୍କୃତିର ସ୍ମୃତିଚାରଣ ପାଇଁ ଉଦ୍ଦିଷ୍ଟ । ବଣିକ, ଚପଳା, ପକ୍ଷୀମୁଖ, ଗାମିନୀ, ଗରୁଡ଼, ଭୋଜ, ଗଣେଶ, ତୁଳସୀ, ରଜନୀ ନାମରେ ଜାହାଜ ସବୁ ଉତ୍କଳରେ ନିର୍ମିତ ହୋଇ ଚାଲୁଥିଲା । କେତେକ ଜାହାଜ ତ୍ରିତଳ ବିଶିଷ୍ଟ ଥିଲା । ଜାହାଜର ତଳ ମହଲାରେ ପିଇବାପାଣି, ଜାହାଜ ମରାମତି ଜିନିଷ (ପାଲ, ଦଉଡ଼ି, କଣ୍ଟା, ପାତ, କାଠପଟା, ଯନ୍ତ୍ରପାତି, ଲମ୍ବାକାତ, ଲମ୍ବା ଆହୁଲା, ଅସ୍ତ୍ରଶସ୍ତ୍ର) ଆଦି ରହୁଥିଲା । ମଝି ମହଲାରେ- (ନିଜେ ମାଲିକ, ରପ୍ତାନୀ ଜିନିଷ, ଲୁଣ, ସୂକ୍ଷ୍ମବସ୍ତ୍ର, ଚାଉଳ, ହୀରା, ବାସନକୁସନ, ରେଶମବସ୍ତ୍ର, ତାରକସି କାମ, ଟୋକେଇ, ଲୁହା, ଖଣିଜଲୁଣ, ରତ୍ନପଥର, ହାତୀଦାନ୍ତ ନିର୍ମିତ ସୂକ୍ଷ୍ମ କାରୁକାର୍ଯ୍ୟ ଜିନିଷ, ସୁଗନ୍ଧ ଦ୍ରବ୍ୟ, କାର୍ପାସ ବସ୍ତ୍ର, ଏପରିକି ହାତୀ, ପାନ, ଗୁଆ) ରହୁଥିବାବେଳେ ଉପର ମହଲାରେ ନିଜେ ନାବିକ, ପାଲ, ଦଉଡ଼ି, ଅସ୍ତ୍ରଶସ୍ତ୍ର, ରନ୍ଧାବଢ଼ା, ଖିଆପିଆ,

ଧ୍ୟାନଯୋଗ ଇତ୍ୟାଦି ହେଉଥିଲା । କେତେକ ଜାହାଜ ୨୦୦ ହାତ ଲମ୍ବ, ୧୦୦ ହାତ ଓସାର ଓ ୧୦୦ ହାତ ଉଚ୍ଚତା ବିଶିଷ୍ଟ ମଧ୍ୟ ଥିଲା । ଓଡ଼ିଶାର ପ୍ରାଚୀନ ବନ୍ଦର ମଧ୍ୟରେ ପିପ୍ପଳ, ବାଲେଶ୍ୱର, ପାଲୁର, ଦନ୍ତପୁର, ଚାନ୍ଦବାଲି, ପୁରୀ, କୋଣାର୍କ, ପାରାଦ୍ୱୀପ, ଗଞ୍ଜାମ, ଚିଲିକା, ମସଲିପଟ୍ଟନ, ତାମ୍ରଲିପ୍ତ, ହରିଶପୁର, ହରିହରପୁର (ଆଧୁନିକ ଜଗତ୍‌ସିଂହପୁର), ଧାମରା, ଗମେଇ, ଚେଲିତାଲୋ, ଚୁଡ଼ାମଣି ଇତ୍ୟାଦି ପ୍ରଧାନ ଥିଲା । ଓଡ଼ିଶାରେ ପ୍ରଚଳିତ ବହୁ କିମ୍ବଦନ୍ତୀ, କାହାଣୀ, ପର୍ବପର୍ବାଣି ଯଥା– ତଅପୋଇ, ଖୁଲଣା ସୁନ୍ଦରୀ ଆଦି ଗଳ୍ପରେ ଉତ୍କଳୀୟ ସାଧବପୁଅମାନଙ୍କର ନୌବାଣିଜ୍ୟର ଚିତ୍ର ସୁସ୍ପଷ୍ଟ । କିନ୍ତୁ ଓଡ଼ିଶାର ବୀରତ୍ୱ, ଶିଳ୍ପସ୍ଥାପତ୍ୟ ପରି ତା'ର ନୌବାଣିଜ୍ୟ, ପୋତନିର୍ମାଣ କୁଶଳତା ଆଜି ଲୁପ୍ତ ହୋଇଯାଇଛି । ଓଡ଼ିଆମାନଙ୍କର ଅତୀତର ଐତିହାସିକ ବିଭବରେ ବିଶ୍ୱାସ ନାହିଁ କି ଆତ୍ମପ୍ରତ୍ୟୟ ନାହିଁ । କାର୍ତ୍ତିକପୂର୍ଣ୍ଣମୀରେ ବୋଇତ ବନ୍ଦାଣ ଉତ୍ସବ କରି ଆ–କା–ମା–ବୈ କହି ସ୍ନାନକରି କାଗଜ, ସୋଲ ଓ କଦଳୀପାଟୁକା ନିର୍ମିତ ଡଙ୍ଗା ଭସେଇ ଦେଇ ଓଡ଼ିଆଜାତି ତା ବିରାଟ ଗୌରବଗାଥା ସ୍ମୃତିକୁ କେବଳ ଉଜ୍ଜୀବିତ ରଖିଛି ।

କାର୍ତ୍ତିକ ମାସରେ ଦରିଆ ଶାନ୍ତ ହେଲେ ବୋଇତ ଚଳାଚଳ ପକ୍ଷରେ ଅନୁକୂଳ ହୁଏ । ଏହି ସମୟରେ ଦକ୍ଷିଣପୂର୍ବ ଏସିଆର ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଓ ବାଲିଦ୍ୱୀପକୁ ପାଲଟଣା ବୋଇତରେ ଯାତ୍ରା କରିବାପାଇଁ ପବନର ଗତି ଅନୁକୂଳ ଥିବାରୁ କାର୍ତ୍ତିକ ପୂର୍ଣ୍ଣମୀର ଶୁଭଲଗ୍ନରେ ଓଡ଼ିଆ ସାଧବମାନେ ନୌଯାତ୍ରାର ଶୁଭାରମ୍ଭ କରି ପୁଣି ମାଘମାସରେ ଆସି ମୁକ୍ତା, ଲବଙ୍ଗ, ଗୁଜୁରାତି, ତେଜପତ୍ର, ବିଭିନ୍ନ ମସଲା, ପଶମବସ୍ତ୍ର, ଟିଣ, ରୂପା, ସିନ୍ଦୂର ପ୍ରଭୃତି ଦ୍ରବ୍ୟ ବାହାରୁ ଆମଦାନୀ କରି ବିକ୍ରୟ କରୁଥିଲେ । ପୁନଶ୍ଚ ବୈଶାଖ ମାସରେ ଦରିଆରେ ଜାହାଜ ମେଲି ଆଷାଢ଼ ମାସରେ ସମୁଦ୍ର ଅଶାନ୍ତ ପୂର୍ବରୁ ଫେରୁଥିଲେ । କାରଣ ଏହି ଚାରିମାସ ସୂର୍ଯ୍ୟଙ୍କ ଅୟନାନ୍ତ କାଳ । ତେଣୁ କାର୍ତ୍ତିକ ପୂର୍ଣ୍ଣମୀ ସ୍ନାନରେ ଆ–କା–ବୈ–,ପାନ, ଗୁଆ ଥୋଇ, ମାସକ ଧରମ ମୋର, ପାନଗୁଆ ତୋର ଇତ୍ୟାଦି ସହ ବଳିତା ଜାଳି ପଇସା, କଉଡ଼ି, ବିଭିନ୍ନ ମସଲା ଆଦି ରଖି ସ୍ମୃତିସ୍ୱରୂପ କାଗଜ, ସୋଲ, କଦଳୀବାସୁଙ୍ଗା ଡଙ୍ଗା ଭସାଇ ଦିଅନ୍ତି । ଦୀପାବଳି ପରଦିନ ବୋଇତ ବନ୍ଦାଣ ଉତ୍ସବ, କାଉଚିଲ୍କଣଦିନ । ବୋଇତ ଆମଦାନୀ ରପ୍ତାନୀ ଜିନିଷ ସମୂହର ସ୍ମାରକୀ ସ୍ୱରୂପ ଆଜି ମଧ୍ୟ ଘରର ଆସବାବପତ୍ରକୁ ସକାଳୁ ଗୃହିଣୀମାନେ ଗୃହାଙ୍ଗନରେ ରଖି ପୂଜା କରନ୍ତି । ଆଜି ଏସବୁ ଅତୀତ । କେବଳ ସ୍ମୃତି ହୋଇ ରହିଯାଇଛି । ରହିଯାଇଛି କେବଳ ଓଡ଼ିଆମାନଙ୍କ ଜଗନ୍ନାଥପ୍ରାଣତା ଓ ଗୋଟିଏ 'ଢଗ'– ଓଡ଼ିଆପୁଅ କାଳିଆ ଦିଅଁ, ଦରିଆକୂଳେ ଘର । ସାଧବପୁଅର ସାହସ ଯୋଗୁଁ କୁହାଯାଉଥିଲା କଳିଙ୍ଗାଃ ସାହାସିକାଃ । ଏହାହିଁ ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟର ସଂକ୍ଷେପରେ ସ୍ମୃତି ଓ ଗାଥା ।

**ସହାୟକ ପୁସ୍ତକ**


୧– ପଣ୍ଡିତ ନୀଳକଣ୍ଠ ଦାସଙ୍କ ୧୯୪୬ ମସିହାରେ ରେଭେନ୍‌ସା କଲେଜରେ ଓଡ଼ିଆ ସାହିତ୍ୟ ସମାଜରେ ପ୍ରଦତ୍ତ ଭାଷଣର କିୟଦଂଶ । ନବଭାରତ ନୂଆପ୍ରସ୍ଥ ୧ମଭାଗ / ୧ମ ସଂଖ୍ୟାରେ 'ବିଶ୍ୱ ସଂସ୍କୃତିକୁ ଓଡ଼ିଶାର ଦାନ' ଶିରୋନାମାରେ ପ୍ରକାଶିତ ।

୨– ପ୍ରାଚୀନ ଉତ୍କଳରେ ଜଳଯାତ୍ରା – ବିରୁପାକ୍ଷ କର ।

୩– Indian Shipping – ରାଧାମୁକୁନ୍ଦ ମୁଖାର୍ଜୀ ।

୪– The Prachi - Vol-I, Part-II

୫– ଉତ୍କଳ ଇତିହାସ – କୃପାସିନ୍ଧୁ ମିଶ୍ର ।

୬– Orissa and her remains – ମନମୋହନ ଗାଙ୍ଗୁଲି ।

୭– ନବଭାରତ – ମିଥୁନ, ୧୩୪୩–ପୃ.୮୦ ।

୮– ନବଶକ୍ତି (ବଂଗ) Vol-I, Part-20 ।

୯– କଳିଙ୍ଗର ବାଣିଜ୍ୟ– ଇତିହାସ ପ୍ରସୂନ– ଶ୍ରୀ ଚିନ୍ତାମଣି ଦାସ ।

୧୦– ଓଡ଼ିଶାର ନୌବାଣିଜ୍ୟ ଓ ବାଲେଶ୍ୱର– ପ୍ରିୟବ୍ରତ ଦାସ – ସମାଜ – ୨୫, ନଭେମ୍ବର ୨୦୧୫

୧୧– ଫକୀରମୋହନଙ୍କ ଆତ୍ମଜୀବନ ଚରିତ ।

୧୨– ଗର୍ବ କରିବାର କଥା – ହୃଷୀକେଶ ପଣ୍ଡା ।

୧୩– ଅତୀତ ନୌବାଣିଜ୍ୟର ସାକ୍ଷୀ – ନିତ୍ୟାନନ୍ଦ ପଣ୍ଡା – ସାଧାରଣ ସମ୍ପାଦକ, ଜଗନ୍ନାଥ ସମାଜ, ମଧୁବନ, ପାରାଦୀପ– ସମାଜ–୧୭.୧୧.୨୦୧୩ ।



ଡେଲାଙ୍ଗ କଲେଜ

ଡେଲାଙ୍ଗ, ପୁରୀ–୭୫୨୦୧୫

# ମନେପଡ଼ନ୍ତି ଗାନ୍ଧିଜୀ

ଅହଲ୍ୟା ମହାପାତ୍ର



ଅହିଂସା, ସତ୍ୟ, ଅଚୌର୍ଯ୍ୟ (ଚୋରି ନକରିବା) ବ୍ରହ୍ମଚର୍ଯ୍ୟ, ଅନାବଶ୍ୟକ ଭାବରେ ବସ୍ତୁ ଓ ବିଭବ ନଜମାଇବା, ଶାରୀରିକ ଶ୍ରମ କରିବା, ଖାଇବାରେ ସୁଆଦ ଅସୁଆଦ ନବାରି ବଂଚିବାକୁ ଖାଇବା, ସବୁଠାରେ ନିର୍ଭୟ ରହିବା, ସବୁ ଧର୍ମକୁ ସମାନ ଦୃଷ୍ଟିରେ ଦେଖିବା, ସ୍ୱଦେଶ ଦ୍ରବ୍ୟ ଉପଯୋଗ କରିବା ଓ ଅସ୍ପୃଶ୍ୟତାକୁ ଦୂରେଇ ଦେବା – ଏଇ ସବୁକୁ ଗାନ୍ଧିଜୀଙ୍କର ଏକାଦଶ ବ୍ରତ କୁହାଯାଏ । ଗାନ୍ଧିଜୀ କହୁଥିଲେ ସତ୍ୟ ହେଉଛି ଚରମ ଲକ୍ଷ୍ୟ । ଅହିଂସା ହେଉଛି ମାଧ୍ୟମ । ସେ ସ୍ୱୀକାର କରିଥିଲେ ଯେ ସତ୍ୟ–ଅହିଂସା, ପାହାଡ଼–ପର୍ବତ ପରି ଅତି ପ୍ରାଚୀନ । ଏଗୁଡ଼ିକୁ ବ୍ରତଭାବେ ପାଳନ କରି ଉପଯୁକ୍ତ ନାଗରିକ ହେବା ଆମର ଧ୍ୟେୟ ହେଉ ।

ମହାତ୍ମା ଗାନ୍ଧୀ ଅନେକ ସଭାରେ ନିଜ ହାତରେ ପାଞ୍ଚ ଆଙ୍ଗୁଳି ଦେଖାଇ କହୁଥିଲେ – ପାଞ୍ଚଗୋଟି ମହାନ କଥା । ପ୍ରଥମଟି ହେଲା ଅସ୍ପୃଶ୍ୟତା ନିବାରଣ । ଆମେ ସମସ୍ତେ ମଣିଷ ଜାତି । କାହୁଁ ଆସିଲା ଛୁଆଁଛୁତି । ଅତଏବ ଛୁଆଁ ଅଛୁଆଁ ଭେଦଭାବ ଲୋପ କରିବା ଦରକାର । ଦ୍ୱିତୀୟଟି ହେଲା ସ୍ୱାବଲମ୍ବନଶୀଳତା । 'କୁଟି ଖାଅ, କାଟି ପିନ୍ଧ'– ଏହା ଥିଲା ପ୍ରାକ୍–ସ୍ୱାଧୀନତା କାଳରେ ନେତାଙ୍କ ମୁଖର ଭାଷା । ନିଜ ପାଖ ସମୁଦ୍ରରୁ ଲୁଣ ଆହରଣ ପାଇଁ ଲବଣ ସତ୍ୟାଗ୍ରହ କରାଯାଇଥିଲା । ଗାନ୍ଧୀଙ୍କ ନେତୃତ୍ୱରେ ଦାଣ୍ଡିଯାତ୍ରା କଥାଟି ଇତିହାସରେ ଲେଖା ରହିଛି । 'ଚରଖା' ଥିଲା ସ୍ୱଦେଶୀ ଲୁଗାର ପ୍ରତୀକ । ଏଣୁ ଖଦଡ଼ ଥିଲା ସେକାଳରେ ଗାନ୍ଧୀ ଅନୁଗାମୀମାନଙ୍କର ପୋଷାକ ।

ତୃତୀୟଟି ହେଲା ନିଶା ନିବାରଣ । ସବୁ ପ୍ରକାର ନିଶାକୁ ନିଷେଧ କରିବା ଦ୍ୱାରା ସମାଜର ବିକାଶ ସମ୍ଭବ । ନିଶା ରାକ୍ଷସ

କବଳରୁ ମଣିଷ ମୁକ୍ତ ନହେଲେ ସର୍ବସ୍ୱାନ୍ତ ହୁଏ। ଏଣୁ ସେକାଳରେ ନିଶା ବିକ୍ରୟ କେନ୍ଦ୍ର ଆଗରେ ପିକେଟିଂ କରାଯାଉଥିଲା। ଚତୁର୍ଥଟି ହେଲା ସାଂପ୍ରଦାୟିକ ସଦ୍‌ଭାବ। ବହୁ ସଂପ୍ରଦାୟର ଲୋକେ ରାଜ୍ୟ, ଦେଶ, ବିଶ୍ୱରେ ରହିଛନ୍ତି। ସମସ୍ତଙ୍କ ମଧ୍ୟରେ ସଦ୍‌ଭାବ ରହିଲେ କଳି ତକରାଳ ପ୍ରାୟ ହେବ ନାହିଁ। ଅତଏବ ସାଂପ୍ରଦାୟିକ ସଦ୍‌ଭାବ ଆବଶ୍ୟକ।

ପଞ୍ଚମଟି ହେଲା ନାରୀ ଜାଗରଣ। ମହିଳାମାନଙ୍କୁ ସକଳ କ୍ଷେତ୍ରରେ ଭାଗ ନେବାକୁ ହେବ। ସର୍ବତ୍ର ଜନସଂଖ୍ୟାର ପ୍ରାୟ ଅଧେ ହେଲେ ମହିଳା । ସେମାନେ ଶିକ୍ଷାଦୀକ୍ଷାରେ ଆଗୁଆ ହେବେ ଓ କର୍ମଜଗତରେ ପୁରୁଷ ସହିତ ସମାଜର ସବୁସ୍ତରରେ କାମ କରିବେ। ଏହା ଥିଲା ଗାନ୍ଧୀଙ୍କର ମତ। ସେ ମହିଳାମାନଙ୍କୁ ଶିକ୍ଷାଦୀକ୍ଷାରେ ମହତ୍ତ୍ୱ ଦେବା ପାଇଁ କହୁଥିଲେ।

ହରିଜନ ପଦଯାତ୍ରା ବେଳେ ଗାନ୍ଧିଜୀ ଲୋକମାନଙ୍କୁ ଏପରି ଉତ୍ସାହିତ କରୁଥିଲେ ଯେ, ସେମାନେ ନିଶାଦ୍ରବ୍ୟ ସେବନ କରିବେ ନାହିଁ ବୋଲି ଶପଥ କରିଥିଲେ। ଗାନ୍ଧିଜୀ ଏହା ଶୁଣି ଖୁସି ହୋଇଥିଲେ। ଗୋଟିଏ ସହରରେ ରଜକ ଗୋଷ୍ଠୀ ଖଦୀ ଓ ଭାରତରେ ତିଆରି କଳଲୁଗା ଛଡ଼ା ବିଦେଶୀ ଲୁଗା ସଫା କରିବେ ନାହିଁ ବୋଲି ନିଷ୍ପତ୍ତି ନେଇଥିବା କଥା ଗାନ୍ଧିଜୀଙ୍କୁ ଜଣାଇଥିଲେ। ଏହା ଥିଲା ତାଙ୍କ ବ୍ୟକ୍ତିତ୍ୱର ପ୍ରଭାବ।

ସାଂପ୍ରଦାୟିକତା ବିରୋଧରେ ଗାନ୍ଧିଜୀ ଉତ୍ତୋଳନ କରୁଥିଲେ। ଶାନ୍ତି–ସଦ୍‌ଭାବ ଆଣିବା ପାଇଁ ସେ ଅନଶନ ବି କରୁଥିଲେ। ତାଙ୍କ ଉପରେ ବିଶ୍ୱାସ ରଖି ସାରା ଦେଶ ସ୍ୱାଧୀନତା ସଂଗ୍ରାମରେ ଲାଗି ଯାଇଥିଲେ। ସେଥିପାଇଁ ତାଙ୍କୁ ଅନେକ ଥର ଗିରଫ କରାଯାଇଛି ।

ଗାନ୍ଧିଜୀ ଯାହା କହୁଥିଲେ, ତାହା ତାଙ୍କ ଆଚରଣରେ ପ୍ରତିଫଳିତ ହେଉଥିଲା। ତାଙ୍କର ମୌଳିକ ଶିକ୍ଷା ନୀତିକୁ ସାରା ଦେଶ ଆପଣାଇ ନେଇଥିଲା ସେକାଳରେ। ସେହି ମୌଳିକ ଶିକ୍ଷାର ସିଲାବସ୍ କମିଟିରେ ଅଧ୍ୟକ୍ଷ ଥିଲେ ଡକ୍ଟର ଜାକିର ହୁସେନ୍।

ଗାନ୍ଧିଜୀ ଅନେକ ଥର ଓଡ଼ିଶା ଆସିଥିଲେ । ରେଳରେ ଗୌହାଟୀରୁ ମାନ୍ଦ୍ରାଜ ଗଲାବେଳେ ବାଲେଶ୍ୱର, ଭଦ୍ରକ, କଟକ ଓ ବ୍ରହ୍ମପୁର ଷ୍ଟେସନରେ ଲୋକେ ଗାନ୍ଧୀଙ୍କୁ ସମ୍ମାନ ଜଣାଇଥିଲେ।

ପ୍ରଧାନ ଶିକ୍ଷୟିତ୍ରୀ
ବନ୍ତଳା ପ୍ରାଥମିକ ବିଦ୍ୟାଳୟ, କୁରୁଜଙ୍ଗା
ଚାନ୍ଦୋଳ, କଟକ–୭୫୪୨୦୮

